# ଭାବୁକ ଭାଗବତ

## ପ୍ରଥମ ଖଣ୍ଡ



ଅପଣ୍ଡିତ ଦାମୋଦର ବଳୀୟାରସିଂହ

॥ ଓଁ ନମୋ ଭଗବତେ ବାସୁଦେବାୟ ॥

# ଭାବୁକ ଭାଗବତ

## ପ୍ରଥମ ଖଣ୍ଡ

ସ୍କନ୍ଧ:

ମାହାତ୍ମ୍ୟ ସହିତ ପ୍ରଥମ ସ୍କନ୍ଧ

ନକ୍ଷତ୍ର:

୧ମ ଅଶ୍ୱିନୀ- ୪ର୍ଥ ରୋହିଣୀ

ପ୍ରକରଣ:

୧ମ -୩ୟ

ପରିବେଷକ

ଅପଣ୍ଡିତ ଦାମୋଦର ବଳୀୟାରସିଂହ

# ଭାବୁକ ଭାଗବତ
## ଅପଣ୍ଡିତ ଶ୍ରୀ ଦାମୋଦର ବଳୀୟାରସିଂହ

ପ୍ରଥମ ସଂସ୍କରଣ: ନବକଳେବର ଶ୍ରୀ ବାହୁଡ଼ା ଯାତ୍ରା ୨୦୧୫
ବିକ୍ରମ ସମ୍ବତ୍- ୨୦୭୨

ପ୍ରକାଶିକା:
**ଶ୍ରୀମତୀ କଳ୍ପନା ବଳୀୟାରସିଂହ**
ନୀଳକଣ୍ଠନଗର ବ୍ରିଟ୍ କଲୋନି
ଷ୍ଟେଜ-୨, ଶ୍ୟାମ କୁଞ୍ଜମ୍
ବ୍ରହ୍ମପୁର (ଗଂଜାମ ଜିଲ୍ଲା)
ମୋବାଇଲ: ୯୪୩୭୧୦୯୧୨୦

ଅକ୍ଷର ସଜ୍ଜା: ଶ୍ରୀ ସନ୍ତୋଷ ପଟ୍ଟନାୟକ
ପ୍ରଚ୍ଛଦ: କମ୍ପ୍ୟୁଟର ସଲ୍ୟୁସନ୍

**ମୁଦ୍ରଣ: ଆଲ୍‌ଭି ପ୍ରିଣ୍ଟର୍ସ, ବ୍ରହ୍ମପୁର**

**ମୂଲ୍ୟ: ଏକ ସେଟ୍ (ଛଅଖଣ୍ଡ) ପନ୍ଦରଶହ ଟଙ୍କା**

# ଉତ୍ସର୍ଗ

କେଉଁ ଯୁଗରେ କେଜାଣି ହାତଟେକି ସେଇ ଟେକା ହାତ ଶ୍ରୀଜଗନ୍ନାଥଙ୍କୁ ଡ଼ାକିଥିଲି, ସେ ମୋତେ ତାଙ୍କ ପ୍ରିୟ ଉତ୍କଳ ଧାମରେ ଜନ୍ମ ଦେଲେ । ଏ ଜନ୍ମରେ ତାଙ୍କୁ ଡ଼ାକିଲି, ତାଙ୍କ ହାତ ଧରିଲି । ହେଲେ ଛବିଶ ବର୍ଷ ତଳେ ଦିନେ ସେ ନିଜେ ଜଣାଇଦେଲେ ଯେ ମୁଁ ତାଙ୍କ ହାତ ଧରିନାହିଁ । ସେ ମୋ ହାତ ଧରିଛନ୍ତି । ସେହି ଦିନୁ ଆଉ ପଛକୁ ଫେରି ଚାହିଁନି । ସେ ମୋତେ ଜଣେ କୃଷ୍ଣପ୍ରେମୀ ରସିକ ଗୁରୁଙ୍କୁ ଶରଣାଗତ କରାଇଲେ । ପରେ ପରେ ମୋତେ ସତେଇଶ ବର୍ଷ କାଳ ଭାଗବତ ପଢ଼ାଇଲେ, ଶୁଣାଇଲେ, ମୋ ମୁହଁରେ କୁହାଇଲେ ମଧ୍ୟ । ଚାରି ଧାମ ତୀର୍ଥ କରାଇଲେ, କାଶ୍ମୀରରୁ କନ୍ୟାକୁମାରୀ କାମାକ୍ଷାରୁ କେଦାରନାଥ ଆଦି ଦର୍ଶନ କରାଇଲେ । ଅଯୋଧ୍ୟା ନେଲେ । ପ୍ରୟାଗରାଜରେ ଦୁଇ ଦୁଇଥର ମହାକୁମ୍ଭ ସ୍ନାନ କରାଇଲେ । ସାତ ସାତ ଥର ବୃନ୍ଦାବନ ବାସ କରାଇ ଏବେ ନଅବର୍ଷ କାଳ ମୋ ହାତ ଧରି ଭାଗବତ ଲେଖାଇ ସଂପୂର୍ଣ୍ଣ କରାଇଲେ । ଜ୍ଞାନୀଏ କହନ୍ତି ତାଙ୍କର ବାହୁ ସିନା ଅଛି କିନ୍ତୁ ହାତ ନାହିଁ । ଭକ୍ତମାନଙ୍କ ପାଇଁ ଯେଉଁ ସୁନ୍ଦର ସୁନ୍ଦର ସୁନା ହାତ କାଢ଼ି ବର୍ଷକରେ ଚାରିଦିନ ଦେଖାନ୍ତି ସେଇ କରକମଳରେ ସପ୍ରେମ ସଭକ୍ତିକ ସମର୍ପଣ କରୁଛି ଭାବୁକ ଭାଗବତ ଗ୍ରନ୍ଥର ପ୍ରଥମ ଖଣ୍ଡିକ ।

ବିନୀତ ପ୍ରାର୍ଥନା ପ୍ରଭୋ, ଜୀବନଦୀପ ଶିଖା ହଲ୍‌ଚଲ୍ ହେଲାଣି । ଠେଙ୍ଗା ଧରିଲେ ବାଟ ଚାଲୁଚି, ଚଷମା ପିନ୍ଧିଲେ ଭାଗବତ ପଢୁଛି, ଲେଖୁଚି । ଶେଷରେ ମୋତେ ପାଉଣା ରୂପେ ଆଉ କିଛି ଦିଅ କି ନ ଦିଅ ମୁକ୍ତି ଦେବନି । ଦେବ ସେଇ ରସିକ ଗୁରୁଙ୍କ ମାର୍ଫତରେ କୃଷ୍ଣପ୍ରେମର ପସରା । ଏ ଜନ୍ମରେ ଯେଉଁଠି ଛାଡୁଛି ଆର ଜନ୍ମରେ ସେଇଠୁ ଲେଖିବି ।

**ଅପଣ୍ଡିତ ଦାମୋଦର**

# ଭୂମିକା

ବ୍ରହ୍ମବିଦ୍ୟା ହିଁ ସକଳ ବିଦ୍ୟାମାନଙ୍କର ମୁକୁଟମଣି । ଯାହାକୁ ଜାଣିବା ପରେ ଆଉ କିଛି ଜାଣିବା ବାକି ରହେନାହିଁ । ଶ୍ରୀକୃଷ୍ଣ ହିଁ ଏକମାତ୍ର ଠାକୁର ଯାହାଙ୍କୁ ସେବା କରିପାରିଲେ ଆଉ କିଛି ବି କରିବା ବାକି ରହେନା । ଶ୍ରୀକୃଷ୍ଣ ଓ ଶ୍ରୀକୃଷ୍ଣ ଭକ୍ତଙ୍କ ପ୍ରେମ କେବଳ ଏଭଳି ଏକ ଚିଜ ଯାହାକୁ ପାଇବା ପରେ ଆଉ କିଛି ପାଇବାକୁ ମନ, ବୁଦ୍ଧି, ଚିତ୍ତ ଓ ଅହଂକାର ସବୁ କିଛିକୁ ଜୀବ ସମର୍ପଣ କରିଦେଇ ପ୍ରେମାନନ୍ଦ ସାଗରରେ ବୁଡ଼ବନ ମାରେ ।

ଶ୍ରୀମଦ୍‌ଭାଗବତ ସଂସ୍କୃତ ଭାଷାରେ ରଚିତ ବ୍ୟାସଦେବଙ୍କର ସର୍ବଶେଷ ଓ ସର୍ବଶ୍ରେଷ୍ଠ ରଚନା । ଯାହାଙ୍କ ରଚନା ପରେ ସେ ଆଉ ଲେଖନୀ ଚାଳନା କରିନାହାନ୍ତି । ଲେଖକ ଗଣେଶଜୀଙ୍କୁ ଛୁଟି ଦେଇ ଦେଇଛନ୍ତି । ଏହି ମହାଗ୍ରନ୍ଥ ସଂସ୍କୃତ ଭାରତୀଙ୍କ ରାଜ୍ୟରେ ଏକ କ୍ରାନ୍ତିକାରୀ ସୃଷ୍ଟି । ଏହା ମନୁଷ୍ୟ ମସ୍ତିଷ୍କର ବୌଦ୍ଧିକ ବିକାଶ ଲାଗି ଯେତିକି ଖୋରାକ ଯୋଗାଇଛି ତାର ହୃଦୟ କନ୍ଦରରେ ଭାବର ସମୁଦ୍ରରେ ନିତ୍ୟ ନବାୟମାନ, ନିତ୍ୟ ବର୍ଦ୍ଧମାନ ଓ ଅନନ୍ତ ଲହରୀ ଉଠାଇବାରେ ସେତିକି ସମର୍ଥ ମଧ୍ୟ । ବହୁ ପ୍ରାଚୀନ କାଳରୁ ଓଡ଼ିଶାର ବାଲେଶ୍ୱର ନିକଟସ୍ଥ ମରେଇ ଗ୍ରାମର ଶ୍ରୀଧରସ୍ୱାମୀ, ବଙ୍ଗଳାର ବିଶ୍ୱନାଥ ଚକ୍ରବର୍ତ୍ତୀ ପାଦ, ଶ୍ରୀ ସନାତନ ଗୋସ୍ୱାମୀ, ଚତୁର୍ଥ ମୂଳ ଜଗଦ୍‌ଗୁରୁ ଶ୍ରୀ ମଧ୍ୱ ଆଚାର୍ଯ୍ୟ, ଶ୍ରୀପାଦ ବଲ୍ଲଭ ଆଚାର୍ଯ୍ୟ ଓ ନାରାୟଣ ଭଞ୍ଜଥାରୀ ଇତ୍ୟାଦି ଅନେକ ବୈଷ୍ଣବ ମହାପୁରୁଷ ଭାଷା, ଟୀକା, ଟୀପ୍‌ପଣୀ ଆଦି ସେଇ ସଂସ୍କୃତ ଭାଷାରେ ଲେଖି ଚାଲିଛନ୍ତି । ଏବେ କିନ୍ତୁ ଆଂଚଳିକ ଭାଷାମାନଙ୍କରେ ଭାଗବତଙ୍କର ଅନେକ ପଦ୍ୟ, ଗଦ୍ୟ ଓ ଭାବାନୁବାଦ ପ୍ରତିବର୍ଷ ପ୍ରକାଶ ପାଇଛି । ସେ ସବୁର ପ୍ରକାଶରେ ଗୋରଖପୁର ଗୀତାପ୍ରେସର ଭୂମିକା ଅତୀବ ପ୍ରଶଂସନୀୟ ।

ତଥାପି ଉତ୍କଳ ଭାଷାରେ ଭାଗବତଙ୍କ ଉପରେ ଲିଖିତ କିମ୍ବା ପ୍ରକାଶିତ ଗ୍ରନ୍ଥଙ୍କ ସଂଖ୍ୟା ଅତ୍ୟନ୍ତ ସୀମିତ । ଏମାନଙ୍କ ମଧ୍ୟରେ ଭକ୍ତ ଶ୍ରେଷ୍ଠ ଶ୍ରୀ ଜଗନ୍ନାଥ ଦାସ ଓ ପଣ୍ଡିତ ଦୀନବନ୍ଧୁ ଖାଡ଼ଙ୍ଗାଙ୍କର ଦୁଇ ପଦ୍ୟାନୁବାଦ ଉତ୍କଳ ଭାରତୀଙ୍କ ଗଳାରେ ଦୁଇଟି ଅମ୍ଳାନ ଗଳାହାର । ଗଦ୍ୟାନୁବାଦ ମାନଙ୍କ ମଧ୍ୟରେ ଶ୍ରୀ ବଳରାମ

ବାନପ୍ରସ୍ଥୀଙ୍କ ଭାଗବତ, ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଓ ଶ୍ରୀ ସୁଶୀଳ ପଟ୍ଟନାୟକଙ୍କ ଭାଗବତ ଅନୁବାଦ ସବୁ ଉଚ୍ଚ ପ୍ରଶଂସିତ ହୋଇଛନ୍ତି । ସେ ସବୁ ଗ୍ରନ୍ଥମାନଙ୍କୁ ଖୁଦୁରୁକୁଣୀ ଗୀତ, ତ୍ରିନାଥ ମେଳା ବହି କି ଉପନ୍ୟାସ ପଢ଼ିବା ଭଳି ପଢ଼ିଗଲେ ଭାଗବତ ଗ୍ରନ୍ଥଙ୍କର ପ୍ରକୃତ ରସ ଆସ୍ୱାଦନ ସମ୍ଭବ ହୁଏନା । ଏହା ଆମ ସମସ୍ତ ଓଡ଼ିଆ ଭାଷାଭାଷୀଙ୍କର ନିଜସ୍ୱ ଅନୁଭବ ।

ଯେଉଁ ଓଡ଼ିଆ ଅଧ୍ୟାତ୍ମ ସାହିତ୍ୟ ଅନୁରାଗୀଗଣ ବ୍ୟାସଦେବଙ୍କ ମୂଳ ଭାଗବତରେ ରସ ଆସ୍ୱାଦନ କରିବାରେ ଝାଳନାଳ ହେଉଛନ୍ତି ପୁଣି ଓଡ଼ିଆ ଭାଷାରେ ରଚିତ ଉପରୋକ୍ତ ପଦ୍ୟାନୁବାଦ ଓ ଗଦ୍ୟାନୁବାଦ ରଚନାରୁ ଭାବ ରାଜ୍ୟର ରସ ପାଇପାରୁନାହାନ୍ତି କେବଳ ସେଇମାନଙ୍କ ଲାଗି ଏକ ନୂତନ ପ୍ରଶ୍ନ-ଉତ୍ତର ଶୈଳୀରେ ମୂଳ ଭାଗବତଙ୍କର ୧୪,୧୦୦ ଶ୍ଳୋକ ମଧ୍ୟରୁ ସହଜ ସରଳ ବୋଧଗମ୍ୟ ୨,୯୭୦ ଶ୍ଳୋକରେ ଅତ୍ୟନ୍ତ ସଂକ୍ଷେପରେ ୩୩୫ ଅଧ୍ୟାୟକଙ୍କୁ ଓଡ଼ିଆ ପାଠକମାନଙ୍କ ପାଖରେ ପହଞ୍ଚେଇବାକୁ ସାହସ ବାନ୍ଧିଛି ଏ ଅଧମ ଲେଖକ ।

ବ୍ରହ୍ମବିଦ୍ୟାର ପରିବେଷଣ ଶୈଳୀ ସର୍ବଦା ପ୍ରଶ୍ନ-ଉତ୍ତର ମୂଳକ ହୋଇଥାଏ । କେଉଁଠି କର୍ମଯୋଗୀ ଅର୍ଜୁନ ପ୍ରଶ୍ନକର୍ତ୍ତା ଓ ଭଗବାନ ଶ୍ରୀକୃଷ୍ଣ ଉତ୍ତରଦାତା । ପୁଣି କେଉଁଠି ଜ୍ଞାନଯୋଗୀ ଉଦ୍ଧବଜୀ ପ୍ରଶ୍ନକର୍ତ୍ତା ଓ ସେଇ ଶ୍ରୀକୃଷ୍ଣ ଉତ୍ତରଦାତା । ଅଥବା ଭକ୍ତିଯୋଗୀ ମା' ପାର୍ବତୀ ପ୍ରଶ୍ନ କରିବାବେଳେ ଉତ୍ତର ଦେଇଛନ୍ତି ପରମ ବୈଷ୍ଣବ ଭଗବାନ ଶଙ୍କରଜୀ । ସେହିଭଳି ସୂତ-ଶୌନକ, ଶୁକ-ପରୀକ୍ଷିତ ଓ ଜନ୍ମେଜୟ-ବୈଶମ୍ପାୟନଙ୍କ ପ୍ରଶ୍ନୋତ୍ତର ପ୍ରସଙ୍ଗ । ବ୍ରହ୍ମଜ୍ଞାନ ଆଲୋଚନା କେଉଁଠାରେ ଏକାନ୍ତରେ ଅନୁଷ୍ଠିତ ହୁଏ ତ ପୁଣି କେଉଁଠି ଏକ ମହାସତ୍‌ସଙ୍ଗ ଅଧିବେଶନରେ ମଧ୍ୟ ହୁଏ । ଯେହେତୁ ବହୁତ ଲୋକ ବ୍ରହ୍ମଜ୍ଞାନ ବିଷୟକ ପ୍ରଶ୍ନ କରିବାରେ ସଂକୋଚ କରନ୍ତି ନିଜ ଅହଂକାର ହରେଇ ବସିବା ଭୟରେ ସେତେବେଳେ ସେଇ ସେଇ ଆଲୋଚନାକୁ ଶ୍ରଦ୍ଧାପୂର୍ବକ କେବଳ ଶ୍ରବଣ କଲେ ଉପସ୍ଥିତ ଶ୍ରୋତା ମଧ୍ୟ ତାର ଲାଭ ଉଠାଇପାରେ । ତା' ନିମିତ୍ତ ତତ୍ତ୍ୱଜ୍ଞାନ ପ୍ରାପ୍ତି ହୁଏତ ଅପେକ୍ଷାକୃତ ସହଜ ହୋଇପାରେ । ସେହି ଲକ୍ଷ୍ୟରେ ପ୍ରଶ୍ନ-ଉତ୍ତର ଶୈଳୀରେ ଏହି ଗ୍ରନ୍ଥ ରଚନା ଏକ ତୁଚ୍ଛ ପ୍ରୟାସ ମାତ୍ର ।

ବେଦବ୍ୟାସ ଜୀଙ୍କ ଦ୍ୱାଦଶ ସ୍କନ୍ଧ ଓ ୩୩୫ ଅଧ୍ୟାୟରେ ଲିଖିତ ଗ୍ରନ୍ଥକୁ ଦିନକରେ ଅଧ୍ୟାୟେ ଲେଖାଏଁ ପଢ଼ି ବର୍ଷକରେ ଥରେ ସାରିବା ପଦ୍ଧତି ଏବେ ବି

ଘରେ ଘରେ ପ୍ରଚଳିତ । ଏତେ ବଡ଼ ବିଶାଳଗ୍ରନ୍ଥକୁ ଥରେ ଆରମ୍ଭ କରି ବର୍ଷ ଶେଷରେ ଅନ୍ତିମ ଅଧ୍ୟାୟରେ ପହଞ୍ଚିବା ବେଳକୁ ପ୍ରଥମ ସ୍କନ୍ଧର ବିଷୟବସ୍ତୁ ପ୍ରାୟ ପାଶୋର ଯାଇଥାଏ । ସୁତରାଂ ଏ ଅସୁବିଧାର ନିରାକରଣ ଲାଗି ଏହାକୁ ବର୍ଷକରେ ବାରଥର ପାରାୟଣ କରିବା ଲାଗି ପ୍ରତ୍ୟେକ ମାସରେ ଥରେ ଲେଖାଏଁ ସାର ସାର ଚିଜକୁ ଅଳ୍ପ ଅଳ୍ପ କରି ପାଠ କରିବା ଲାଗି ଏହି ଗ୍ରନ୍ଥକୁ ୨୭ ନକ୍ଷତ୍ରରେ ବିଭାଜନ କରି ସଜା ଯାଇଛି । ସୁତରାଂ ଭାଗବତଙ୍କର ବିଷୟ ବସ୍ତୁକୁ ବର୍ଷକରେ ମଧ୍ୟ ବାରଥର ପାରାୟଣ କରିହେବ । ପ୍ରତ୍ୟହ ୧୦୮ ଶ୍ଳୋକକୁ ୧୯ ମିନିଟ୍ ମଧ୍ୟରେ ଆବୃତ୍ତି କରିଚାଲିଲେ ପାଠକେ ନିଶ୍ଚୟ କୃଷ୍ଣକଥା ଅମୃତ ରସ ସାଗରର ସନ୍ଧାନ ପ୍ରାପ୍ତ ହେବେ ।

ମୂଳ ଭାଗବତକୁ ଶ୍ରୀଲ ବ୍ୟାସଦେବ ସୂର୍ଯ୍ୟଦେବଙ୍କ ସମ୍ବନ୍ଧିତ ଗାୟତ୍ରୀମନ୍ତ୍ରର ବ୍ୟାଖ୍ୟା କହି ସୂର୍ଯ୍ୟଙ୍କର ଦ୍ୱାଦଶ ରାଶିରେ ସଂକ୍ରମଣକୁ ଧରି ଦ୍ୱାଦଶ ସ୍କନ୍ଧରେ ପରିବେଷଣ କରିଛନ୍ତି ୩୩୫ ଅଧ୍ୟାୟରେ । ଗୀତାଙ୍କର ୧୮ ଅଧ୍ୟାୟ ସହିତ ଭାଗବତଙ୍କ ୩୩୫ ଅଧ୍ୟାୟକୁ ମିଶାଇ ଏକ ଚନ୍ଦ୍ର ବର୍ଷରେ (୩୫୪ ଦିନରେ) ଥରେ ପାରାୟଣ କରିବା ଲକ୍ଷ୍ୟ ଥିଲା ବ୍ୟାସଦେବଙ୍କର । ବୁଦ୍ଧିର ଦେବତା ସୂର୍ଯ୍ୟଦେବ । ବୁଦ୍ଧିକୁ ଶୁଦ୍ଧ କରିବାକୁ ଭଗବାନ ଶ୍ରୀରାମ ଅବତାରରେ ସୂର୍ଯ୍ୟବଂଶରେ ପ୍ରକଟ ହୋଇଥିଲେ ଯାହାକି ପରବର୍ତ୍ତୀ କୃଷ୍ଣ ଅବତାର ଲାଗି ପଥ ପରିଷ୍କାର କରିଥିଲା । ଶ୍ରୀରାମଙ୍କ ଅବତାର ସ୍ୱଧର୍ମ ପାଳନର ଆଦର୍ଶ ହେବାବେଳେ ଶ୍ରୀକୃଷ୍ଣଙ୍କର ସ୍ୱଧର୍ମ ତ୍ୟାଗ ଓ ପ୍ରେମର ଆଦର୍ଶ । ପ୍ରଥମେ ବୁଦ୍ଧି ନିର୍ମଳ ହେଲେ ପରେ ମନ ନିର୍ମଳ ହୁଏ ।

ବର୍ତ୍ତମାନ ଏହି ସଂକଳନକୁ ୪୩ ପ୍ରକରଣରେ ବିଭାଜନ କରିବାର ଉଦ୍ଦେଶ୍ୟ ହେଲା ଭାଗବତଙ୍କର ମୁଖ୍ୟ ମୁଖ୍ୟ ପ୍ରସଙ୍ଗ ଗୁଡ଼ିକୁ ଟିକିଏ ବିସ୍ତାରିତ କରି ନିଜ ନିଜ ମନରେ ସାଇତିବାର ଏକ ଅଭିନବ ପ୍ରୟାସ । ଚନ୍ଦ୍ରଦେବଙ୍କର କଳା ସଂଖ୍ୟା ଷୋହଳ ଓ ପତ୍ନୀଙ୍କ ସଂଖ୍ୟା ସତେଇଶ । ଉଭୟ ସଂଖ୍ୟାକୁ ମିଶାଇ ଭାଗବତ କଥାବସ୍ତୁକୁ ୪୩ ପ୍ରକରଣରେ ପରିବେଷଣ କରାଯାଇଛି ଆଲୋଚ୍ୟ ଗ୍ରନ୍ଥରେ । ଚନ୍ଦ୍ର ହେଉଛନ୍ତି ମନର ଦେବତା । ଶ୍ରୀକୃଷ୍ଣଙ୍କର ପ୍ରାକଟ୍ୟ ହୋଇଛି ସେଇ ଚନ୍ଦ୍ରବଂଶରେ ଯାହାଙ୍କର ଚରିତ ସୁଧା କଳିଯୁଗୀ ମନୁଷ୍ୟମନକୁ ତନ୍ମୟ କରିବା, ତଦ୍‌ଗତ କରିବା, ତଦ୍‌ଭାବ ଭାବିତ କରି ତଲ୍ଲୀନ କରିବାରେ ସଂପୂର୍ଣ୍ଣ ସମର୍ଥ ଏହି ଅବ୍ୟର୍ଥ ମହୌଷଧି ରୂପେ ରଚିତ ଶ୍ରୀମଦ୍‌ଭାଗବତ ମହାଗ୍ରନ୍ଥ ।

ଗ୍ରନ୍ଥର ପରିବେଷକ ପେଶାରେ ଇଞ୍ଜିନିୟର ହେଲେ ବି ନିଶାରେ ଏ ଅଧମ ଜଣେ ଆଜନ୍ମ କୃଷ୍ଣ ପ୍ରେମରସ ପିପାସୁ । ଭାଗବତ ପଠନ ପାଠନ, ସାଧୁସେବା, ଗୋସେବା ଆଦିରେ ରୁଚି ଲେଖକ ବଂଶ ପରମ୍ପରା କ୍ରମେ ପ୍ରାପ୍ତ ହୋଇଛି । କେବଳ ମାଟ୍ରିକ୍ ପର୍ଯ୍ୟନ୍ତ ସୀମିତ ମାତ୍ରାରେ ସଂସ୍କୃତ ବ୍ୟାକରଣ, ଅଳଂକାର ଆଦି ପଢ଼ିଥିବା ଜଣେ ସାମାନ୍ୟ ଲୋକ ପକ୍ଷରେ ଶ୍ରୀମଦ୍‌ଭାଗବତ ଭଳି ଏକ ଅତ୍ୟନ୍ତ ରହସ୍ୟମୟ ଗ୍ରନ୍ଥ ଉପରେ ଲେଖନୀ ଚାଳନା କରିବାକୁ ଅନଧିକାର ଚର୍ଚ୍ଚା ବା ଧୃଷ୍ଟତା କୁହାଯାଇପାରିବ । ତଥାପି ଦୀର୍ଘ ସତେଇଶ ବର୍ଷ ଭାଗବତଙ୍କର ଅଧ୍ୟୟନ, ଶ୍ରବଣ, କୀର୍ତ୍ତନ, ମନନ କରି କରି କିଛି ଭକ୍ତିର ଭାବରାଜ୍ୟର ଗୋପନୀୟ ରହସ୍ୟ କୃଷ୍ଣ ପ୍ରେମ ରସ ଓଡ଼ିଆ ପିପାସୁମାନଙ୍କ ହସ୍ତରେ ଅର୍ପଣ କରିବାକୁ ସାହସ ବାନ୍ଧିଛି ଲେଖକ ଯାହାକୁ ଏକ ଅବୋଧ ଶିଶୁ ସମୁଦ୍ର ବେଳାଭୂମିରୁ ଖେଳରେ ଖେଳରେ କିଛୁ ଉପଳ ଖଣ୍ଡ ସଂଗ୍ରହ ବୋଲି ପାଠକେ ଧରିନେଇପାରନ୍ତି ।

ଗ୍ରନ୍ଥ ପରିପୂରଣ ଓ ପ୍ରକାଶରେ ନିରଳସ ଓ ଅକୁଣ୍ଠ ସହାୟତା କରିଥିବା ଇଣ୍ଡିଆନ୍ ଓଭରସିଜ୍ ବ୍ୟାଙ୍କରେ ଅବସ୍ଥାପିତ ସୁସାହିତ୍ୟିକ ଶ୍ରୀଯୁକ୍ତ ଚିତ୍ତରଞ୍ଜନ ତ୍ରିପାଠୀଙ୍କୁ ଅନ୍ତରର କୃତଜ୍ଞତା ନ ଜଣାଇଲେ ଭୂମିକା ଲିଖନ ଅସଂପୂର୍ଣ୍ଣ ରହିଯିବ । ଲେଖାବେଳେ ତାଙ୍କ ପ୍ରେରଣା, ଛପାବେଳେ ଡ଼ି.ଟି.ପି. କେନ୍ଦ୍ରକୁ ବାରମ୍ବାର ଦୌଡ଼ିବା, ନିଜେ କମ୍ପ୍ୟୁଟର ପାଖରେ ବସି ଘଣ୍ଟା ଘଣ୍ଟା ଧରି ଡ଼ି.ଟି.ପି. ସଂଶୋଧନ କରିବା, ପ୍ରଚ୍ଛଦପଟ ଛାପିବା, ଗ୍ରନ୍ଥକୁ ଇଣ୍ଟରନେଟ୍‌ରେ ଅପଲୋଡ୍ କରିବା ଇତ୍ୟାଦି ଶ୍ରେୟ ଲାଗି ସେ ସର୍ବଦା ଧନ୍ୟବାଦାର୍ହ ଓ ଶ୍ରୀରାଧା ଗୋବିନ୍ଦଙ୍କର ଅପାର କୃପାର ଜଣେ ସତ୍‌ପାତ୍ର ।

ଅଳଂ ଅତି ବିସ୍ତରେଣ ।

ଅଧମ ପରିବେଷକ

**ଅପଣ୍ଡିତ ଶ୍ରୀ ଦାମୋଦର ବଳୀୟାରସିଂହ**

# ଦୈନିକ ପ୍ରାର୍ଥନା

ଆଚାର୍ଯ୍ୟଂ ମାଂ ବିଜାନୀୟାନ୍ ନ-ଅବମନ୍ୟେତ କର୍ହିଚିତ୍ ।
ନ ମର୍ତ୍ତ୍ୟ ବୁଦ୍ଧ୍ୟା-ଅସୂୟେତ ସର୍ବ ଦେବମୟୋ ଗୁରୁଃ ।।

ଭା-୧୧-୧୭-୨୭

ହେ ପରମ ପ୍ରିୟତମ ପୂର୍ଣ୍ଣତମ ଶ୍ରୀକୃଷ୍ଣ, ତୁମ୍‌ସେ ବିମୁଖ ହୋନେ କେ କାରଣ ଅନାଦି କାଲ ସେ ହମ୍‌ନେ ଅନନ୍ତ-ଅନନ୍ତ ଦୁଃଖ ପାୟେ ଏବଂ ପା ରହେ ହେଁ । ପାପ କରତେ କରତେ ଅନ୍ତଃକରଣ ଇତ୍‌ନା ମଲିନ୍ ହୋ ଚୁକା ହେ କି ରସିକୋଁ ଦ୍ୱାରା ୟହ ଜାନ୍‌ନେ ପର୍‌ଭୀ କି ତୁମ୍ ଅପନି ଭୁଜାଓଁ କୋ ପସାରେ ଅପନି ବାତ୍ସଲ୍ୟମୟୀ ଦୃଷ୍ଟିସେ ହମାରି ପ୍ରତୀକ୍ଷା କର୍ ରହେ ହୋ ତୁହ୍ମାରୀ ଶରଣ ମେଁ ନହିଁ ଆ ପାତା ।

ହେ ଅଶରଣ ଶରଣ, ତୁହ୍ମାରୀ କୃପା କେ ବିନା ତୁହ୍ମେ କୋଇ ଜାନ୍ ଭି ତୋ ନହିଁ ସକ୍‌ତା । ଐସି ସ୍ଥିତି ମେଁ ହେ ଅକାରଣ କରୁଣ ପତିତ ପାବନ ଶ୍ରୀକୃଷ୍ଣ, ତୁମ ଅପନି ଅହୈତୁକୀ କୃପା ସେ ହୀ ହମ୍‌କୋ ଅପନା ଲୋ ।

ହେ କରୁଣା ସାଗର, ହମ୍ ଭୁକ୍ତି ମୁକ୍ତି ଆଦି କୁଛ ଭି ନହିଁ ଚାହତେ । ହମେଁ ତୋ କେବଲ ତୁହ୍ମାରେ ନିଷ୍କାମ ଭକ୍ତି କୀ ହି ଏକମାତ୍ର ଚାହ ହୈ ।

ହେ ନାଥ ଅପନି ବିରଦ (ପ୍ରତିଜ୍ଞା) କୀ ଔର ଦେଖକର ଇସ୍ ଅଧମକୋ ନିରାଶ ନ କରୋ ।

ହେ ଜୀବନ ଧନ, ଅବ୍ ବହୁତ ହୋ ଚୁକା, ଅବ୍ ତୋ ତୁହ୍ମାରେ ପ୍ରେମ କେ ବିନା ୟହ ଜୀବନ ମୃତ୍ୟୁ ସେ ଭୀ ଅଧିକ ଭୟାନକ ହୈ । ଅତଏବ

ପ୍ରେମ ଭୀକ୍ଷାଂ ଦେହି, ପ୍ରେମ ଭୀକ୍ଷାଂ ଦେହି, ପ୍ରେମ ଭୀକ୍ଷାଂ ହି ଦେହି । ବୋଲିଏ-

ସାକେତ ବିହାରୀ ଶ୍ରୀ ରାଘବେନ୍ଦ୍ର ସରକାର କୀ ଜୟ ।
ବୃନ୍ଦାବନ ବିହାରୀ ଶ୍ରୀ ଯାଦବେନ୍ଦ୍ର ସରକାର କୀ ଜୟ ।
ଶ୍ରୀମଦ୍ ସଦ୍‌ଗୁରୁ ସରକାର କୀ ଜୟ ।

# ସୂଚୀପତ୍ର

ଓଁ କ୍ଲୀଁ କୃଷ୍ଣାୟ ଗୋବିନ୍ଦାୟ ଗୋପୀଜନବଲ୍ଲଭାୟ ନମଃ

## ପ୍ରଥମ ନକ୍ଷତ୍ର - ଅଶ୍ୱିନୀ

# ଶ୍ରୀମଦ୍ଭାଗବତ ମାହାତ୍ମ୍ୟମ୍

**ପଦ୍ମ ପୁରାଣ-ଉତ୍ତରାଖଣ୍ଡେ**

(ଅଧ୍ୟାୟ ୬-ଶ୍ଳୋକ ୪୨୩)

ବକ୍ତା-ରୋମହର୍ଷଣିସୂତ ଗୋସ୍ୱାମୀ

ଶ୍ରୋତା-ଶୌନକାଦି ୮୮,୦୦୦ଋଷି ମଣ୍ଡଳୀ

## ଅଥ ୧ମ ଅଧ୍ୟାୟଃ

**(କଳିଯୁଗ ଆରମ୍ଭରେ ନାରଦଙ୍କ ସହିତ ଭକ୍ତିଦେବୀଙ୍କ ଭେଟ)**

ପ୍ରଶ୍ନ-୧: ସନାତନ ବେଦ ମହାଗ୍ରନ୍ଥରେ ଯେ ନିର୍ଗୁଣ-ନିରାକାର-ନିର୍ବିଶେଷ ଓଁ ବା ତତ୍‌ରୂପରେ (ନେତି-ନେତି) ପୁଣି ସଗୁଣ-ନିରାକାର ଆତ୍ମାରୂପରେ (ଇତି-ଇତି) ବୋଲି ବର୍ଣ୍ଣିତ, ସେହିଁ ବେଦାନ୍ତରେ ବ୍ରହ୍ମ, ଗୀତାରେ ପୁରୁଷୋତ୍ତମ ଓ ଭାଗବତରେ ପରମ ସତ୍ୟ ବୋଲି କୀର୍ତ୍ତିତ ହୋଇଛନ୍ତି । ଅଥଚ ଏହି ଶ୍ରୀମଦ୍ଭାଗବତ ମାହାତ୍ମ୍ୟଙ୍କର ଶୁଭାରମ୍ଭ ବେଳେ ମଙ୍ଗଳାଚରଣ ଶ୍ଳୋକର ପ୍ରଥମ ତିନିଚରଣରେ କେଉଁ ତିନି ଅତି ବିଶେଷ ଲକ୍ଷଣ ବର୍ଣ୍ଣନ ହେତୁ କେବଳ ଶ୍ରୀକୃଷ୍ଣଙ୍କୁ ନମସ୍କାର କରାଯାଇଛି ?

**ସତ୍-ଚିତ୍-ଆନନ୍ଦ ରୂପାୟ ବିଶ୍ୱ-ଉତ୍ପତ୍ତି-ଆଦି ହେତବେ ।**
**ତାପ ତ୍ରୟ ବିନାଶାୟ ଶ୍ରୀକୃଷ୍ଣାୟ ବୟଂ ନୁମଃ ।୧।**

ଉତ୍ତର: ଯଥାକ୍ରମେ ସତ୍-ଚିତ୍-ଆନନ୍ଦ ପୂର୍ଣ୍ଣତମ ପୁରୁଷୋତ୍ତମ ଭଗବାନଙ୍କ ସ୍ୱରୂପ ଲକ୍ଷଣ ବର୍ଣ୍ଣନ, ସର୍ବ ସାମର୍ଥ୍ୟର ସଙ୍କେତ (ସୃଷ୍ଟି-ପାଳନ-ସଂହାର) ଏବଂ ଆଧି ଭୌତିକ, ଆଧି ଦୈବିକ ଓ ଆଧ୍ୟାତ୍ମିକ ତାପ ତ୍ରୟ ନାଶ କରାଇପାରୁଥିବାରୁ ସ୍ୱଭାବ ଲକ୍ଷଣ ବର୍ଣ୍ଣନ ହୋଇଛନ୍ତି ଏ ଶ୍ଳୋକରେ । ଏ ତିନିଟିଯାକ ଅତି ବିଶିଷ୍ଟ ଲକ୍ଷଣ । ଶ୍ରୀକୃଷ୍ଣଙ୍କ ବ୍ୟତୀତ ଏକତ୍ର ଅନ୍ୟ କୌଣସି ଦେବୀ ଦେବତାଙ୍କ ଠାରେ ଏସବୁ ଦୃଷ୍ଟ ହୁଏ ନାହିଁ ବୋଲି ତାଙ୍କୁ ନମସ୍କାର କରାଯାଇଛି ।

ସୁତରାଂ ଏ ତିନି ଅତି ବିଶିଷ୍ଟ ଲକ୍ଷଣ ଯାହାଙ୍କ ପାଖରେ ଏକତ୍ର ଦୃଷ୍ଟ ହୁଏ ସେଇ ତ ଶ୍ରୀକୃଷ୍ଣ । ତାଙ୍କ ନାମ ଭକ୍ତ ପାଇଁ ହୁଏତ ଶ୍ରୀରାମ, ନାରାୟଣ, ବିଷ୍ଣୁ, ନୃସିଂହ, ବାମନ, ବରାହ, ମହାକାଳୀ, ଜଗନ୍ନାଥ ଯାହା ବି ହେଉ ।

ପ୍ରଶ୍ନ-୨ ଭାଗବତ କଥା ଅମୃତ ପାନରେ କୁଶଳ ରସିକ ଶୌନକ ମୁନି ଅତ୍ୟନ୍ତ ବୁଦ୍ଧିମାନ (ମହାମତିଂ) ସୂତ ଗୋସ୍ୱାମୀଙ୍କୁ ନମସ୍କାର କରି କେଉଁଠାରେ ଏହି ଭାଗବତ ମାହାତ୍ମ୍ୟ ବିଷୟରେ ପ୍ରଶ୍ନ କରିଥିଲେ ?

**ନୈମିଷେ ସୂତଂ ଆସୀନଂ ଅଭିବାଦ୍ୟ ମହାମତିମ୍ ।**
**କଥାମୃତ ରସ-ଆସ୍ୱାଦ କୁଶଳଃ ଶୌନକୋଽବ୍ରବୀତ୍ ।୩।**

ଉତ୍ତର: ଭାରତ ଭୂଖଣ୍ଡର ଆଧୁନିକ ଉତ୍ତର ପ୍ରଦେଶ ସ୍ଥିତ ନୈମିଷ ଅରଣ୍ୟରେ । ସୀତାପୁର ଜିଲ୍ଲାରେ ଲକ୍ଷ୍ନୌ ସହରଠାରୁ ୧୦୩ କି.ମି. ଦୂରରେ ।

**ଶୌନକ ଉବାଚ**

ପ୍ରଶ୍ନ-୩: ସୂର୍ଯ୍ୟଦେବ ଅନ୍ଧକାର (ଧ୍ୱାନ୍ତ) କୁ ନାଶ କଲା ସଦୃଶ ମନୁଷ୍ୟର କର୍ଣ୍ଣ-ମନକୁ ରସାୟନ (ଟନିକ୍) ଭଳି ଜନ୍ମ-ଜନ୍ମାନ୍ତରର ଅବିଦ୍ୟା ନାଶକ ବସ୍ତୁ କ'ଣ କି?

**ଅଜ୍ଞାନ ଧ୍ୱାନ୍ତ ବିଧ୍ୱଂସ କୋଟି ସୂର୍ଯ୍ୟ ସମପ୍ରଭ ।**
**ସୂତ-ଆଖ୍ୟାହି କଥା ସାରଂ ମମ କର୍ଣ୍ଣ ରସାୟନମ୍ ।୪।**

ଉତ୍ତର: ସକଳ କଥାର ସାରାତିସାର ଶ୍ରୀମଦ୍ଭାଗବତ କଥା ଓ ତାଙ୍କ ମାହାତ୍ମ୍ୟ ।

**ସୂତ ଉବାଚ**

ପ୍ରଶ୍ନ-୪ : କଳିଯୁଗରେ (କଲୌ) କାଳ ମୁଖରେ ଅକାଳରେ ଗ୍ରସିତ ହେବା ଭୟ (ତ୍ରାସ) ନିବାରଣ (ନିର୍ଣ୍ଣାସ) ପାଇଁ(ହେତବେ) ଶ୍ରୀମଦ୍ଭାଗବତ ଶାସ୍ତ୍ର କିଏ ପ୍ରବଚନ କରିଥିଲେ ସର୍ବପ୍ରଥମେ ?

**କାଳ ବ୍ୟାଳ ମୁଖ ଗ୍ରାସ ତ୍ରାସ ନିର୍ଣ୍ଣାଶ ହେତବେ**
**ଶ୍ରୀମଭାଗବତଂ ଶାସ୍ତ୍ରଂ କଳୌ କୀରେଣ ଭାଷିତମ୍ ।୧୧।**

ଉତ୍ତର : କୀର ବା ଶ୍ରୀ ଶୁକଦେବ ପରମ ହଂସ ।

ପ୍ରଶ୍ନ-୫: ଶ୍ରୀମଭାଗବତ ଶ୍ରବଣ,କୀର୍ତ୍ତନ ଓ ଅର୍ଚ୍ଚନ ପାଇଁ କ'ଣ ଜୀବନରେ କିଛି ପୁଣ୍ୟ ଅର୍ଜିଥିବା ଦରକାର ପଡ଼େ ?

**ଏତସ୍ମାତ୍ ଅପରଂ କିଂଚିତ୍ ମନଃ ଶୁଦ୍ଧ୍ୟୈଃ ନ ବିଦ୍ୟତେ ।**
**ଜନ୍ମାନ୍ତରେ ଭବେତ ପୁଣ୍ୟଂ ତଦା ଭାଗବତଂ ଲଭେତ୍ ।୧୨।**

ଉତ୍ତର: ହଁ ଦରକାର ପଡ଼େ ନିଶ୍ଚୟ । ବର୍ତ୍ତମାନର କେବଳ ଏଇ ଗୋଟିକ ଜନ୍ମର ପୁଣ୍ୟ ନୁହେଁ । ପୂର୍ବ ପୂର୍ବ ଅନେକ ଜନ୍ମ- ଜନ୍ମାନ୍ତରର ଅର୍ଜିତ ପୁଣ୍ୟ ଆବଶ୍ୟକ ହୁଏ । କାରଣ ଶ୍ରୀମଭାଗବତ ଶାସ୍ତ୍ର ବ୍ୟତୀତ ଅନ୍ୟ କୌଣସି ବୈଦିକ ଲୌକିକ ଶାସ୍ତ୍ରରେ ଜୀବର ମନ, ବୁଦ୍ଧି ସଂପୂର୍ଣ୍ଣ ଶୁଦ୍ଧ ହୋଇପାରେ ନାହିଁ ।

ପ୍ରଶ୍ନ-୬ : ଭାଗବତ କଥା ଶ୍ରୀ ଶୁକଦେବ ପରମହଂସ ପ୍ରବଚନ ନ କରୁଣୁ ଅମୃତ କଳସ ଧରି ସ୍ୱର୍ଗରୁ ଆସି କଥାସ୍ଥଳରେ ପହଞ୍ଚିଗଲେ ଇନ୍ଦ୍ରାଦି ଦେବତା ମାନେ । ସେମାନେ କ'ଣ କହି କଥା ଆରମ୍ଭରେ ବିଘ୍ନ ଉପୁଜାଇଲେ ?

**ପରୀକ୍ଷିତେ କଥା ବକ୍ତୁଂ ସଭାୟାଂ ସଂସ୍ଥିତେ ଶୁକେ ।**
**ସୁଧା କୁମ୍ଭଂ ଗୃହୀତ୍ୱା-ଏବ ଦେବାଃ-ତତ୍ର ସମାଗମନ୍ ।୧୩।**

ଉତ୍ତର: ଦେବତାମାନେ କହିଲେ, ରାଜା ପରୀକ୍ଷିତଙ୍କୁ ମୃତ୍ୟୁ ଭୟରୁ ରକ୍ଷା କରିବାକୁ ଆମେ ଆଣିଥିବା ସ୍ୱର୍ଗ ସୁଲଭ ସୋମରସ, ଅମୃତ ପାନ ଯଥେଷ୍ଟ । ସେ ସ୍ୱର୍ଗ ଅମୃତ ପାନ କରୁଥାନ୍ତୁ । ହେ' ଶୁକଦେବଜୀ, ଆପଣ ଆମକୁ କଥା ଅମୃତ ପାନ କରାନ୍ତୁ । ଚାଲନ୍ତୁ ଆପଣ ସ୍ୱର୍ଗରେ ଏ ପ୍ରବଚନ କରିବେ ।'

ପ୍ରଶ୍ନ-୭: ବ୍ରହ୍ମରାତ ଶୁକଦେବ ପରମହଂସ କ'ଣ ବିଚାରି ଦେବତାମାନଙ୍କ ଅନୁରୋଧକୁ ହସରେ ଉଡ଼ାଇ ଦେଲେ ?

**କ୍ୱ ସୁଧା କ୍ୱ କଥା ଲୋକେ କ୍ୱ କାଚଃ କ୍ୱ ମଣିଃ-ମହାନ୍ ।**
**ବ୍ରହ୍ମରାତୋ ବିଚାର୍ଯ୍ୟ-ଏବଂ ତଦା ଦେବାନ୍ ଜହାସ ହ ।୧୬।**

ଉତ୍ତର: ସତ୍ତ୍ୱଗୁଣୀ ହେଲେ ମଧ୍ୟ ଦେବତାମାନେ ଭୋଗବିଳାସରେ ପାଗଳ ସୁତରାଂ ଭାଗବତ ଶ୍ରବଣର ଅନଧିକାରୀ । ସ୍ୱର୍ଗ ସୁଧା କାଚ ହେଲେ ହରି କଥା

ସୁଧା ଯେ ସ୍ୱର୍ଣ୍ଣମଣି ପଥର ସଦୃଶ ଅତି ଦୁର୍ଲ୍ଲଭ ଦୁର୍ମୂଲ୍ୟ ଚିଜ । ଫଳରେ ଦେବତାମାନେ ଭାଗବତ ରସ ପାନ ସୁଯୋଗରୁ ବଞ୍ଚିତ ହେଲେ ।

ପ୍ରଶ୍ନ-୮: ୩୩୫ ଅଧ୍ୟାୟ ବିଶିଷ୍ଟ ଭାଗବତକୁ ୩୬୦ ଦିନରେ ନ ଶୁଣି ସପ୍ତାହ ମଧ୍ୟରେ ଶ୍ରବଣ କଲେ କ'ଣ ମନୁଷ୍ୟ ମୁକ୍ତ ହୋଇଯିବ ?

**ସପ୍ତାହେନ ଶ୍ରୁତଂ ଚ-ଏତତ୍ ସର୍ବଥା ମୁକ୍ତିଦାୟକମ୍ ।**
**ସନକାଦ୍ୟୈଃ ପୁରା ପ୍ରୋକ୍ତଂ ନାରଦାୟ ଦୟାପରୈଃ ।୨୧।**

ଉତ୍ତର : ମୁକ୍ତି ପ୍ରାପ୍ତି ତ ସାମାନ୍ୟ କଥା । ଭୁକ୍ତି (ବିଷୟ ଭୋଗ), ଭକ୍ତି, ଜ୍ଞାନ ଓ ବୈରାଗ୍ୟ ସବୁ ପ୍ରାପ୍ତି ହୁଏ ସପ୍ତାହ ଶ୍ରବଣରେ । ପ୍ରମାଣ ହେଲା-ଚତୁଃସନକଙ୍କ ମୁଖରୁ ଦେବର୍ଷି ନାରଦଙ୍କ ଗଙ୍ଗା କୂଳରେ ହରିଦ୍ୱାରଠାରେ ଭାଗବତ ଶ୍ରବଣ ।

ପ୍ରଶ୍ନ-୯ : ବ୍ରହ୍ମାଜୀଙ୍କ ପ୍ରଥମ ୪ ବୈରାଗୀ ପୁତ୍ର ସନକାଦି ମୁନିଗଣଙ୍କୁ ଏ କଥା ଶ୍ରବଣ ଲାଗି ନାରଦ କେଉଁଠି ଭେଟିଲେ (ଦଦୃଶୁଃ) ?

**ଏକଦା ହି ବିଶାଳାୟାଂ ଚତ୍ୱାର ଋଷୟୋଽମଳାଃ ।**
**ସତ୍ ସଙ୍ଗାର୍ଥଂ ସମାୟାତା ଦଦୃଶୁଃ ତତ୍ର ନାରଦମ୍ ।୨୫।**

ଉତ୍ତର : ଦେବତାତ୍ମା ହିମାଳୟଙ୍କର ପାଦ ଦେଶର ବଦ୍ରିବିଶାଳ ବା ବଦ୍ରିନାଥ ଧାମରେ ନାରଦଜୀ ଖୋଜି ବୁଲୁଥିଲେ ତାଙ୍କ ପ୍ରଶ୍ନର ଉତ୍ତର-ସଂସାରରେ ସତ୍କର୍ମ ବୋଇଲେ କିସ ? ଏ ଉତ୍ତର କେବଳ ସତ୍‌ସଙ୍ଗରେ ମିଳିପାରେ । ସୁତରାଂ ସେ ସାରା ପୃଥିବୀ ପର୍ଯ୍ୟଟନରେ ବାହାରିଥିଲେ ।

ପ୍ରଶ୍ନ-୧୦ : ନାରଦଜୀଙ୍କ ମଳିନ ମୁଖ ଦର୍ଶନ କରି ସନକାଦି ମୁନିଗଣ ତାଙ୍କ ଚିନ୍ତାର କାରଣ ପଚାରିବାରୁ ନାରଦଜୀ ଉତ୍ତରରେ କ'ଣ କହିଲେ ?

**ନାରଦ ଉବାଚ**

**ଅହଂ ତୁ ପୃଥିବୀ ଯାତୋ ଜ୍ଞାତ୍ୱା ସର୍ବ-ଉତ୍ତମାଂ ଇତି ।**
**ପୁଷ୍କରଂ ଚ ପ୍ରୟାଗଂ ଚ କାଶୀ ଗୋଦାବରୀଂ ତଥା ।୨୮।**

ଉତ୍ତର : ଚତୁର୍ଦ୍ଦଶ ବ୍ରହ୍ମାଣ୍ଡ ମଧ୍ୟରେ ମର୍ତ୍ତ୍ୟଲୋକ ଶ୍ରେଷ୍ଠ ବୋଲି ମନେ କରି ପୁଣ୍ୟ ତୀର୍ଥ ଓ ପୁଣ୍ୟ ନଦୀମାନଙ୍କୁ ଦର୍ଶନ କଲି ଅବଶ୍ୟ । ଅଧର୍ମ କଳି କାଳଙ୍କର ପ୍ରଭାବରୁ ମୋତେ କେଉଁଠି ହେଲେ ଟିକିଏ ଶାନ୍ତି ମିଳିଲା ନାହିଁ । କେଉଁଠାରେ ହେଲେ ଭକ୍ତମାନେ ବସି ହରିଭଜନ କରୁଥିବା ମୋର ଦୃଷ୍ଟିଗୋଚର

ହେଲା ନାହିଁ ।

ପ୍ରଶ୍ନ-୧୧ : ନାରଦଜୀ ଭାରତରେ କଳିର କି କି କୁପ୍ରଭାବ ଦେଖିଲେ ?

**ସତ୍ୟଂ ନାସ୍ତି ତପଃ ଶୌଚଂ ଦୟା ଦାନଂ ନ ବିଦ୍ୟତେ ।**
**ଉଦରମ୍ଭରିଣୋ ଜୀବାଃ ବରାକାଃ କୂଟ ଭାଷିଣଃ ।୩୧।**

ଉତ୍ତର : ଲୋକଙ୍କ ଠାରେ ସତ୍ୟବାଦିତା, ତପସ୍ୟା, ପବିତ୍ରତା, ଦୟା, ଦାନ ଆଦି ସଦ୍‌ଗୁଣ ଦେଖାଯାଉନି । ଅଧିକାଂଶ ଲୋକ ପେଟ ପୋଷିବା ବାହାନାରେ କାଣି କଉଡ଼ିକ ପାଇଁ (ବରାକାଃ) କୂଟ କପଟ ଆଚରଣ କରିବାକୁ ତିଆର । ହରିଭଜନ କରିବାରେ ସେମାନେ ସଂପୂର୍ଣ୍ଣ ପରାଙ୍‌ମୁଖ ।

ପ୍ରଶ୍ନ-୧୨ : ଲୋକମାନେ ହରିଭଜନ ନ କରିପାରିବା କାରଣ କ'ଣ ?

**ମନ୍ଦାଃ ସୁମନ୍ଦମତୟୋ ମନ୍ଦଭାଗ୍ୟା ହି-ଉପଦ୍ରୁତାଃ ।**
**ପାଖଣ୍ଡ ନିରତାଃ ସନ୍ତୋ ବିରକ୍ତାଃ ସପରିଗ୍ରହାଃ ।୩୨।**

ଉତ୍ତର : କଳିଯୁଗ ପ୍ରଭାବରେ ସେମାନେ ଅଳସୁଆ,ବିଷୟ ସୁଖ ଲାଳସୀ ହେତୁ ଅଳ୍ପ ବୁଦ୍ଧିଆ, ଶୁଭ ସଂସ୍କାର ଶୂନ୍ୟ ଏବଂ ତମୋଗୁଣୀ ଅଭକ୍ତମାନଙ୍କ ଦ୍ୱାରା କରାଯାଉଥିବା ଅନେକ ବାଧା, ବିଘ୍ନର (ଉପଦ୍ରୁତାଃ) ସମ୍ମୁଖୀନ । ସାଧୁସନ୍ଥମାନେ କପଟୀ ପୁଣି ସନ୍ନ୍ୟାସୀମାନେ ମଧ୍ୟ ଛୁଆପିଲା ଜଞ୍ଜାଳରେ ବନ୍ଧନ ଯୁକ୍ତ (ସପରିଗ୍ରହାଃ) । ବର୍ଣ୍ଣ-ଆଶ୍ରମ ଧର୍ମ ପାଳନ ଲୁପ୍ତ ପ୍ରାୟ । ଏଇଭଳି ଆହୁରି ଅନେକ ଦୋଷରେ ଦୂଷିତ କଳିଯୁଗ ମନୁଷ୍ୟ ।

ପ୍ରଶ୍ନ-୧୩ : ଭାରତ ଭୂମିରେ ଗୃହସ୍ଥାଶ୍ରମ କି କି ଅଶୁଭ ଲକ୍ଷଣରେ ଦୂଷିତ ହୋଇଥିଲା ସେତେବେଳେ ?

**ତରୁଣୀ ପ୍ରଭୁତା ଗେହେ ଶ୍ୟାଳକୋ ବୁଦ୍ଧିଦାୟକଃ ।**
**କନ୍ୟା ବିକ୍ରୟିଣୋ ଲୋଭାତ୍ ଦମ୍ପତିନାଂ ଚ କଲ୍‌କନମ୍ ।୩୩।**

ଉତ୍ତର : ନାରୀଙ୍କ ଇଙ୍ଗିତରେ ଗୃହ ଶାସନ, ଶାଳକମାନେ ଶକୁନି ଭଳି ମନ୍ତ୍ରଣା ଦାତା, ପିତାଙ୍କ ଦ୍ୱାରା ଧନ ଆଶାରେ ଜନ୍ମିତା କନ୍ୟାର ବିକ୍ରୟ ଓ ପତି ପତ୍ନୀ ମଧ୍ୟରେ ସାନ ସାନ କଥାରେ ନିତ୍ୟ କଳି ଝଗଡ଼ା (କଲ୍‌କନମ୍), ମୁହଁ ଫୁଲା ଫୁଲି, ରାଗ-ରୁଷା ଓ ମନାନ୍ତର ।

ପ୍ରଶ୍ନ-୧୪: କଳି କାଳ ପ୍ରଭାବରେ କାହାକୁ କ'ଣ ଭଲ ଲାଗେ ନାହିଁ ?

**ଅଟ୍ଟଶୂଳା ଜନପଦାଃ ଶିବଶୂଳା ଦ୍ୱିଜାତୟଃ ।**
**କାମିନ୍ୟଃ କେଶଶୂଳିନ୍ୟଃ ସମ୍ଭବନ୍ତି କଲୌ-ଇହ ।୩୬।**

ଉତ୍ତର : ଗ୍ରାମମାନଙ୍କରେ କ୍ଷୁଧାର୍ତ୍ତକୁ ଅନ୍ନ ଗଣ୍ଡିଏ ଦେବାକୁ କାହାକୁ ଭଲ ଲାଗେନାହିଁ (ଶୂଳା) । ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟମାନେ ଶିବପୂଜା କରିବାକୁ ଓ ନାରୀମାନେ କେବଳ କାନ୍ଧକୁ ଛୁଉଁଥିବା ବବ୍ କଟ୍ ମୁକୁଳା କେଶ ରଖନ୍ତି । ଲମ୍ବା କେଶ ରଖି କେଶ ଝୁଡ଼ା ବାନ୍ଧିବାକୁ ପସନ୍ଦ କରନ୍ତି ନାହିଁ (ଶୂଳା) ।

ପ୍ରଶ୍ନ-୧୫ : କଳିଯୁଗ ଲୋକମାନଙ୍କଠାରେ ଏଭଳି ମହାନ୍ ଦୋଷ ସବୁ ଦେଖି ନାରଦଜୀ ଶାନ୍ତି-ସୁଖ-ହରିଭଜନ ଖୋଜି ଖୋଜି କେଉଁଠି ପହଞ୍ଚିଥିଲେ ?

**ଏବଂ ପଶ୍ୟନ୍ କଳେଃ ଦୋଷାନ୍ ପର୍ଯ୍ୟଟନ୍ ଅବନୀଂ-ଅହମ୍ ।**
**ଯାମୁନଂ ତଟଂ ଆପନ୍ନୋ ଯତ୍ର ଲୀଳା ହରେଃ ଅଭୂତ୍ ।୩୭।**

ଉତ୍ତର : ବୃନ୍ଦାବନର ଯମୁନା କୂଳରେ । ଯେଉଁଠି ଭଗବାନ ଶ୍ରୀକୃଷ୍ଣ ଦ୍ୱାପର ଯୁଗରେ ବାଲ୍ୟ ଓ କୈଶୋର ଲୀଳା କରିଥିଲେ ।

ପ୍ରଶ୍ନ-୧୬ : ଯମୁନା ତଟରେ ଭକ୍ତି ମହାରାଣୀଙ୍କୁ ଯୁବତୀ ରୂପରେ ଓ ଅନ୍ୟ କେଉଁ ଦୁଇଜଣଙ୍କୁ ବୃଦ୍ଧ ଅବସ୍ଥାରେ ଦେଖି ବିସ୍ମିତ ହେଲେ ?

**ବୃଦ୍ଧୌ ଦ୍ୱୌ ପତିତୌ ପାର୍ଶ୍ୱେ ନିଃଶ୍ୱସନ୍ତୌ ଅଚେତନୌ ।**
**ଶୁଶ୍ରୂଷନ୍ତୀ ପ୍ରବୋଧନ୍ତୀ ରୁଦତୀ ଚ ତୟୋଃ ପୁରଃ ।୩୯।**

ଉତ୍ତର : ଭକ୍ତିଙ୍କର ଦୁଇ ପୁତ୍ର, ଜ୍ଞାନ ଓ ବୈରାଗ୍ୟ ଜରାଗ୍ରସ୍ତ ଓ ନିଦ୍ରାଗ୍ରସ୍ତ ହୁଅନ୍ତେ ଭକ୍ତି ଓ ତାଙ୍କ ସଖୀ (ନଦୀ, ତୀର୍ଥ, ବେଦ ମନ୍ତ୍ର ଆଦି) ମାନେ ସେ ଦୁହିଁଙ୍କର ସେବା, ଶୁଶ୍ରୂଷା ଓ ଯତ୍ନ କରୁ କରୁ କାନ୍ଦି ପକାଉଥିଲେ ସମସ୍ତେ ।

ପ୍ରଶ୍ନ-୧୭ : ନାରଦଜୀଙ୍କୁ ଭକ୍ତି ଦେବୀ ନିଜର ଓ ସେମାନଙ୍କର କି ପରିଚୟ ଦେଲେ?

**ବାଳା ଉବାଚ**

**ଅହଂ ଭକ୍ତି ଇତି ଖ୍ୟାତା ଇମୌ ମେ ତନୟୌ ମତୌ ।**
**ଜ୍ଞାନ ବୈରାଗ୍ୟ ନାମାନୌ କାଳ ଯୋଗେନ ଜର୍ଜରୌ ।୪୫।**

ଉତ୍ତର : ମୁଁ ନିତ୍ୟ ବୃନ୍ଦାବନ ବିହାରିଣୀ ନିଜେ ଭକ୍ତି ଦେବୀ । ଏ ଦୁହେଁ ଅସମୟରେ ବୃଦ୍ଧ ହୋଇଥିବା ମୋର ଦୁଇ ପୁତ୍ର ଜ୍ଞାନ ଓ ବୈରାଗ୍ୟ । ଅନ୍ୟ

ଦେବୀମାନେ (ନଦୀ,ତୀର୍ଥ, ଶାସ୍ତ୍ର,ପୁରାଣ,ବେଦ ମନ୍ତ୍ର ଓ ପାଞ୍ଚ ମୁକ୍ତି) ମୋର ସେବିକା ପରିଚାରିକା । ଭଗବାନଙ୍କ ଲୀଳା ପ୍ରକଟ ଲାଗି ତାଙ୍କ ଇଚ୍ଛାରେ ଆମେ ସମସ୍ତେ ଦେହ ଧାରଣ କରିଛୁ । ଭଗବାନଙ୍କର ଉଦ୍ଦେଶ୍ୟ-ଭକ୍ତ-ଭକ୍ତି-ଭଗବାନ ସମସ୍ତଙ୍କୁ ଆନନ୍ଦ ଦେବା ।

ପ୍ରଶ୍ନ-୧୮ : ଭକ୍ତିଦେବୀ ତାଙ୍କ ଦେହ ଧାରଣ ଓ ଜୀବନଯାତ୍ରା ସମ୍ବନ୍ଧରେ ନାରଦଜୀଙ୍କୁ କ'ଣ ସବୁ କହିଲେ ?

**ଉତ୍ପନ୍ନା ଦ୍ରବିଡ଼େ ସା-ଅହଂ ବୃଦ୍ଧିଂ କର୍ଣ୍ଣାଟକେ ଗତା ।**
**କ୍ୱଚିତ୍ କ୍ୱଚିତ୍ ମହାରାଷ୍ଟ୍ରେ ଗୁର୍ଜ୍ଜରେ ଜୀର୍ଣ୍ଣତାଂ ଗତା ।୪୮।**

ଉତ୍ତର : ଦକ୍ଷିଣ ଭାରତର ଦ୍ରବିଡ଼ ଦେଶରେ ଭକ୍ତି ଦେବୀଙ୍କର ଜନ୍ମ । ସେ କର୍ଣ୍ଣାଟକରେ ଲାଳିତା ପାଳିତା ହେଲେ । ମହାରାଷ୍ଟ୍ରରେ କେହି କେହି ଭକ୍ତିଙ୍କୁ ଆଦର ଯତ୍ନ କଲେ । ଗୁଜୁରାଟରେ ପହଞ୍ଚନ୍ତେ ତାଙ୍କୁ ଧନ ସମ୍ପତ୍ତି ଲୋଭୀ ଲୋକମାନେ ଅତ୍ୟନ୍ତ ନିରାଦର କରିବାରୁ ସେ ନିଜେ ବୃଦ୍ଧାବସ୍ଥା ପ୍ରାପ୍ତ ହେଲେ ।

ପ୍ରଶ୍ନ-୧୯ : ଗୁଜୁରାଟରେ ବୃଦ୍ଧା ଅବସ୍ଥା ପ୍ରାପ୍ତି ହୋଇ ଭକ୍ତି ଦେବୀ ଫେରିଆସି ବୃନ୍ଦାବନରେ ପହଞ୍ଚନ୍ତେ ତାଙ୍କର ଅବସ୍ଥା କ'ଣ ହେଲା ?

**ବୃନ୍ଦାବନଂ ପୁନଃ ପ୍ରାପ୍ୟ ନବୀନା-ଇବ ସ୍ୱରୂପିଣୀ ।**
**ଯାତ-ଅହଂ ଯୁବତୀ ସମ୍ୟକ୍ ପ୍ରେଷ୍ଠ ରୂପା ତୁ ସାଂପ୍ରତମ୍ ।୫୦।**

ଉତ୍ତର : ବୃନ୍ଦାବନରେ ସେ ନବ ଯୌବନ ଲାଭ କଲେ । ନାରଦଜୀ ଏବେ (ସାମ୍ପ୍ରତଂ) ଯାହା ନିଜେ ଦେଖୁଛନ୍ତି । ପୁତ୍ର ଦ୍ୱୟ ଜ୍ଞାନ ଓ ବୈରାଗ୍ୟ ଉଭୟେ ବୃଦ୍ଧ ଓ ଚେତନା ଶୂନ୍ୟ । ସେବିକାମାନେ ଯଥାପୂର୍ବଂ ।

**ନାରଦ ଉବାଚ**

ପ୍ରଶ୍ନ-୨୦ : ଭକ୍ତିଦେବୀ ଓ ତାଙ୍କ ଦୁଇ ପୁତ୍ରଙ୍କ ଏ ନାଟକୀୟ ଦୈହିକ ପରିବର୍ତ୍ତନ ଦେଖି ନାରଦଜୀ ଏ ବିଷୟରେ ସେମାନଙ୍କୁ କ'ଣ କହିଲେ ?

**ଶୃଣୁଷ୍ୱ-ଅବହିତା ବାଳେ ଯୁଗୋଽୟଂ ଦାରୁଣଃ କଳିଃ ।**
**ତେନ ଲୁପ୍ତଃ ସଦାଚାରୋ ଯୋଗ ମାର୍ଗଃ ତପାଂସି ଚ ।୫୭।**

ଉତ୍ତର : ଘୋର କଳିଯୁଗରେ ଭାରତଭୂମିରେ ପ୍ରାୟତଃ ସଦାଚାର, ଅଷ୍ଟାଙ୍ଗ ଯୋଗ, ତପସ୍ୟା ଆଦି ଅସାଧ୍ୟ, ସୁତରାଂ ଲୁପ୍ତ ପ୍ରାୟ । ଲୋକେ ଜ୍ଞାନ, ବୈରାଗ୍ୟ ଓ ଭକ୍ତି ପ୍ରତି ଅନାଗ୍ରହୀ। ବିଶେଷତଃ ଗୁଜୁରାଟରେ ଲୋକେ ଅତ୍ୟନ୍ତ

ଧନ ଆଗ୍ରହୀ ହେବାରୁ ଭକ୍ତି ଜରା ଗ୍ରସ୍ତା ହୁଅନ୍ତି । ମାତ୍ର ବୃନ୍ଦାବନରେ ଲୋକେ ଭକ୍ତି ପ୍ରଧାନ ବୋଲି ସେ ସେଠାରେ ଯୁବତୀ ।

ପ୍ରଶ୍ନ-୨୧ : ଜ୍ଞାନ ବୈରାଗ୍ୟ ଦୁହେଁ ଭକ୍ତି ଦେବୀଙ୍କର ଆଶ୍ରିତ ପୁତ୍ର ହେଲେ ବି ବୃନ୍ଦାବନରେ ସେମାନଙ୍କ ଦୂରବସ୍ଥାର କାରଣ କ'ଣ ?

**ଅତ୍ର ଇମୌ ଗ୍ରାହକ-ଅଭାବାତ୍ ନ ଜରାଂ ଅପି ମୁଞ୍ଚତଃ ।**
**କିଂଚିତ୍ ଆତ୍ମସୁଖେନ-ଇହ ପ୍ରସୁପ୍ତିଃ ମନ୍ୟତେଽନୟୋଃ।୬୨।**

ଉତ୍ତର : ଭକ୍ତମାନଙ୍କୁ ଜ୍ଞାନ ବୈରାଗ୍ୟ ପାଇଁ କିଛି ସ୍ୱତନ୍ତ୍ର ପ୍ରୟାସ କରିବାକୁ ପଡ଼େନା । ତେଣୁ ବୃନ୍ଦାବନ ଧାମରେ ଜ୍ଞାନ ବୈରାଗ୍ୟର ଆଗ୍ରହୀ ସାଧକ ନ ଥାନ୍ତି । ତଥାପି ସେମାନେ ଭକ୍ତିଦେବୀଙ୍କ କୋଳରେ ଯଥା ତଥା ମାଟି କାମୁଡ଼ି ପଡ଼ିରହିଥାଆନ୍ତି । ଏହାଦେଖି ଭକ୍ତିଦେବୀ ତାଙ୍କର ସଦା ଆଶ୍ରିତ ପୁତ୍ର ଦ୍ୱୟଙ୍କ ଦୂରବସ୍ଥାରେ ସ୍ୱୟଂ ଅପ୍ରସନ୍ନା ବା ଖିନ୍ନମନା । ପୁଣି ସମଦୁଃଖିନୀ ହୁଅନ୍ତି ପାଞ୍ଚପ୍ରକାର ମୁକ୍ତି, ସକଳ ତୀର୍ଥଗଣ, ନଦୀଗଣ, ପୁରାଣ ଶାସ୍ତ୍ରଗଣ ଓ ବେଦ ମନ୍ତ୍ରାଦି ସହଚରୀ ସେବିକା ମାନେ । ସମସ୍ତେ ଭକ୍ତିଦେବୀଙ୍କ ସେଇ ସୁଯୋଗ ଖୋଜୁଥାଆନ୍ତି ।

**ଭକ୍ତିଃ ଉବାଚ**

ପ୍ରଶ୍ନ-୨୨ : ଭକ୍ତିଦେବୀ ତାଙ୍କ ଦୁର୍ଦ୍ଦଶା ପାଇଁ ପରୀକ୍ଷିତ ରାଜାଙ୍କ ମୁଣ୍ଡରେ କି ଦୋଷ ବୋଳିଲେ ?

**କଥଂ ପରୀକ୍ଷିତା ରାଜ୍ଞା ସ୍ଥାପିତୋ ହି-ଅଶୁଚିଃ କଳିଃ ।**
**ପ୍ରବୃତ୍ତେ ତୁ କଲୌ ସର୍ବେ ସାରଃ କୁତ୍ର ଗତୋ ମହାନ୍ ।୬୩।**

ଉତ୍ତର : କଳିକାଳକୁ ରାଜା ମାରିଦେବା ଉଚିତ୍ ଥିଲା । କଳିଯୁଗ ସାଧକମାନଙ୍କୁ ଜପ, ତପ, ସ୍ୱାଧ୍ୟାୟ, ସଦାଚାର, ତୀର୍ଥ, ବ୍ରତ, ଉପବାସ, ପ୍ରବଚନ, ପାରାୟଣରେ ବିଘ୍ନ କରାଇ ତାର ସାରରୁ ରାଜା ଓ ପ୍ରଜାମାନଙ୍କୁ ବଞ୍ଚିତ କଲା ।

**ନାରଦ ଉବାଚ**

ପ୍ରଶ୍ନ-୨୩ : ନୀରସ କଳିଯୁଗରେ ଏତେ ଦୋଷ ଥିଲେ ମଧ୍ୟ କିଛି ବିଶେଷ ଗୁଣ (ସାର) ଥିଲା କି ?

**ଏକ-ଆକାରଂ କଳିଂ ଦୃଷ୍ଟ୍ୱା ସାରବତ୍ ସାର ନୀରସମ୍ ।**
**ବିଷ୍ଣୁରାତଃ ସ୍ଥାପିତବାନ୍ କଳିଜାନାଂ ସୁଖାୟ ଚ ।୬୪।**

ଉତ୍ତର : ବିଷ୍ଣୁରାତ ପରୀକ୍ଷିତ ଦେଖିଲେ ଯେତେବେଳେ କେବଳ ତୁଣ୍ଡରେ ହରି ନାମ ବା ରାଧେ ରାଧେ କହି ଭୁକ୍ତି, ମୁକ୍ତି, ପ୍ରେମ ସବୁ ମିଳିବ ଲୋକଙ୍କୁ ସହଜରେ (ସୁଖ ସାଧ୍ୟ), ତେବେ ରାଜା ଏ ସୁଯୋଗ ଆମ କଲ୍ୟାଣ ଦୃଷ୍ଟିରୁ କାହିଁକି ବା ହାତଛଡ଼ା କରନ୍ତେ ?

ପ୍ରଶ୍ନ-୨୪ : କଳିଯୁଗର ଏ ଦୌରାତ୍ମ୍ୟ ଓ ଭକ୍ତିଙ୍କର ଦୁର୍ଦ୍ଦଶା ଦେଖି ମଧ୍ୟ ଭଗବାନ (ପୁଣ୍ଡରୀକାକ୍ଷ) ନୀରବ ରହୁଛନ୍ତି କିପରି ?

**ଅୟଂ ତୁ ଯୁଗ ଧର୍ମୋ ହି ବର୍ତ୍ତତେ କସ୍ୟ ଦୂଷଣମ୍ ।**
**ଅତଃ ତୁ ପୁଣ୍ଡରୀକାକ୍ଷଃ ସହତେ ନିକଟେ ସ୍ଥିତଃ ।୭୬।**

ଉତ୍ତର : କଳିଯୁଗ ପରା ଦୁଃସାଧ୍ୟ ସାଧନାକାରୀଙ୍କୁ ବିଘ୍ନ ଉପୁଯାଇ ନିରୁତ୍ସାହିତ କରୁଛି। ତା ସାଥେ ସାଥେ କେବଳ ତୁଣ୍ଡରେ ହରିନାମ ଶ୍ରବଣ-କୀର୍ତ୍ତନକାରୀଙ୍କୁ ଉତ୍ସାହିତ କରୁଛି । ଏଥିରେ ଭଗବାନ କାହିଁକି ତୁଛାଟାରେ ପାଟି ଫିଟାନ୍ତେ ? ନାକ ପୂରାନ୍ତେ ? କଳିଯୁଗ ତା ନିଜ କାମ କରିବ ନିଶ୍ଚୟ ।

## ଅଥ ୨ୟ ଅଧ୍ୟାୟଃ

### (ଭକ୍ତିଙ୍କର ଦୁଃଖ ଦୂର କରିବା ପାଇଁ ନାରଦଜୀଙ୍କ ଉଦ୍ୟୋଗ)

### ନାରଦ ଉବାଚ

ପ୍ରଶ୍ନ-୨୫ : ଭକ୍ତିଦେବୀଙ୍କ ଦୁଃଖ ଦୂର କରିବାକୁ ନାରଦଜୀ କି ଉପଦେଶ ଦେଲେ ?

**ବୃଥା ଖେଦୟସେ ବାଳେ ଅହୋ ଚିନ୍ତାତୁରା କଥମ୍ ।**
**ଶ୍ରୀକୃଷ୍ଣ ଚରଣାମ୍ଭୋଜଂ ସ୍ମର ଦୁଃଖଂ ଗମିଷ୍ୟତି ।୧।**

ଉତ୍ତର : ସିଧାସଳଖ ଶ୍ରୀକୃଷ୍ଣ ଚରଣ କମଳକୁ ମନ ମଧ୍ୟରେ ଧ୍ୟାନ କର ବୋଲି ସରଳ ଉପାୟଟିଏ ବତାଇଦେଲେ । ତେବେ ସିନା ସକଳ ଜୀବ (ଜ୍ଞାନୀ, ବୈରାଗୀଙ୍କ ସହିତ)ଙ୍କୁ ଦୁଃଖ କଷ୍ଟ ଇତ୍ୟାଦି ଛାଡ଼ି ପଳାଇବେ ।

ପ୍ରଶ୍ନ-୨୬ : ସତ୍ୟ, ତ୍ରେତା, ଦ୍ୱାପର ଯୁଗରେ ପ୍ରଚଳିତ ଜ୍ଞାନ (ବୋଧ) ବୈରାଗ୍ୟ ଭଳି ସାଧନ ଯଦି କଳି ଯୁଗରେ ଦୁଃସାଧ୍ୟ ତେବେ-କଳିଯୁଗରେ ଏହାଠାରୁ

ସୁଖସାଧ ସାଧନ କ'ଣ ?

**ସତ୍ୟାଦି ତ୍ରିଯୁଗେ ବୋଧ ବୈରାଗ୍ୟୌ ମୁକ୍ତି ସାଧକୌ ।**
**କଳୌ ତୁ କେବଳା ଭକ୍ତିଃ ବ୍ରହ୍ମ ସାଯୁଜ୍ୟ କାରିଣୀ ।୪।**

ଉତ୍ତର : କେବଳ ଶ୍ରୀକୃଷ୍ଣଙ୍କ ଠାରେ ଅନାସଙ୍ଗ (କର୍ମ-ଜ୍ଞାନ-ଯୋଗରୁ ପ୍ରାପ୍ତ ଯଥାକ୍ରମେ ସ୍ୱର୍ଗ,ମୁକ୍ତି ଓ ସିଦ୍ଧି ଫଳରେ ଭୋଗସୁଖ ଇଚ୍ଛା ତ୍ୟାଗ) ବା ନିଷ୍କାମ ଭକ୍ତିରେ (ହରି ଭଜନରେ)। ସାଯୁଜ୍ୟ ଆଦି ପାଞ୍ଚ ପ୍ରକାର ମୁକ୍ତି ନ ମାଗିଲେ ମଧ୍ୟ ମିଳିପାରନ୍ତି ।

ପ୍ରଶ୍ନ-୨୭ :କଳିଯୁଗର ପ୍ରଶଂସା କରି ପ୍ରତିଟି ଘରେ, ପ୍ରତିଟି ଭକ୍ତ ହୃଦୟରେ କାହାକୁ ସ୍ଥାପନ କରିବା ଲାଗି ନାରଦଜୀ ଭକ୍ତି ଦେବୀଙ୍କୁ (ବରାନନେ) କହିଲେ ?

**କଳିନା ସଦୃଶଃ କୋଽପି ଯୁଗୋ ନାସ୍ତି ବରାନନେ ।**
**ତସ୍ମିନ୍ ତ୍ୱାଂ ସ୍ଥାପୟିଷ୍ୟାମି ଗେହେ ଗେହେ ଜନେ ଜନେ ।୧୩।**

ଉତ୍ତର : ତ୍ୱାଂ ବା ଭକ୍ତିଦେବୀଙ୍କୁ ଜୀବ ହୃଦୟରେ ସ୍ଥାପନ କଲେ କେବଳ କଳିଯୁଗରେ ଏ କଥା ସମ୍ଭବ ହେବ । କଳି ପ୍ରଭାବରେ ଅଶେଷ ଦୁଖକଷ୍ଟରେ ତ୍ରାହି ତ୍ରାହି ଡ଼ାକି ସେମାନେ ହରି ଶରଣାଗତ ହେବାକୁ ବାଧ ହେବେ । ଅନ୍ୟ ତିନି ଯୁଗରେ ଧର୍ମ-ଅର୍ଥ-କାମ ଅଭିଳାଷୀ ହୋଇଥାନ୍ତି ସେମାନେ ।

ପ୍ରଶ୍ନ-୨୮ : କଳିଯୁଗରେ ତପସ୍ୟା ଆଚରଣ, ବେଦ ଅଧ୍ୟୟନ,ଜ୍ଞାନ ଅର୍ଜ୍ଜନ, ସ୍ୱଧର୍ମ ପାଳନ ଦ୍ୱାରା ଶ୍ରୀହରିଙ୍କୁ ବଶ କରିହେବ ବା କାମ ବାସନାରୁ ମୋକ୍ଷ (ମୋହର କ୍ଷୟ) ବା ମୁକ୍ତି ଅସମ୍ଭବ କହି ଭକ୍ତି ଦ୍ୱାରା ଏହା ସମ୍ଭବ ବୋଲି କେଉଁ ପ୍ରମାଣ ମିଳେ ଶାସ୍ତ୍ରରୁ ?

**ନ ତପୋଭିଃ ନ ବେଦୈଃ ଚ ନ ଜ୍ଞାନେନ-ଅପି କର୍ମଣା ।**
**ହରିଃହି ସାଧ୍ୟତେ ଭକ୍ତ୍ୟା ପ୍ରମାଣଂ ତତ୍ର ଗୋପିକାଃ ।୧୮।**

ଉତ୍ତର : ପ୍ରମାଣ ମିଳିଛି ଜଣେ ଦୁଇଜଣ ନୁହନ୍ତି ଅସଂଖ୍ୟ ଗୋପୀଙ୍କର ପୂର୍ଣ୍ଣ ପରମାନନ୍ଦ ପ୍ରାପ୍ତି ରାସ ଓ ମହାରାସ ବେଳେ । ଏ ଆନନ୍ଦ ପରା ଦଣ୍ଡକାରଣ୍ୟବାସୀ, ମୁନି, ଋଷି, ସିଦ୍ଧ, ସାଧକ କ'ଣ ବ୍ରହ୍ମାଶଙ୍କରଙ୍କର ମଧ୍ୟ ଚିର ଅଭିଳାଷିତ । ପୁଣି ସେମାନଙ୍କ ପଦ ପଦବୀ ବିନିମୟରେ ବୃନ୍ଦାବନରେ ସେମାନେ ସାନସାନ ଲତା, ପତ୍ର, ଧୂଳିକଣା ହୋଇ କୃଷ୍ଣଭକ୍ତ ପାଦଧୂଳି ପ୍ରାପ୍ତି ପାଇଁ ତିଆର !!!

ପ୍ରଶ୍ନ-୨୯ : ମନୁଷ୍ୟ ଶରୀରରେ ଅନେକ ଅନେକ ଜନ୍ମ ଜନ୍ମାନ୍ତରରେ ସଂଚିତ ପୁଣ୍ୟମାନଙ୍କ ଫଳ ଉଦୟରେ ଶ୍ରୀକୃଷ୍ଣଙ୍କଠାରେ ଭକ୍ତି କରିବାକୁ ଇଚ୍ଛା ହେଲେ ଭଗବାନ କୃଷ୍ଣ କ'ଣ କରିବେ ସେତେବେଳେ ?

**ନୃଣାଂ ଜନ୍ମ ସହସ୍ରେଣ ଭକ୍ତୌ ପ୍ରୀତିଃ ହି ଜାୟତେ ।**
**କଳୌ ଭକ୍ତିଃ କଳୌ ଭକ୍ତିଃ ଭକ୍ତ୍ୟା କୃଷ୍ଣଃ ପୁରଃ ସ୍ଥିତଃ ।୧୯।**

ଉତ୍ତର : ଠାକୁରଜୀ ନିଶ୍ଚୟ ସେମାନଙ୍କ ସାମନାରେ ଠିଆ ହେବେ । ତାହା ପୁଣି ଠିକଣା ସମୟରେ । କେବଳ କଳିଯୁଗରେ ଏହା ସମ୍ଭବ ହୋଇପାରେ ।

**ସୂତ ଉବାଚ**

ପ୍ରଶ୍ନ-୩୦ : ଦେବର୍ଷି ନାରଦ ଜ୍ଞାନ ବୈରାଗ୍ୟଙ୍କୁ ନିଦ୍ରାରୁ ଉଠାଇବାକୁ ତାଙ୍କ କାନମୂଳେ କ'ଣ କହିଲେ ?

**ମୁଖଂ ସଂଯୋଜ୍ୟ କର୍ଣ୍ଣାନ୍ତେ ଶବ୍ଦଂ ଉଚ୍ଚୈଃ ସମୁଚ୍ଚରନ୍ ।**
**ଜ୍ଞାନ ପ୍ରବୁଧ୍ୟତାଂ ଶୀଘ୍ରଂ ରେ ବୈରାଗ୍ୟ ପ୍ରବୁଧ୍ୟତାମ୍ ।୨୬।**

ଉତ୍ତର : ହେ ଜ୍ଞାନ, ବୈରାଗ୍ୟ, ଉଠ । ଚଞ୍ଚଳ ଉଠ । ଜାଗ୍ରତ ହୁଅ ।

ପ୍ରଶ୍ନ-୩୧ : ଦେବର୍ଷି ନାରଦ ସେମାନଙ୍କୁ ବାରମ୍ବାର କି କି ଶାସ୍ତ୍ର ଶୁଣାଇଲେ ? ସେମାନେ ବାଧ ହୋଇ ଆଖି ମଳି ମଳି ଉଠିଲେ ଅବଶ୍ୟ କିନ୍ତୁ ପୁଣି କ'ଣ କଲେ ସେ ଦୁହେଁ?

**ବେଦ ବେଦାନ୍ତ ଘୋଷୈଃ ଚ ଗୀତା ପାଠୈଃ ମୁହୁଃ ମୁହୁଃ ।**
**ବୋଧ ମାନୌ ତଦା ତେନ କଥଞ୍ଚିତ୍ ଉତ୍‌ଥିତୌ ବଳାତ୍ ।୨୭।**

ଉତ୍ତର : ବେଦ ମନ୍ତ୍ର, ବେଦାନ୍ତ ସୂତ୍ର ଓ ଗୀତା ଶ୍ଳୋକ ଉଚ୍ଚ ସ୍ୱରରେ (ଘୋଷୈଃ) ଗାନ କରି ଶୁଣାଇଲେ । କିନ୍ତୁ ସେମାନେ ସେଥିରେ ଜାଗ୍ରତ ରହି ନ ପାରି ପୁଣି ଶୋଇପଡ଼ିଲେ । ବୃନ୍ଦାବନରେ ଜ୍ଞାନ ବୈରାଗ୍ୟଙ୍କୁ କାହିଁକି କିଏ ପଚାରନ୍ତା ! ବୃନ୍ଦାବନ ପରା ପ୍ରେମଭୂମି । ଅଯୋଧ୍ୟା ଚିତ୍ରକୂଟ ବୈରାଗ୍ୟ ଭୂମି ।

ପ୍ରଶ୍ନ-୩୨ : ଏ ସବୁ ଶ୍ରବଣ ସତ୍ତ୍ୱେ ଜ୍ଞାନ ବୈରାଗ୍ୟଙ୍କ ବୃଦ୍ଧ ଅବସ୍ଥା ଦୂର ନହେବାରୁ ଏବଂ ଭୋକଶୋଷରେ ସେମାନେ ଦୁର୍ବଳ ହୋଇଯିବାରୁ ଦେବର୍ଷି ନାରଦ ଗୋବିନ୍ଦଙ୍କୁ ସ୍ମରଣ କରିବାରୁ କ'ଣ ହେଲା ?

**ବ୍ୟୋମବାଣୀ ତଦା-ଏବ-ଅଭୂତ୍ ମା ଋଷେ ଖିଦ୍ୟତାଂ ଇତି ।**
**ଉଦ୍ୟମଃ ସଫଳଃ ତେଽୟଂ ଭବିଷ୍ୟତି ନ ସଂଶୟଃ ।୩୧।**

ଉତ୍ତର : ଅକାଶବାଣୀ ହେଲା ଯେ-ହେ ନାରଦ, ମନ ଦୁଃଖ କରନା । ତୁମ ଉଦ୍ଦେଶ୍ୟ ନିଶ୍ଚୟ ସଫଳ ହେବ ।

ପ୍ରଶ୍ନ-୩୩ : ବ୍ରହ୍ମାଜୀଙ୍କ ପ୍ରଥମ ଚାରି ପୁତ୍ର ଚତୁଃସନ (ସାଧୁଭୂଷଣାଃ) କି ଉପାୟ ବତାଇବେ ବୋଲି ଶୂନ୍ୟବାଣୀ କହିଲେ ?

**ଏତଦ୍ ଅର୍ଥଂ ତୁ ସତ୍‌କର୍ମ ସୁରର୍ଷେ ତ୍ୱଂ ସମାଚର ।**
**ତତ୍ ତେ କର୍ମ-ଅଭିଧାସ୍ୟନ୍ତି ସାଧବଃ ସାଧୁଭୂଷଣାଃ ।୩୨।**

ଉତ୍ତର : ସତ୍ କର୍ମ କରିବାକୁ ନାରଦଜୀ (ସୁରର୍ଷେ) ଙ୍କୁ କହିଲେ ।

ପ୍ରଶ୍ନ-୩୪ : ସେ ସତ୍ କର୍ମ କ'ଣ ଜାଣିବାକୁ ନାରଦଜୀ ଉପାୟ ଖୋଜିଲେ । ସେଥିପାଇଁ ବଦରୀବନକୁ ଆସି ସେ କ'ଣ କଲେ ?

**ତତଃ ଚିନ୍ତାତୁରଃ ସୋଽଥ ବଦରୀବନଂ ଆଗତଃ ।**
**ତପଃ ଚରାମି ଚ-ଅତ୍ର-ଇତି ତଦର୍ଥଂ କୃତ ନିଶ୍ଚୟଃ ।୪୩।**

ଉତ୍ତର : ନାରଦଜୀ ଭାବିଲେ-ଏହା ମୋର ଇଷ୍ଟ ନର-ନାରାୟଣଙ୍କ ପବିତ୍ର ତପୋଭୂମି । ଏଇଠି ବସି ତପସ୍ୟା ଅବଶ୍ୟ କରିବି । ଆଉ ଅନ୍ୟଥା ଚିନ୍ତାର କି ପ୍ରୟୋଜନ ? ନାରଦଜୀ ହରି ଗୁରୁଙ୍କ ଧ୍ୟାନରେ ଲାଗିଗଲେ ।

**ନାରଦ ଉବାଚ**

ପ୍ରଶ୍ନ-୩୫ : ସୌଭାଗ୍ୟବଶତଃ ସେଠାରେ ନିଜ ଗୁରୁ ଚତୁଃସନଙ୍କୁ ଭେଟି ନାରଦଜୀ ସେମାନଙ୍କୁ କି ପ୍ରଶ୍ନ କଲେ ?

**ଭକ୍ତି ଜ୍ଞାନ ବିରାଗାଣାଂ ସୁଖଂ ଉତ୍ପାଦ୍ୟତେ କଥମ୍ ।**
**ସ୍ଥାପନଂ ସର୍ବ ବର୍ଣ୍ଣେଷୁ ପ୍ରେମ ପୂର୍ବଂ ପ୍ରଯତ୍ନତଃ ।୫୨।**

ଉତ୍ତର : କି ସତ୍‌କର୍ମ କଲେ ଭକ୍ତି, ଜ୍ଞାନ, ବୈରାଗ୍ୟ ତିନି ଜଣଙ୍କର ସମନ୍ୱୟ ସାଧିତ ହେବ ? ତାହା ପୁଣି ଚାରି ବର୍ଣ୍ଣ ଚାରି ଆଶ୍ରମବାସୀଙ୍କ ହୃଦୟରେ । ସମସ୍ତେ ଖୁସୀ ହେବେ ହରି ପ୍ରେମରେ ।

କୁମାରା ଉଚୁଃ

ପ୍ରଶ୍ନ-୩୬ : ସନକାଦି ମୁନିମାନେ କି ଆଶ୍ୱାସନା ଦେଲେ ନାରଦମୁନିଙ୍କୁ ?

**ମା ଚିନ୍ତାଂ କୁରୁ ଦେବର୍ଷେ ହର୍ଷଂ ଚିତ୍ତେ ସମାବହ ।**
**ଉପାୟଃ ସୁଖସାଧ୍ୟୋଽତ୍ର ବର୍ତ୍ତତେ ପୂର୍ବ ଏବ ହି ।୫୩।**

ଉତ୍ତର : କହିଲେ, 'ହେ ନାରଦଜୀ । ଚିନ୍ତାର କୌଣସି କାରଣ ନାହିଁ । ଆପଣ ପ୍ରସନ୍ନ ମନରେ ରୁହନ୍ତୁ । ଏହି ସତ୍ କର୍ମ କଥା ରହସ୍ୟ ବହୁ ପୂର୍ବରୁ ପ୍ରକଟ ହୋଇସାରିଛି । ଆପଣ ବୋଧହୁଏ ଭୁଲି ଯାଇଛନ୍ତି । ବ୍ୟାସଜୀଙ୍କ ମନରେ ବିଷାଦ ଆସିଥିଲା ବେଳେ ଆପଣ ଯେଉଁ ଭାଗବତ କଥାଲିଖନ, ଶ୍ରବଣ, କୀର୍ତ୍ତନ କଥା କହିଥିଲେ । ସେଇ ଭାଗବତ ସପ୍ତାହ ପାରାୟଣ ପ୍ରବଚନ ତ ସତ୍ କର୍ମ' ।

ପ୍ରଶ୍ନ-୩୭ : ବେଦ ବେଦାନ୍ତ ଆଦି ଶାସ୍ତ୍ରମାନଙ୍କରେ ମୁନି ଋଷିମାନେ ଆଉ କେଉଁ କେଉଁ କଲ୍ୟାଣକର ମାର୍ଗ ମାନ ଦର୍ଶାଇଛନ୍ତି ?

**ଋଷିଭିଃ ବହବୋ ଲୋକେ ପନ୍ଥାନଃ ପ୍ରକଟୀକୃତାଃ ।**
**ଶ୍ରମସାଧ୍ୟାଃଚ ତେ ସର୍ବେ ପ୍ରାୟଃ ସ୍ୱର୍ଗ ଫଳପ୍ରଦାଃ ।୫୬।**

ଉତ୍ତର : କର୍ମମାର୍ଗରେ ପୁଣ୍ୟ କର୍ମ ବା ଯଜ୍ଞ କରି ସ୍ୱର୍ଗକୁ ଯିବା, ଜ୍ଞାନ ମାର୍ଗରେ ଆତ୍ମଜ୍ଞାନ ଲାଭ କରି ସଂସାରୀ ଦୁଃଖରୁ ମୁକ୍ତ ହେବା ବା ଧ୍ୟାନ ମାର୍ଗରେ ଅଷ୍ଟାଙ୍ଗ ଯୋଗଦ୍ୱାରା ସମାଧି ସିଦ୍ଧ କରି ଅଣିମାଦି ସିଦ୍ଧି ପାଇ ଖୁସୀ ମଉଜ କରିବା । ଏ ତିନିମାର୍ଗ ଯାକ କେବଳ ମୁଣ୍ଡବ୍ୟଥା । ଏସବୁ ସଂସାରରେ କଲ୍ୟାଣକାରୀ ମାର୍ଗ ନିଶ୍ଚୟ ହେଲେ ମଧ୍ୟ କେହି ପରମ କଲ୍ୟାଣକାରୀ ମାର୍ଗ ନୁହନ୍ତି ।

ପ୍ରଶ୍ନ-୩୮ : ପରମ କଲ୍ୟାଣକାରୀ ମାର୍ଗ ହେଉଛି ଭଗବତ୍ ପ୍ରଦର୍ଶିତ ଭକ୍ତିମାର୍ଗ । ସେଥିରେ ବିଷ୍ଣୁ, ବୈଷ୍ଣବଙ୍କର ସେବା କରି ବୈକୁଣ୍ଠ-ଗୋଲୋକରେ ଯାଇ ପରମ ପ୍ରେମ ପ୍ରାପ୍ତ ହୋଇ ମନୁଷ୍ୟ ଜୀବନକୁ ଧନ୍ୟ କରି ହୁଏ । ସେ ମାର୍ଗ ସତ୍ୟ-ତ୍ରେତା-ଦ୍ୱାପର ଯୁଗରେ ମଧ୍ୟ ଗୁପ୍ତ (ଗୋପ୍ୟୋ) ରହିଥାଏ । ଦ୍ୱାପର ଯୁଗ ଶେଷରେ ଭକ୍ତିମାର୍ଗର ସଦ୍‌ଗୁରୁ ସ୍ୱୟଂ ଶ୍ରୀକୃଷ୍ଣ ଓ ତାଙ୍କ କ୍ଷମତାପ୍ରାପ୍ତ ପ୍ରତିନିଧି ସେ ରାସ୍ତା ଖୋଲନ୍ତି । କଳିଯୁଗରେ ସମସ୍ତେ କ'ଣ ଏହାଦ୍ୱାରା ଲାଭାନ୍ୱିତ ହୁଅନ୍ତି କି ?

**ବୈକୁଣ୍ଠ ସାଧକଃ ପନ୍ଥା ସ ତୁ ଗୋପ୍ୟୋ ହି ବର୍ତ୍ତତେ ।**

**ତସ୍ୟ-ଉପଦେଷ୍ଟା ପୁରୁଷଃ ପ୍ରାୟୋ ଭାଗ୍ୟେନ ଲଭ୍ୟତେ ।୫୭।**

ଉତ୍ତର : ଭକ୍ତିମାର୍ଗ ଅବଶ୍ୟ ସମସ୍ତଙ୍କ ପାଇଁ ଖୋଲା । କିନ୍ତୁ ଭକ୍ତିମାର୍ଗ ଦର୍ଶନ କରାନ୍ତି କେବଳ ଭକ୍ତି ମାର୍ଗର ସଦ୍‌ଗୁରୁ । ଅନେକ ଜନ୍ମର ସଂଚିତ ପୁଣ୍ୟ ଫଳ ଉଦୟହେଲେ ଏଭଳି ସଦ୍‌ଗୁରୁ ମିଳନ୍ତି ସାଧକଙ୍କୁ । ଅନ୍ୟ ହତଭାଗ୍ୟ ସାଧକଗଣ କର୍ମ-ଜ୍ଞାନ-ଯୋଗରେ ଘୂରି ବୁଲନ୍ତି ସାତ୍ତ୍ୱିକ ଶ୍ରଦ୍ଧା-ବିଶ୍ୱାସ ଅଭାବରୁ ।

ପ୍ରଶ୍ନ-୩୯ : ହେ' ନାରଦଜୀ ! ତୁମେ କହିପାର ଯେ ବେଦ ବେଦାନ୍ତ ଗୀତା ଆଦିଙ୍କର କେବଳ ସାର କଥା ତ ଭାଗବତ ଗ୍ରନ୍ଥରେ ଅଛି । ଭାଗବତରେ କ'ଣ କିଛି ନୂଆ କଥା କିମ୍ବା ସିଦ୍ଧାନ୍ତ ଅଛି କି ? କିନ୍ତୁ ବିଚାର କରି ଦେଖ- ନାରଦଜୀ, ବୃକ୍ଷର ପାଚିଲା ଫଳରୁ ଯେଉଁ ରସ ବା ସ୍ୱାଦ ମିଳେ, ବୃକ୍ଷର ମୂଳ, ଗଣ୍ଡି, ଶାଖା, ପତ୍ର କିମ୍ବା ଚେରରୁ ସେ ରସ ମିଳେ କି ? ଲହୁଣୀର ସ୍ୱାଦ କ'ଣ ଦୁଧରୁ ମିଳେ କି ? ଘିଅରେ ସିନା ଦୀପ ଜଳେ । ଦୁଧ ସେ କାମ କରିପାରେନା ।'

**ବେଦ-ଉପନିଷଦାଂ ସାରାତ୍ ଜାତା ଭାଗବତୀ କଥା ।**
**ଅତି-ଉତ୍ତମା ତତୋ ଭାତି ପୃଥକ୍ ଭୂତା ଫଳାକୃତିଃ ।୬୭।**

ଉତ୍ତର : ବୃକ୍ଷରୁ ପାଚିଲା ଫଳ ସଂଗ୍ରହ କରି, ଚିପୁଡ଼ି, ଛାଣି ପାନ କଲେ ସିନା ସେ ରସ ଆସ୍ୱାଦନ କରିହେବ । ଭାଗବତ କଥା ସେଇ ଛଣା ଅମୃତ ।

ପ୍ରଶ୍ନ-୪୦ : ଗାଈ ଦୁଧକୁ ଶିଝାଇ, ଦହି ମିଶାଇ, ମନ୍ଥନ କରି ଲହୁଣୀ ବାହାର କରି ତାକୁ ଅଗ୍ନିରେ ଗରମ କଲେ ଯେଉଁ ଘିଅ ବାହାରେ ସେଥିରେ ଯଜ୍ଞ ବା ହୋମ କରି ଦେବୀ ଦେବତାଙ୍କୁ ପ୍ରସନ୍ନ କରାଯାଇପାରେ ସିନା, ଦୁଧ, ଦହି କିମ୍ବା ଲହୁଣୀ ଦ୍ୱାରା ଯଜ୍ଞ କରି ନୁହେଁ । ସେହିପରି ଆଖୁ ଦଣ୍ଡରେ ବ୍ୟାପୀ ରହିଥିବା ସୁମିଷ୍ଟ ରସ କ'ଣ ଆଖୁକୁ ନ ପେଡ଼ି, ଅଗ୍ନିରେ ସିଦ୍ଧ ନକରି ଶର୍କରା କିମ୍ବା ନବାତର ସ୍ୱାଦ ପାଇହୁଏ କି ?

**ଇକ୍ଷୁଣାଂ ଅପି ମଧ୍ୟ-ଅନ୍ତଂ ଶର୍କରା ବ୍ୟାପ୍ୟ ତିଷ୍ଠତି ।**
**ପୃଥକ୍ ଭୂତା ଚ ସା ମିଷ୍ଟା ତଥା ଭାଗବତୀ କଥା ।୭୦।**

ଉତ୍ତର : ଘୃତର ସ୍ୱାଦ ଦୁଧରୁ ମିଳେନା । ଖଣ୍ଡାସର,ମିଶ୍ରି, ଶର୍କରାର ସ୍ୱାଦ ଅପେଡ଼ା ଆଖୁଦଣ୍ଡରୁ ମିଳେନା । ସେହିପରି ଭାଗବତର ରସ, ପ୍ରେମ, ସ୍ୱାଦ,

ଆଦି ବେଦ,ବେଦାନ୍ତ, ଗୀତାରୁ ବିନା ମନ୍ଥନରେ ସହଜରେ ଅନୁପଲବ୍ଧ । ସେ ସବୁର ପ୍ରାପ୍ତି ସଦ୍‌ଗୁରୁଙ୍କ ଆଶ୍ରୟରେ ତାଙ୍କ କୃପାରୁ ହୋଇଥାଏ । ସ୍ୱ ପୁରୁଷାର୍ଥରେ ସେ ସ୍ୱାଦ ସାଧକକୁ ମିଳିବା ଅସମ୍ଭବ । ବିଶେଷତଃ କଳିଯୁଗରେ ।

ପ୍ରଶ୍ନ- ୪୧ : ଭକ୍ତି,ଜ୍ଞାନ ଓ ବୈରାଗ୍ୟ ଏ ତିନି କଥାର ଅତ୍ୟନ୍ତ ନିବିଡ଼ ସମନ୍ୱୟ କେଉଁ ଗ୍ରନ୍ଥରେ ସର୍ବତୋଭାବେ ହୋଇଚି?

**ଇଦଂ ଭାଗବତଂ ନାମ ପୁରାଣଂ ବ୍ରହ୍ମ ସମ୍ମିତମ୍ ।**
**ଭକ୍ତିଜ୍ଞାନ ବିରାଗାଣାଂ ସ୍ଥାପନାୟ ପ୍ରକାଶିତମ୍ ।୭୧।**

ଉତ୍ତର : ହୋଇଛି କେବଳ ଶ୍ରୀମଦ୍ଭାଗବତ ମହାଗ୍ରନ୍ଥରେ । କାରଣ ଏହା ସକଳ ବେଦ(ବ୍ରହ୍ମ)ଙ୍କର ବ୍ୟାଖ୍ୟା ବା ବିଶ୍ଳେଷଣ (ସମ୍ମିତଂ) କହିବାକୁ ଗଲେ ଛଣା ଅମୃତ । ଭଗବାନଙ୍କର ଜ୍ଞାନ ଅବତାର ବେଦବ୍ୟାସଜୀଙ୍କର ସାରା ଜୀବନର ମାନସ ମନ୍ଥନ, ମସ୍ତିଷ୍କ କସରତର ଫଳ ନୁହେଁ । ବରଂ ତାଙ୍କ ଭଗବତ ଶରଣାଗତିରୁ ଭଗବାନଙ୍କ କୃପା ପ୍ରଦତ୍ତ ଅମୃତ ମଣୋହି ମହା-ଉଦଧି । କଳିଯୁଗୀ ଲୋକଙ୍କ ପାଇଁ ମରଣ ଭୟ ଜିଣିବା ପାଇଁ ମହୌଷଧୀ । ହଁ, ଏହା କେବଳ ଔଷଧୀ ନୁହେଁ ରସାୟନ ମଧ୍ୟ । ବ୍ୟାଧି ଭଲ ହୋଇଗଲେ ରୋଗୀ ଆଉ ଔଷଧ ଖାଇ ନଥାଏ । କିନ୍ତୁ ରସାୟନକୁ ବ୍ୟାଧି ମୁକ୍ତ ଅବସ୍ଥାରେ ସେବନ କଲେ ମଧ୍ୟ ଉପକାର ମିଳେ । ସେହିଭଳି ଏ ଭାଗବତ ରସାୟନ ସଦା ସେବ୍ୟା, ସଦା ସେବ୍ୟା ।

# ଅଥ ୩ୟ ଅଧ୍ୟାୟଃ

## (ଭାଗବତ ଶ୍ରବଣରେ ଭକ୍ତଦେବୀଙ୍କର କଷ୍ଟ ନିବାରଣ)

### କୁମାରାଃ ଉଚୁଃ

ପ୍ରଶ୍ନ-୪୨ : ସନକାଦି ମୁନିମାନେ ବିନମ୍ର ଓ ବିବେକୀ ନାରଦଜୀଙ୍କୁ ଶ୍ରୀମଦ୍ଭାଗବତ ଶ୍ରବଣରେ ଖାଲି ମନୁଷ୍ୟ କ'ଣ ପ୍ରେତମାନଙ୍କର ମଧ୍ୟ ଉଦ୍ଧାର ହୁଏ । ପୁଣି ଗୃହସ୍ଥମାନଙ୍କର ହୃଦୟରେ ଜ୍ଞାନ, ବୈରାଗ୍ୟ ଓ ଭକ୍ତି ଏ ତିନି ତତ୍ତ୍ୱଙ୍କର ଉଦୟ ହୁଏ ବୋଲି କେଉଁ ଦୃଷ୍ଟାନ୍ତ ଦେଲେ ? କେଉଁ ସ୍ଥାନରେ ଏ ଭାଗବତ ମହା

ଅଧିବେଶନ ହୋଇଥିଲା ?

**ଶୃଣୁ ନାରଦ ବକ୍ଷାମୋ ବିନମ୍ରାୟ ବିବେକୀନେ ।**
**ଗଙ୍ଗାଦ୍ୱାର ସମୀପେ ତୁ ତଟଂ ଆନନ୍ଦ ନାମକମ୍ ।୪।**

ଉତ୍ତର : ଶୁକ ପରୀକ୍ଷିତ ସମ୍ବାଦ ଓ ସୂତ ଶୌନକ ସମ୍ବାଦ ପରେ ମହାଭାଗବତ ଗୋକର୍ଣ୍ଣଜୀ ଧୁନ୍ଧୁକାରୀଙ୍କ ପ୍ରେତାତ୍ମାଙ୍କୁ ଏହି ଭାଗବତ ସପ୍ତାହ ଶ୍ରବଣ କରାଇଥିଲେ । ହରଦ୍ୱାର ତୀର୍ଥକ୍ଷେତ୍ରରେ ଗଙ୍ଗାକୂଳ ସ୍ଥିତ ଆନନ୍ଦ ଘାଟରେ ।

ପ୍ରଶ୍ନ-୪୩ : ଭାଗବତ ଏକ ଭକ୍ତି ପ୍ରଧାନ ମହାଗ୍ରନ୍ଥ । ଭାଗବତ ସପ୍ତାହରେ ସ୍ୱୟଂ ଭକ୍ତିଦେବୀ ସିନା ଯିବେ ତାଙ୍କ ମହିମା ଶ୍ରବଣ କରିବାକୁ । ତାଙ୍କ ସହିତ କ'ଣ ଜ୍ଞାନ ଓ ବୈରାଗ୍ୟ ଦୁଇ ପୁତ୍ର (ଭକ୍ତ୍ୟାଦିକଂ) ମଧ୍ୟ ସେଠାକୁ ଯିବେ ?

**ଯତ୍ର ଭାଗବତୀ ବାର୍ତ୍ତା ତତ୍ର ଭକ୍ତି-ଆଦିକଂ ବ୍ରଜେତ୍ ।**
**କଥା ଶବ୍ଦଂ ସମାକର୍ଣ୍ଣ୍ୟ ତତ୍ ତ୍ରିକଂ ତରୁଣାୟତେ ।୯।**

ଉତ୍ତର : ହଁ ନିଶ୍ଚୟ ଯିବେ । ସେଇ ଗୋଟିକ ଗ୍ରନ୍ଥ ଭାଗବତ ଶ୍ରବଣ ମାତ୍ରକେ ତିନିଜଣ ଯାକ ତରୁଣ ତରୁଣୀ ହୋଇଯିବେ ।

**ସୂତ ଉବାଚ**

ପ୍ରଶ୍ନ-୪୪ : ସନକାଦି ମୁନିମାନେ ନାରଦଜୀଙ୍କ ଅନୁରୋଧରେ ଭାଗବତର ଅମୃତ ପ୍ରବଚନ ଓ ରସାସ୍ୱାଦନ ପାଇଁ କେଉଁଠିକି ଗଲେ ?

**ଏବଂ ଉକ୍ତ୍ୱା କୁମାରାଃ ତେ ନାରଦେନ ସମଂ ତତଃ ।**
**ଗଙ୍ଗାତଟଂ ସମାଜଗ୍ମୁଃ କଥା ପାନାୟ ସତ୍ତ୍ୱରାଃ ।୧୦।**

ଉତ୍ତର : ପବିତ୍ର ଗଙ୍ଗାକୂଳର ହରଦ୍ୱାରସ୍ଥିତ ଆନନ୍ଦ ଘାଟକୁ ।

ପ୍ରଶ୍ନ-୪୫ : ସେମାନେ ଆନନ୍ଦ ଘାଟରେ ପହଞ୍ଚି କ'ଣ ସବୁ ଦେଖିଲେ ?

**ଯଦା ଯାତାଃ ତଟଂ ତେ ତୁ ତଦା କୋଳାହଳୋଽପି-ଅଭୂତ୍ ।**
**ଭୂଃ ଲୋକେ ଦେବ ଲୋକେ ଚ ବ୍ରହ୍ମଲୋକେ ତଥା-ଇବ ଚ ।୧୧।**

ଉତ୍ତର : ଭୂଃ ଲୋକରୁ ସାଧୁ ସନ୍ଥ, ସ୍ୱଃ ଲୋକରୁ ଦେବୀ ଦେବତାଗଣ ଓ ବ୍ରହ୍ମଲୋକରୁ ବ୍ରହ୍ମା, ବିଷ୍ଣୁ, ଶଙ୍କର ମଧ୍ୟ ନିଜ ନିଜ ପାର୍ଷଦମାନଙ୍କ ଗହଣରେ ଭାଗବତ ଶ୍ରବଣଲାଗି ହାଜର ।

ପ୍ରଶ୍ନ- ୪୬ : ଆଗ୍ରହୀ ଶ୍ରୋତାମାନଙ୍କ ମଧ୍ୟରୁ କିଏ କିଏ ସବୁ ସର୍ବପ୍ରଥମେ

ପହଞ୍ଚିଲେ କଥା ସ୍ଥଳରେ ?

**ଶ୍ରୀଭାଗବତ ପୀୟୁଷ ପାନାୟ ରସ ଲମ୍ପଟାଃ ।**
**ଧାବନ୍ତୋଽପି-ଆଯଯୁଃ ସର୍ବେ ପ୍ରଥମଂ ଚ ଯେ ବୈଷ୍ଣବାଃ ।୧୨।**

ଉତ୍ତର : କଥାମୃତ ପାନ ଆଶାରେ ଧାଇଁଲେ ସମସ୍ତେ । ତଥାପି ସର୍ବାଦୌ ବୈଷ୍ଣବମାନେ ଧାଇଁ ଧାଇଁ ଆସି ଭିଡ଼ ଜମାଇଦେଲେ । ଭଲ ଭଲ ଯାଗା ଦେଖି କାନ୍ଥ କିମ୍ବା ଖୁଣ୍ଟକୁ ଆଉଜି ବସିବେ । କିଏ ବକ୍ତାଙ୍କର ମୁହଁ ଦେଖିବାର ସୁଯୋଗ ପାଇବେ । ପୁଣି କଥାକୁ ବକ୍ତାଙ୍କର ପାଖରେ ବସି ଶ୍ରବଣ କଲେ ଭଲ ବୁଝି ହେବ ଏ ଆଶାରେ । ଅନ୍ୟମାନଙ୍କ ଦ୍ୱାରା କରାଯାଉଥିବା ପଛପଟିଆ ଅଯଥା କୋଳାହଳ କମ୍ ହେବ । ଏହି ସୁବିଧା ଆଶାରେ ।

ପ୍ରଶ୍ନ-୪୭ : ଶ୍ରୋତାମାନଙ୍କ ମଧ୍ୟରେ ବ୍ୟାସ, ପରାଶର, ପର୍ଶୁରାମ, ବିଶ୍ୱାମିତ୍ର, ଦତ୍ତାତ୍ରେୟ, ମାର୍କଣ୍ଡେୟ, ଜାଜଳି, ଜହ୍ନୁ ଆଦି ପ୍ରମୁଖ ମୁନି ଋଷି ଗଣ ନିଜ ନିଜ ପୁତ୍ର, ଶିଷ୍ୟମାନଙ୍କ ସହିତ ଉପସ୍ଥିତ । ସପ୍ତଦଶ ପୁରାଣ, ବେଦମନ୍ତ୍ର, ବେଦାନ୍ତ ସୂତ୍ର, ଷଟ୍‌ଦର୍ଶନ ଆଦି ନିଜେ ସ୍ଥୂଳ ନର ମୂର୍ତ୍ତି ଧରି ବସିଗଲେ । ଗଙ୍ଗା, ଯମୁନା ନର୍ମଦା ଆଦି ନଦୀଗଣ, ପୁଷ୍କର, ବ୍ରହ୍ମସର ଆଦି ସରୋବର, ଗୋବର୍ଦ୍ଧନ ବିନ୍ଧ୍ୟ ଆଦି ପର୍ବତ, ଦଣ୍ଡକ, ବୃନ୍ଦାବନ, ମଧୁବନ, ଭାଣ୍ଡିର ବନ ଆଦି ସମସ୍ତେ ମନୁଷ୍ୟ ମୂର୍ତ୍ତି ଧରି ବିଦ୍ୟମାନ । ଯେଉଁ ମୁନି ଋଷିଗଣ ନିଜ ନିଜ ଅହଂକାର ହେତୁ ନିଜ ନିଜ ଆଶ୍ରମରୁ ବାହାରୁ ନଥିଲେ ଭୃଗୁ ଋଷି ସେମାନଙ୍କୁ ବୁଝାଇ ଶୁଝାଇ କଥାସ୍ଥଳକୁ ଟାଣି ଆଣି ଶେଷରେ ସେ ମଧ୍ୟ ପହଞ୍ଚିଗଲେ । ଦେବ, ଦାନବ, ଗନ୍ଧର୍ବ, କିନ୍ନର, କିଂପୁରୁଷ, ସିଦ୍ଧଗଣ ନ ଆସନ୍ତେ ଅବା କିପରି ? ତେବେ ଆଗ ଧାଡ଼ିମାନଙ୍କରେ କିଏ କିଏ ସ୍ଥାନ ପାଇଲେ ?

**ବୈଷ୍ଣବାଃ ଚ ବିରକ୍ତାଃ ଚ ନ୍ୟାସିନୋ ବ୍ରହ୍ମଚାରିଣଃ ।**
**ମୁଖଭାଗେ ସ୍ଥିତାଃ ତେ ଚ ତଦଗ୍ରେ ନାରଦଃ ସ୍ଥିତଃ ।୧୯।**

ଉତ୍ତର : କିଏ ଆଉ ବସନ୍ତେ ? ଦୀକ୍ଷିତ ବ୍ରହ୍ମଚାରୀ ଗଣ, ଗୃହସ୍ଥ, ବୈଷ୍ଣବ ଗୋସ୍ୱାମୀ ମାନେ, ବାନପ୍ରସ୍ଥାଶ୍ରମୀ, ଅବଧୂତଗଣ ଓ ବଲ୍‌କଳ ଧାରୀ, କୌପୀନ ଧାରୀ, ସନ୍ନ୍ୟାସୀଗଣ ଠେଲିଠାଲି ଆଗଧାଡ଼ିରେ ଆସନ ଜମେଇଦେଲେ । ହେଲେ ସମସ୍ତଙ୍କ ଆଗରେ ସ୍ୱତନ୍ତ୍ର ଆସନରେ ଶୋଭାପାଇଲେ ଦେବର୍ଷି ନାରଦ ।

ସେ ଯେ ଆଜିର ସତ୍‌ସଙ୍ଗର ଯଯମାନ, ପୁରୋହିତ ଓ ମୁଖ୍ୟ ଶ୍ରୋତା ମଧ୍ୟ ।

ପ୍ରଶ୍ନ-୪୮ : ଦେବର୍ଷି ନାରଦଜୀ ସନକାଦି ମୁନିମାନଙ୍କୁ ବକ୍ତାଙ୍କ ଆସନରେ ବସାଇ ସେମାନଙ୍କୁ ସ୍ୱାଗତ ସମ୍ଭାଷଣ ସହିତ ସାଦର ନମସ୍କାର କଲେ । ଜୟ ଜୟ ଧ୍ୱନି, ହରୟେ ନମଃ ମନ୍ତ୍ର ଉଚ୍ଚାରଣ, ଶୁଭ ଶଙ୍ଖ ନାଦ, ଅବୀର ଗୁଣ୍ଡ, ଲିଆ ଖଇ, ଫୁଲ ପାଖୁଡ଼ା, ଅରୁଆ ଚାଉଳର ଅଜସ୍ର ବର୍ଷାରେ ସଭାସ୍ଥଳର ଗଗନ ପବନ ମହମହ ସୁଗନ୍ଧରେ, କୋଳାହଳରେ କମ୍ପି ଉଠିଲା । କେହି କେହି ଦେବତା ନିଜ ନିଜ ବିମାନରୁ ସ୍ୱର୍ଗରୁ ଆଣିଥିବା ଦିବ୍ୟ ପୁଷ୍ପ ବୃଷ୍ଟି କରିବାରେ ଲାଗିଲେ । ଏଥର ବକ୍ତାମାନେ ଶ୍ରୀମଦ୍‌ଭାଗବତ ଓ ତାଙ୍କର ମାହାତ୍ମ୍ୟ ଅମୃତ ରସ ପରିବେଷଣ କଲେ । ଏହି ଭାଗବତ କଥା ସପ୍ତାହ ଶ୍ରବଣର ଫଳ କ'ଣ ବୋଲି ସେମାନେ ଶୁଣାଇଲେ ?

**କୁମାରାଃ ଉଚୁଃ**

**ଅଥ ତେ ବର୍ଣ୍ଣ୍ୟତେଽସ୍ମାଭିଃ ମହିମା ଶୁକ ଶାସ୍ତ୍ରଜଃ ।**
**ଯସ୍ୟ ଶ୍ରବଣ ମାତ୍ରେଣ ମୁକ୍ତିଃ କରତଳସ୍ଥିତାଃ ।୨୪।**

ଉତ୍ତର : ଏହାର ଶ୍ରବଣରେ ସଂସାର ଭୋଗ ସୁଖ ଓ ଅଣିମାଦି ସିଦ୍ଧିକୁ ପଚାରେ କିଏ ? ପାଞ୍ଚ ପ୍ରକାରର ମୁକ୍ତି ମଧ୍ୟ ହାତ ପାଆନ୍ତାରେ ଶ୍ରୋତାମାନଙ୍କର ।

ପ୍ରଶ୍ନ- ୪୯ : ଆଚ୍ଛା, ଆଉ କିଛି ବିଶେଷ ଲାଭ ହୁଏ କି ଏ ଭାଗବତ ଶ୍ରବଣରେ ?

**ସଦା ସେବ୍ୟା ସଦା ସେବ୍ୟା ଶ୍ରୀମଦ୍ ଭାଗବତୀ କଥା ।**
**ଯସ୍ୟାଃ ଶ୍ରବଣ ମାତ୍ରେଣ ହରିଃ ଚିତ୍ତଂ ସମାଶ୍ରୟେତ୍ ।୨୫।**

ଉତ୍ତର : ନିଶ୍ଚୟ ସ୍ୱର୍ଗର ଭୁକ୍ତି, କୈଳାସ ଓ ବୈକୁଣ୍ଠ ଧାମର ପାଞ୍ଚମୁକ୍ତିର ଲୋଭକୁ ଛାଡ଼ି ଶ୍ରୋତାର ମନ କୃଷ୍ଣ ତନ୍ମୟ ହୋଇଯାଏ । ଏହା କ'ଣ ସାମାନ୍ୟ କଥା ଦେବର୍ଷି ନାରଦ । ସୁତରାଂ ଏ ରସ ସଦା ପିଉଥାଅ । କେବେ ବି ଶ୍ରବଣର ସୁଯୋଗ ପାଇଲେ ଆଦୌ ଛାଡ଼ିବା କଥା ନୁହେଁ । ମନୁଷ୍ୟ ହୁଅ କି ଦେବତା ହୁଅ ।

ପ୍ରଶ୍ନ-୫୦ : ମହାମୁନି ବେଦବ୍ୟାସଙ୍କ ରଚିତ ଶ୍ରୀମଦ୍‌ଭାଗବତ ମହାଗ୍ରନ୍ଥକୁ କିଏ କାହାକୁ ପ୍ରଥମେ ପ୍ରବଚନ କରିଥିଲେ ?

**ଗ୍ରନ୍ଥୋଽଷ୍ଟାଦଶ ସାହସ୍ରୋ ଦ୍ୱାଦଶ ସ୍କନ୍ଧ ସମ୍ମିତଃ ।**
**ପରୀକ୍ଷିତ୍ ଶୁକ ସମ୍ବାଦଃ ଶୃଣୁ ଭାଗବତଂ ଚ ତତ୍ ।୨୬।**

ଉତ୍ତର : ହସ୍ତିନା ସିଂହାସନ ତ୍ୟାଗୀ ବ୍ରହ୍ମଶାପ ଗ୍ରସ୍ତ ମହାରାଜ ପରୀକ୍ଷିତ ମୁଖ୍ୟଶ୍ରୋତା ଏବଂ ବକ୍ତା ହେଲେ ମାତା ଗର୍ଭରୁ ବ୍ରହ୍ମଜ୍ଞାନୀ ବା ଜନ୍ମଜାତ ପରମହଂସ ଶ୍ରୀ ଶୁକଦେବ ଗୋସ୍ୱାମୀ।

ପ୍ରଶ୍ନ-୫୧ : ଏ ଜୀବ ଅବିଦ୍ୟା, ଅଜ୍ଞାନ ଅନ୍ଧକାରରେ ସଂସାରର ଜନ୍ମମରଣ ଚକ୍ରରେ କେତେ କାଳ ଯାଏଁ ଘୂରୁଥାଏ ?

**ତାବତ୍ ସଂସାର ଚକ୍ରେଽସ୍ମିନ୍ ଭ୍ରମତେଽଜ୍ଞାନତଃ ପୁମାନ୍ ।**
**ଯାବତ୍ କର୍ଣ୍ଣଗତା ନାସ୍ତି ଶୁକ ଶାସ୍ତ୍ର କଥା କ୍ଷଣମ୍ ।୨୭।**

ଉତ୍ତର : କାନରେ ଭାଗବତ କଥା (ଶୁକ ଶାସ୍ତ୍ର) ରସ ଅମୃତ ନ ପିଇବା ଯାଏ । ଅନେକ ଜନ୍ମ-ଜନ୍ମାନ୍ତର ଧରି ମୁକ୍ତି ମିଳେନା ମୁମୁକ୍ଷୁ ସାଧକକୁ । ଏ ରସକୁ କର୍ଣ୍ଣ ବିଲରେ ପାନ କରାଯାଏ । ମୁଖରେ ନୁହେଁ ।

ପ୍ରଶ୍ନ- ୫୨ : ଯେଉଁ ମନୁଷ୍ୟ ମୃତ୍ୟୁ ଶଯ୍ୟାରେ ମଧ୍ୟ ଶ୍ରୀମଦ୍‌ଭାଗବତ କଥା ଶୁଣି ନିଏ ତା ଉପରେ ପ୍ରସନ୍ନ ହୋଇ ଭଗବାନ ତାକୁ ବୈକୁଣ୍ଠ ଧାମ ହେଉଥିବାରୁ ଜୀବନ କାଳ ମଧ୍ୟରେ ଏ କଥା ଶ୍ରବଣ ପାଇଁ କିଛି କଡ଼ାକଡ଼ି ନିୟମ ଅଛି କି ?

**ତେନ ଯୋଗନିଧେ ଧୀମନ୍ ଶ୍ରୋତବ୍ୟା ସା ପ୍ରଯତ୍ନତଃ ।**
**ଦିନାନାଂ ନିୟମୋ ନାସ୍ତି ସର୍ବଦା ଶ୍ରବଣଂ ମତମ୍ ।୪୫।**

ଉତ୍ତର : ହେ ବୁଦ୍ଧିମାନ (ଧୀମନ୍), ନାରଦଜୀ (ଯୋଗନିଧେ), ଅବଶ୍ୟ ସତ୍ୟ ଭାଷଣ, ବ୍ରହ୍ମଚର୍ଯ୍ୟ ପାଳନ, ସଦାଚାର ପାଳନ ଭଳି କେତେକ କଠିନ ନିୟମ ପାଳିବାକୁ ହୁଏ ଏଥିରେ କିନ୍ତୁ କୌଣସି ଦିନ ପଢ଼ିବା ପାଇଁ ବାରଣ ନାହିଁ । ବରଂ ସାରା ଜୀବନ ସବୁଦିନ ପଢ଼ିଲେ ଶୁଣିଲେ ଅତି ଉତ୍ତମ ।

ପ୍ରଶ୍ନ-୫୩ : ଯେଉଁ ଫଳ ବହୁ କଷ୍ଟକର କର୍ମଯୋଗ(ତପ), ଜ୍ଞାନଯୋଗ (ଯୋଗ) ଓ ଧ୍ୟାନଯୋଗ (ସମାଧିନା) ଦ୍ୱାରା ମିଳିପାରେ ନା, ସେ ଦୁର୍ଲ୍ଲଭ ଫଳ ଶ୍ରୀମଦ୍‌ଭାଗବତକୁ କିପରି ଶ୍ରବଣ କଲେ ସହଜରେ (ଅନାୟାସେନ) ଶ୍ରୋତାକୁ ମିଳିପାରେ ?

**ଯତ୍ ଫଳଂ ନାସ୍ତି ତପସା ନ ଯୋଗେନ ସମାଧିନା ।**
**ଅନାୟାସେନ ତତ୍ ସର୍ବଂ ସପ୍ତାହ ଶ୍ରବଣେ ଲଭେତ୍ ।୫୦।**

ଉତ୍ତର : ଭାଗବତ କଥା ସପ୍ତାହ ଉତ୍ସବ ବେଳେ ବିଧବଦ୍ଧ ଶ୍ରବଣ ଦୀକ୍ଷା

ଗ୍ରହଣ କରି ମନନ ସହିତ ସପ୍ତାହ ଶ୍ରବଣ କରିପାରିଲେ ।

ପ୍ରଶ୍ନ-୫୪ : ଗୃହସ୍ଥାଶ୍ରମରେ ପଞ୍ଚମହାଯଜ୍ଞ, ବ୍ରତ, ତପଠାରୁ ଅନେକ ଗୁଣରେ ଶ୍ରେଷ୍ଠ କହି ଆଉ କେଉଁ କେଉଁ କଷ୍ଟକର ସାଧନ ଠାରୁ ଭାଗବତ ସପ୍ତାହ ଶ୍ରବଣ ଶ୍ରେଷ୍ଠତର ବୋଲି ଗର୍ଜନ ଛାଡ଼ନ୍ତି ବୋଲି ସନକାଦି ମୁନିମାନେ କହିଲେ ?

**ଯୋଗାତ୍ ଗର୍ଜତି ସପ୍ତାହୋ ଧ୍ୟାନାତ୍ ଜ୍ଞାନାତ୍ ଚ ଗର୍ଜତି ।**
**କିଂ ବ୍ରୁମୋ ଗର୍ଜନଂ ତସ୍ୟ ରେ ରେ ଗର୍ଜତି ଗର୍ଜତି ।୫୨।**

ଉତ୍ତର : ହେ ନାରଦ ମୁନି, କେତେ ଆଉ କହିବୁ (କିଂ ବ୍ରୁମୋ) ଭାଗବତର (ତସ୍ୟ) ଗୁରୁ ଗମ୍ଭୀର ଘୋଷଣା (ଗର୍ଜନଂ) ? ବାନପ୍ରସ୍ଥାଶ୍ରମରେ ଅଷ୍ଟାଙ୍ଗ ଯୋଗ ସାଧନ, ବ୍ରହ୍ମଚର୍ଯ୍ୟଶ୍ରମର ଧ୍ୟାନଠାରୁ ଓ ସନ୍ନ୍ୟାସାଶ୍ରମର ଜ୍ଞାନଠାରୁ ମଧ୍ୟ ଅତ୍ୟନ୍ତ ସରଳ,ସହଜ ଏହି ଭାଗବତ ସପ୍ତାହ ଶ୍ରବଣ ।

ପ୍ରଶ୍ନ-୫୫ : ଯେତେବେଳେ ଶ୍ରୀକୃଷ୍ଣ ଲୀଳା ସମ୍ବରଣ କରି ସ୍ୱଧାମ ଯିବାକୁ ବାହାରିଲେ ଉଦ୍ଧବଙ୍କ ବ୍ୟାକୁଳତା ଓ ମାୟା ପ୍ରଭାବରେ କଳିଯୁଗୀ ଲୋକଙ୍କର ଦୂରବସ୍ଥା କଳ୍ପନା କରି ଧରାଧାମ ନ ଛାଡିବାକୁ ସବିନୀତ ନିବେଦନ କରନ୍ତେ ଠାକୁରଜୀ ତାଙ୍କ ପାଇଁ କ'ଣ ଉପାୟ ଖଞ୍ଜିଲେ ?

ଉଦ୍ଧବ ଉବାଚ

**ସ୍ୱକୀୟଂ ଯତ୍ ଭବେତ୍ ତେଜଃ ତତ୍ ଚ ଭାଗବତେଽଦଧାତ୍ ।**
**ତିରୋଧାୟ ପ୍ରବିଷ୍ଟୋଽୟଂ ଶ୍ରୀମଭାଗବତ-ଅର୍ଣ୍ଣବମ୍ ।୬୧।**

ଉତ୍ତର : ହେ ଶୌନକଜୀ, ଠାକୁରଜୀ ତାଙ୍କର ସମସ୍ତ ଜ୍ଞାନ, ବୈରାଗ୍ୟ ଓ ଭକ୍ତି ଭଳି ସମସ୍ତ ଦିବ୍ୟଶକ୍ତିମାନଙ୍କ ସହିତ ଶ୍ରୀମଦ୍ଭାଗବତ ମହାଗ୍ରନ୍ଥ ମଧ୍ୟରେ ବର୍ଣ୍ଣ/ଅକ୍ଷର ମାନଙ୍କ ଭିତରେ ପଶି ଲୁଚି ରହିଗଲେ । ଅନ୍ୟ ଭାଷାରେ କହିଲେ ଲୀଳା ଶେଷରେ ସ୍ଥୂଳ ରୂପରେ ସେ ଅନ୍ତର୍ଦ୍ଧାନ, ଅପ୍ରକଟ, ଅଦୃଶ୍ୟ ହୋଇ ମଧ୍ୟ ଏହି ଭାଗବତ ରସ ସମୁଦ୍ରରେ ପବେଶ କରିଗଲେ । ସୂକ୍ଷ୍ମ ସ୍ୱରୂପରେ ।

# ଅଥ ୪ର୍ଥ ଅଧ୍ୟାୟଃ

## (ସତ୍‌ପୁତ୍ର ଗୋକର୍ଣ୍ଣ-କୁପୁତ୍ର ଧୁନ୍ଧୁକାରୀ ଉପାଖ୍ୟାନ)

ପ୍ରଶ୍ନ-୫୬ : ଭାଗବତ କଥା ଶ୍ରବଣରେ ସେଇ ଦୁର୍ଲ୍ଲଭ ଫଳପ୍ରାପ୍ତି କଥାର କେଉଁ ବିଲକ୍ଷଣ ଉଦାହରଣ ଦେଇ ସନକାଦି ମୁନିମାନେ କେଉଁ ସ୍ଥାନ, କାଳ ଓ ପାତ୍ର କଥା ଉପସ୍ଥାପନ କଲେ ?

**କୁମାରାଃ ଉଚୁଃ**

**ତୁଙ୍ଗଭଦ୍ରା ତଟେ ପୂର୍ବଂ ଅଭୂତ୍ ପତ୍ତନଂ ଉତ୍ତମମ୍ ।**
**ଯତ୍ର ବର୍ଣ୍ଣାଃ ସ୍ୱଧର୍ମେଣ ସତ୍ୟ ସତ୍‌କର୍ମ ତତ୍‌ପରାଃ ।୧୬।**

ଉତ୍ତର : ଏହି ପବିତ୍ର କର୍ମଭୂମି ଭାରତବର୍ଷର ଦାକ୍ଷିଣାତ୍ୟ ପ୍ରଦେଶର ତୁଙ୍ଗଭଦ୍ରା ନଦୀକୂଳର ସୁନ୍ଦର ଆଦର୍ଶ ନଗରୀଟିଏ । ଏହା ଅନେକ ଦିନର (ପୂର୍ବଂ) ପୁରୁଣା କଥା । ସେ ରାଜ୍ୟର ଅଧିବାସୀମାନେ ସମସ୍ତେ ସ୍ୱଧର୍ମ ପାଳନରେ ବ୍ରତୀ ।

ପ୍ରଶ୍ନ-୫୭ : ସେମାନଙ୍କ ମଧ୍ୟରେ (ତସ୍ମିନ୍) ଆତ୍ମଦେବ (ଆତ୍ମଜ୍ଞାନୀ) ବ୍ରାହ୍ମଣଙ୍କର କି କି ସଦ୍‌ଗୁଣ ସବୁ ଥିଲା ?

**ଆତ୍ମଦେବଃ ପୁରେ ତସ୍ମିନ୍ ସର୍ବବେଦ ବିଶାରଦଃ ।**
**ଶ୍ରୌତ ସ୍ମାର୍ତ୍ତେଷୁ ନିଷ୍ଣାତୋ ଦ୍ୱିତୀୟ ଇବ ଭାସ୍କରଃ ।୧୭।**

ଉତ୍ତର : ଚାରି ବେଦରେ ପ୍ରକାଣ୍ଡ ପଣ୍ଡିତ, ବୈଦିକ ଲୌକିକ ଜ୍ଞାନର ଉଚ୍ଚ ଅଧିକାରୀ ଓ ବ୍ରହ୍ମତେଜରେ ମଧ୍ୟ ଆଉ ଜଣେ ସୂର୍ଯ୍ୟଦେବଙ୍କ ଭଳି ତେଜୀୟାନ୍ ଥିଲେ ସେ ।

ପ୍ରଶ୍ନ-୫୮ : ତାଙ୍କ ପତ୍ନୀଙ୍କର ଦୋଷ-ଗୁଣ ବିଷୟରେ କିଛି ଜଣାଥିଲା କି ?

**ଭିକ୍ଷୁକୋ ବିତ୍ତବାନ୍ ଲୋକେ ତତ୍‌ପ୍ରିୟା ଧୁନ୍ଧୁଲୀ ସ୍ମୃତା ।**
**ସ୍ୱବାକ୍ୟ ସ୍ଥାପିକା ନିତ୍ୟଂ ସୁନ୍ଦରୀ ସୁକୁଳ-ଉଦ୍‌ଭବା ।୧୮।**

ଉତ୍ତର : ଆତ୍ମଦେବ ବ୍ରାହ୍ମଣ ଧନବାନ୍ ଥିଲେ । ତଥାପି ବ୍ରାହ୍ମଣକୁଳ ଜାତ ବୋଲିବୃତ୍ତି ରକ୍ଷା ପାଇଁ ଭିକ୍ଷା ମଧ୍ୟ ମାଗୁଥିଲେ । ତାଙ୍କ ପତ୍ନୀଙ୍କର ନାମ ଧୁନ୍ଧୁଲୀ (ଅବିଦ୍ୟା ଅନ୍ଧକାରରେ ବୁଲୁଥିବା) ଯୁକ୍ତିତର୍କରେ ସର୍ବଦା ଅଟଳ, ଅମାନିଆ ଓ

ଢିବ୍‌ଖୋର ସ୍ୱଭାବଯୁକ୍ତା । ଦେଖିବାକୁ ଖୁବ୍ ସୁନ୍ଦରୀ ଓ ଉଚ୍ଚକୁଳରେ ଜନ୍ମିତ କନ୍ୟା ଥିଲେ ଧୁନ୍ଧୁଲୀ ।

ପ୍ରଶ୍ନ-୫୯ : ସର୍ବଦା ସଂସାରୀ ସୁଖ ମଗ୍ନା, ଦୟାହୀନା, ବହୁବାଦିନୀ, ଗୃହକର୍ମ ନିପୁଣା, କୃପଣା, କଳହପ୍ରିୟା ପତ୍ନୀଙ୍କୁ ଧରି ଆତ୍ମଦେବ ବ୍ରାହ୍ମଣ ତାଙ୍କର ଦାମ୍ପତ୍ୟ ଜୀବନ ଭୋଗ ବିଳାସରେ କଟାଇଦେଲେ । ତଥାପି କୌଣସି ସଂସାରୀ ଅଭାବ ହେତୁ ବୃଦ୍ଧା ଅବସ୍ଥାରେ ସେ ଅଶାନ୍ତି ଜନିତ ପୀଡ଼ା ପାଉଥାନ୍ତି । ସୁତରାଂ ଧର୍ମମାର୍ଗରେ ଯାଇ ଅଧା ଅଧି ସଂପତ୍ତି ଗୋଦାନ, ଭୂଦାନ, ସ୍ୱର୍ଣ୍ଣଦାନ, ଅନ୍ନ-ବସ୍ତ୍ର ଦାନାଦିରେ ଖର୍ଚ୍ଚ କରି ଅନେକ ପୁଣ୍ୟ ଅର୍ଜ୍ଜନ କରିଥିଲେ ।

ତଥାପି କେଉଁ କାରଣରୁ ଅନେକ ଦାନ ପୁଣ୍ୟର ଅଧିକାରୀ ବ୍ରାହ୍ମଣ ଆତ୍ମଦେବ ଅତ୍ୟନ୍ତ (ଭୃଶଂ) ଚିନ୍ତାତୁର ଥିଲେ ?

**ଧନାର୍ଦ୍ଧଂ ଧର୍ମ ମାର୍ଗେଣ ତାଭ୍ୟାଂ ନୀତଂ ତଥାପି ଚ ।**
**ନ ପୁତ୍ରୋ ନାପି ବା ପୁତ୍ରୀ ତତଃ ଚିନ୍ତାତୁରୋ ଭୃଶମ୍ ।୨୨।**

ଉତ୍ତର : କୋଳରେ ସନ୍ତାନଟିଏ ନଥିବାରୁ ।

ପ୍ରଶ୍ନ-୬୦ : ଅତ୍ୟନ୍ତ ଦୁଃଖରେ ବ୍ୟାକୁଳ ହୋଇ ସନ୍ତାନହୀନ ଆତ୍ମଦେବ କଲେ କ'ଣ?

**ଏକଦା ସ ଦ୍ୱିଜୋ ଦୁଃଖାତ୍ ଗୃହଂ ତ୍ୟକ୍ତ୍ୱା ବନଂ ଗତଃ ।**
**ମଧ୍ୟାହ୍ନେ ତୃଷିତୋ ଜାତଃ ତଡ଼ାଗଂ ସମୁପେୟିବାନ୍ ।୨୩।**

ଉତ୍ତର : ଦିନେ ସେ ଅପୁତ୍ରିକ ଦୁଃଖ ଶୋକରେ ବ୍ୟାକୁଳ ହୋଇ ଗୃହ ତ୍ୟାଗ କଲେ । ନିର୍ଜ୍ଜନ ବଣ ମଧ୍ୟରେ ଘୂରି ବୁଲୁଥାନ୍ତି । ମଧ୍ୟାହ୍ନ ବେଳେ ତୃଷାର୍ତ୍ତ ହୋଇ ଗୋଟିଏ ଜଳାଶୟ ନିକଟରେ ପହଞ୍ଚିଲେ (ସମୁପେୟିବାନ୍) ।

ପ୍ରଶ୍ନ-୬୧ : ଜଳପାନ କରିସାରି ସେ ଦେଖିଲେ ପୋଖରୀ କୂଳରେ ଜଣେ ସନ୍ଥ ମହାତ୍ମା । ଭାବିଲେ, ଅହୋ ଭାଗ୍ୟ ! ଗୋଦାନ ପୁଣ୍ୟର ଫଳ ଉଦୟ ହେଲା ଏବେ । ସେତେବେଳେ ଖୁସିରେ କ'ଣ କଲେ ଆତ୍ମଦେବ ବ୍ରାହ୍ମଣ ?

**ଦୃଷ୍ଟ୍ୱା ପୀତ ଜଳଂ ତଂ ତୁ ବିପ୍ରୋ ଯାତଃ ତଦନ୍ତିକମ୍ ।**
**ନତ୍ୱା ଚ ପାଦୟୋଃ ତସ୍ୟ ନିଃଶ୍ୱସନ୍ ସଂସ୍ଥିତଃ ପୁରଃ ।୨୪।**

ଉତ୍ତର : କାଳ ବିଳମ୍ବ ନକରି ତାଙ୍କ ପାଖକୁ ଗଲେ । ପାଦତଳେ ବିନୀତ

ହୋଇ ପ୍ରଣାମ କରି ସମ୍ମୁଖ (ପୁରଃ)ରେ ଦଣ୍ଡାୟମାନ ହେଲେ । ବିକଳ ହୋଇ କାନ୍ଦିବାରେ ଲାଗିଲେ । ଉଦ୍ଦେଶ୍ୟ ଥିଲା ସାଧୁଙ୍କର କୃପା ଭିକ୍ଷା ।

**ବ୍ରାହ୍ମଣ ଉବାଚ**

ପ୍ରଶ୍ନ-୬୨ : ସାଧୁ ମହାତ୍ମା କାନ୍ଦିବାର କାରଣ ପଚାରିଲେ ତାଙ୍କୁ । ଉତ୍ତରରେ ଆତ୍ମଦେବ ନିଜର କି ପରିଚୟ ଦେଲେ ତାଙ୍କୁ ?

**ଧିକ୍ ଜୀବିତଂ ପ୍ରଜାହୀନଂ ଧିକ୍ ଗୃହଂ ଚ ପ୍ରଜାଂ ବିନା ।**
**ଧିକ୍ ଧନଂ ଚ-ଅନପତ୍ୟସ୍ୟ ଧିକ୍ କୁଳଂ ସନ୍ତତିଂ ବିନା ।।୨୯।।**

ଉତ୍ତର : ନିଜକୁ ଜଣେ ଧନୀ ଅଥଚ ସନ୍ତାନହୀନ ହତଭାଗ୍ୟ ବ୍ରାହ୍ମଣ ବୋଲି କହି ନିଜ ଗୃହସ୍ଥାଶ୍ରମ ଜୀବନ ଓ ଧନକୁ ଶତ ଧିକ୍କାର କଲେ ।

ପ୍ରଶ୍ନ-୬୩ : ଆତ୍ମଦେବ ଆଉ କେଉଁ କେଉଁ କାରଣରୁ ନିଜକୁ ହତଭାଗା ବୋଲି କହିଲେ ?

**ପାଲ୍ୟତେ ଯା ମୟା ଧେନୁଃ ସା ବନ୍ଧ୍ୟା ସର୍ବଥା ଭବେତ୍ ।**
**ଯୋ ମୟା ରୋପିତୋ ବୃକ୍ଷଃ ସୋଽପି ବନ୍ଧ୍ୟାତ୍ୱଂ ଆଶ୍ରୟେତ୍ ।୩୦।**

ଉତ୍ତର : କହିଲେ-'ମୋ ଦୁର୍ଭାଗ୍ୟ ଦେଖନ୍ତୁ ମହାତ୍ମନ୍ । ମୁଁ ଗାଈଟିଏ ପାଳିଲେ ସେ ବନ୍ଧ୍ୟା ହେଉଛି । ଘର ବାଡ଼ିରେ ବୃକ୍ଷ ଲତା ଲଗାଇଲେ ସେଥିରେ ଫଳଟିଏ ଫଳୁନି କି ଫୁଲଟିଏ ଫୁଟୁନାହିଁ । ମୋର ଦୁଃଖ ସୀମାହୀନ' ।

ପ୍ରଶ୍ନ-୬୪ : ଆତ୍ମଦେବଙ୍କର ଦୁର୍ଭାଗ୍ୟର ସୀମା ଏତିକି ନୁହେଁ । ଏହା ଆହୁରି ଅନେକ ଦୂରଯାଏ ଲମ୍ବିଛି ବୋଲି କହିଲେ । ଘରକୁ ଫଳଟିଏ ଆଣିଲେ ପଚିସଢ଼ି ଯାଉଛି । ଫୁଲଟିଏ ଘରକୁ ଆସୁ ଆସୁ ମଉଳିଯାଉଛି । ସୁତରାଂ ସେ ଦୁଃଖରେ ଭାଙ୍ଗି ପଡ଼ିଛନ୍ତି । ଗୃହତ୍ୟାଗ କରି ଆତ୍ମହତ୍ୟା କରିବାକୁ ବସିଛନ୍ତି । ଏ ଇତିହାସ ଶୁଣି ସାଧୁଙ୍କର ହୃଦୟ ବିଗଳିତ ହୋଇଗଲା । ସେ କ'ଣ କହି ଆତ୍ମଦେବଙ୍କୁ ସାନ୍ତ୍ୱନା ଦେଲେ ?

**ଯତିଃ ଉବାଚ**

**ଶୃଣୁ ବିପ୍ର ମୟା ତେଽଦ୍ୟ ପ୍ରାରବ୍ଧଂ ତୁ ବିଲୋକିତମ୍ ।**
**ସପ୍ତଜନ୍ମ-ଅବଧି ତବ ପୁତ୍ରୋ ନୈବ ଚ ନୈବ ଚ ।୩୫।**

ଉତ୍ତର : ସାଧୁ ମହାତ୍ମା ତାଙ୍କ ଯୋଗ ଶକ୍ତି ବଳରେ ବ୍ରାହ୍ମଣଙ୍କ ଲଲାଟ

ରେଖା ପଢ଼ି ତାଙ୍କୁ କହିଲେ- 'ତୁମର କେବଳ ଏ ଜନ୍ମ ନୁହେଁ, ଆସନ୍ତା ସାତ ଜନ୍ମ ପର୍ଯ୍ୟନ୍ତ ସନ୍ତାନ ପ୍ରାପ୍ତି ସୁଖକର ହେବ ନାହିଁ । ସୁତରାଂ ତୁମେ ପୁତ୍ର ସୁଖ ଆସକ୍ତି ତ୍ୟାଗ କରି ବରଂ ନିଜ ବିବେକ ଜାଗ୍ରତ କରି ଭଗବତ୍ ଆସକ୍ତିରେ ଲାଗି ପଡ଼' ।

ଦୁଇଟି ଉଦାହରଣ ମଧ୍ୟ ଦେଲେ ଆତ୍ମଦେବଙ୍କୁ । ଭାଗ୍ୟରେ ନଥାଇ ହଠ କରି ରାଜା ସଗର ଓ ରାଜା ଅଙ୍ଗ ମଧ୍ୟ ପୁତ୍ର ପାଇ ସୁଖ ବଦଳରେ ଅଶେଷ ଦୁଃଖ ପାଇଥିଲେ ।

**ବ୍ରାହ୍ମଣ ଉବାଚ**

ପ୍ରଶ୍ନ-୬୫ : ତଥାପି ଆତ୍ମଦେବ ନଛୋଡ଼ ବନ୍ଧା । ପୁଣି ପୁତ୍ର ପାଇଁ ହଠ କଲେ । କହିଲେ, 'ସନ୍ନ୍ୟାସ ଜୀବନ ଶୁଷ୍କ, ଗୃହସ୍ଥ ଜୀବନ ପୁତ୍ର କନ୍ୟା ଯୁକ୍ତ ହେଲେ ସରସ ବୋଲି ଯୁକ୍ତି ବାଢ଼ିଲେ । ନିଜର ପ୍ରବଳ ଅନିଚ୍ଛା ସତ୍ତ୍ୱେ ସାଧୁ କ'ଣ ଉପାୟ କଲେ ସେଠାରେ ?

**ତସ୍ୟ-ଆଗ୍ରହଂ ସମାଲୋକ୍ୟ ଫଳଂ ଏକଂ ସ ଦତ୍ତବାନ୍ ।**
**ଇଦଂ ଭକ୍ଷୟ ପତ୍ନ୍ୟା ତ୍ୱଂ ତତଃ ପୁତ୍ରୋ ଭବିଷ୍ୟତି ।୪୧।**

ଉତ୍ତର : ମହାତ୍ମା ଝୁଲା ମୁଣିରୁ ଅଭିମନ୍ତ୍ରିତ ଫଳଟିଏ ଦେଇ କହିଲେ- ଯାଅ,ଏହାକୁ ପତ୍ନୀଙ୍କୁ ଦେଇ ଖାଇବାକୁ କହିବ । ନିଶ୍ଚୟ ସନ୍ତାନଟିଏ ହେବ ।

ପ୍ରଶ୍ନ-୬୬ : ଗୃହକୁ ଫେରିଗଲେ ବ୍ରାହ୍ମଣ । ପତ୍ନୀଙ୍କ ହସ୍ତରେ ଫଳଟି ଦେଇ ଖାଇଲେ ସନ୍ତାନ ହେବ ବୋଲି କହିଲେ । କିନ୍ତୁ ଏଣେ ଦୁଷ୍ଟବୁଦ୍ଧି ସୁନ୍ଦରୀ ଧୁନ୍ଧୁଲୀ ଗର୍ଭ ବେଦନା ସହିବାକୁ ନାରାଜ । ମନେ ମନେ ତର୍କ କରି ସେ ଫଳଟି ନ ଖାଇ ରଖିଦେଲେ । ପରେ ପତିଦେବ ପଚାରନ୍ତେ କ'ଣ କହିଲେ ?

**ଏବଂ କୁତର୍କ ଯୋଗେନ ତତ୍ ଫଳଂ ନୈବ ଭକ୍ଷିତମ୍ ।**
**ପତ୍ୟା ପୃଷ୍ଟଂ ଫଳଂ ଭୁକ୍ତଂ ଭୁକ୍ତଂ ଚ-ଇତି ତୟା-ଈରିତମ୍ ।୫୦।**

ଉତ୍ତର : ହଁ ଖାଇଛି, ଖାଇଛି ବୋଲି ମିଛରେ ପତିଙ୍କୁ କହିଥିଲେ । ଆତ୍ମଦେବ ଆଉ ସେକଥାରେ ମୁଣ୍ଡ ଖେଳେଇ ନଥିଲେ ।

ପ୍ରଶ୍ନ-୬୭ : ଦିନେ ସେଇ ନଗରରେ ରହୁଥିବା ଧୁନ୍ଧୁଲୀଙ୍କର ବିବାହିତା ସାନ ଭଉଣୀ ତାଙ୍କ ପାଖକୁ ବୁଲିବାକୁ ଆସିଥିଲେ । ସେତେବେଳକୁ ସେ ଗର୍ଭବତୀ ଥାଆନ୍ତି । ସାନ ଭଉଣୀ ସହିତ ସଲା ସୁତରା କରି ତାଙ୍କୁ ପଇସା ଲୋଭ ଦେଖାଇଲେ । ତାଙ୍କର ସନ୍ତାନ ପ୍ରସବ ପରେ ନିଜ ଘରକୁ ଆଣି ନିଜର ସନ୍ତାନ

କରି ପାଳିବାକୁ ଉପାୟ ପାଞ୍ଚିଲେ । ଧୁନ୍ଧୁଲୀ ମିଛରେ ନିଜକୁ ଗର୍ଭବତୀ ବୋଲି କହି ବୁଲିବେ । ତାଙ୍କ ଭଉଣୀ କହିଲେ-ମୋ ଗର୍ଭ ନଷ୍ଟ ହୋଇଗଲା ବୋଲି ମୁଁ କହିଦେବି । ସୁତରାଂ ତୁମେ ଏ ଫଳଟିକୁ ନିଜେ ନଖାଇ, ନ ଫିଙ୍ଗି ବରଂ ତୁମ ପୋଷା ଗାଈକୁ ଏବେ (ସାଂପ୍ରତଂ) ଖାଇବାକୁ ଦେଇଦିଅ । ଏଭଳି ବିକଳ୍ପ ପ୍ରସ୍ତାବରେ ଧୁନ୍ଧୁଲୀ କଲେ କ'ଣ ?

**ଫଳଂ ଅର୍ପୟ ଧେନ୍ୱୈ ତ୍ୱଂ ପରୀକ୍ଷାର୍ଥଂ ତୁ ସାଂପ୍ରତମ୍ ।**
**ତତ୍ ତତ୍ ଆଚରିତଂ ସର୍ବଂ ତଥା-ଏବ ସ୍ତ୍ରୀ ସ୍ୱଭାବତଃ ।୫୫।**

ଉତ୍ତର : ନାରୀ ଅବଳା ପାଣି ଅବଳା । ଭଉଣୀ ପ୍ରସ୍ତାବକୁ ଅକ୍ଷରେ ଅକ୍ଷରେ ପାଳନ କଲେ ଧୁନ୍ଧୁଲୀ ।

ପ୍ରଶ୍ନ-୬୮ : ସମୟ ହେଲାରୁ ଧୁନ୍ଧୁଲୀଙ୍କ ଭଉଣୀଙ୍କର ଗର୍ଭରୁ ବାଳକଟିଏ ଜନ୍ମ ହେଲା । ବାଳକର ପିତା ଲୁଚେଇ ପିଲାଟିକୁ ନେଇ ଧୁନ୍ଧୁଲୀକୁ ଦେଇଦେଲେ । ଆତ୍ମଦେବ ବ୍ରାହ୍ମଣ କିମ୍ୱା ସାଇ ପଡ଼ିଶା କେହି ଏ ରହସ୍ୟ ଜାଣି ପାରିଲେନି । ବ୍ରାହ୍ମଣ ମଧ୍ୟ ପୁତ୍ର ପ୍ରାପ୍ତି ଖୁସିରେ ଦାନ ଧର୍ମ ଆଦି କଲେ । ବାଳକର ଜାତ କର୍ମ ସଂସ୍କାର ଧୁମ୍‌ଧାମ୍‌ରେ ପାଳିତ ହେଲା । ନାଚ, ଗୀତ, ସୁଆଙ୍ଗ ଇତ୍ୟାଦି ଅନେକ ମଙ୍ଗଳ କୃତ୍ୟ ଅନୁଷ୍ଠାନ କଲେ ଆତ୍ମଦେବ । ଧୁନ୍ଧୁଲୀ ମଧ୍ୟ ବାଳକଟିକୁ ଖୁବ୍ ସଯତ୍ନରେ ଲାଳନପାଳନ କଲେ । ଧୁନ୍ଧୁଲୀ ନିଜ ଇଚ୍ଛାରେ ପୁତ୍ରର ନାମ ରଖିଲେ ଧୁନ୍ଧୁକାରୀ । ତେଣେ ଗାଈ ଖାଇଥିବା ସାଧୁ ଦେଇଥିବା ଫଳର ଅବସ୍ଥା କ'ଣ ହେଲା ?

**ତ୍ରିମାସେ ନିର୍ଗତେ ଚ-ଅଥ ସା ଧେନୁଃ ସୁଷୁବେଽର୍ଭକମ୍ ।**
**ସର୍ବାଙ୍ଗ ସୁନ୍ଦରଂ ଦିବ୍ୟଂ ନିର୍ମଳଂ କନକ ପ୍ରଭମ୍ ।୬୨।**

ଉତ୍ତର : ତିନିମାସ ପରେ ସେ ଗାଈ ଏକ ହୃଷ୍ଟ-ପୁଷ୍ଟ ସୁନ୍ଦର ଓ ସୁନାପରି ଗୋରା ମନୁଷ୍ୟ ଶିଶୁଟିଏ ଜନ୍ମ କଲା ।

ପ୍ରଶ୍ନ-୬୯ : ଏ ଆଶ୍ଚର୍ଯ୍ୟ କଥା ଦେଖି ଆତ୍ମଦେବ ଭାରି ପ୍ରସନ୍ନ ହେଲେ । ତାର ଜାତକର୍ମ ସଂସ୍କାର ଆଦି ମଧ୍ୟ କଲେ । ଅନେକ ଲୋକ ଘରେ ଆସି ଜମା ହେଲେ । ସମସ୍ତେ ଏ ରହସ୍ୟକୁ ବିଧାତାର କୌତୁକ ମନେ କଲେ । ସେହି ଗୋଗର୍ଭ ଜାତ ବ୍ରାହ୍ମଣ ପିଲାଟିର କାନ ଦୁଇଟି ମଣିଷ କାନ ପରି ନ ହୋଇ ଗାଈର କାନ ଭଳି ଠିଆ ଠିଆ ହୋଇଥିବାରୁ ତାର ନାମ ଦେଲେ ଗୋକର୍ଣ୍ଣ । ବଡ଼ ହେଲାରୁ

ସେହି ଧୁନ୍ଧୁକାରୀ ଓ ଗୋକର୍ଣ୍ଣ ଦୁହିଁଙ୍କର ସ୍ୱଭାବ କି ଭଳି ହେଲା ?

**କିୟତ୍ କାଳେନ ତୌ ଜାତୌ ତରୁଣୌ ତନୟୌ ଉଭୌ ।**
**ଗୋକର୍ଣ୍ଣଃ ପଣ୍ଡିତୋ ଜ୍ଞାନୀ ଧୁନ୍ଧୁକାରୀ ମହା ଖଳଃ ।୬୬।**

ଉତ୍ତର : ତରୁଣ ଅବସ୍ଥାରେ ଗୋକର୍ଣ୍ଣ ମହାଜ୍ଞାନୀ ହେଲେ ଓ ଧୁନ୍ଧୁକାରୀ ହେଲା ମହା ଦୁଷ୍ଟ ସ୍ୱଭାବର । କାରଣ ଉଭୟଙ୍କର ଜନ୍ମ ଜାତ ସଂସ୍କାରରେ ତୁଳସୀ ଓ ବିଛୁଆଦିର ସ୍ୱଭାବ ଲୁଚି ରହିଥିଲା । ବୀଜ ଯେପରି ଫଳ ଫଳେ ସେହିପରି ।

ପ୍ରଶ୍ନ-୭୦ : ଧୁନ୍ଧୁକାରୀ ବ୍ରାହ୍ମଣ ପୁତ୍ର ହୋଇ ମଧ୍ୟ ହିଂସ୍ର, ସ୍ନାନ ଶୌଚ କ୍ରିୟା ହୀନ, କ୍ରୋଧୀ, ବାଳ ହତ୍ୟାକାରୀ, ପରପୀଡ଼ନକାରୀ ହୋଇ ଚାଣ୍ଡାଳ ସଙ୍ଗ କରି ଆହୁରି କି କି ଘୋର ଅନ୍ୟାୟ କରିବସିଲେ ?

**ତେନ ବେଶ୍ୟା କୁସଙ୍ଗେନ ପିତ୍ର୍ୟଂ ବିତ୍ତଂ ତୁ ନାଶିତମ୍ ।**
**ଏକଦା ପିତରୌ ତାଡ଼୍ୟ ପାତ୍ରାଣି ସ୍ୱୟଂ ଆହରତ୍ ।୭୦।**

ଉତ୍ତର : ବେଶ୍ୟା ସଙ୍ଗ କଲେ । ପିତାଙ୍କ କଷ୍ଟ ଅର୍ଜିତ ଧନ ଉଡ଼ାଇଲେ । ପିତାମାତାଙ୍କୁ ମାରି ପିଟି ଘରୁ ବାସନ କୁସନ ବିକ୍ରି କରି ପକାଇଲେ । ନାନା ବଦଖର୍ଚ୍ଚରେ ମାତିଲେ ।

ପ୍ରଶ୍ନ-୭୧ : ଆତ୍ମଦେବ ଅତ୍ୟନ୍ତ ମନସ୍ତାପରେ ଦିନ କଟାଇ ଭାବିଲେ ବରଂ ଏହାର ମା' ବନ୍ଧ୍ୟା ହୋଇଥିଲେ କୁପୁତ୍ର ଦାଉରୁ ରକ୍ଷା ମିଳିଥାନ୍ତା । ବ୍ରାହ୍ମଣ କିଂ କର୍ତ୍ତବ୍ୟ ବିମୂଢ଼ ହୋଇ ଆତ୍ମହତ୍ୟା କରିବାକୁ ବାହାରିବାରୁ ପୁତ୍ର ଗୋକର୍ଣ୍ଣ କ'ଣ କ'ଣ ବୁଝାଇଲେ ତାଙ୍କୁ ?

**ତଦାନୀଂ ତୁ ସମାଗତ୍ୟ ଗୋକର୍ଣ୍ଣୋ ଜ୍ଞାନ ସଂଯୁତଃ ।**
**ବୋଧୟାମାସ ଜନକଂ ବୈରାଗ୍ୟଂ ପରିଦର୍ଶୟନ୍ ।୭୩।**

ଉତ୍ତର : ମହାଜ୍ଞାନୀ ଗୋକର୍ଣ୍ଣ ତାଙ୍କୁ କଲ୍ୟାଣକାରୀ ବୈରାଗ୍ୟ ମାର୍ଗ ଦର୍ଶନ କରାଇଲେ । କହିଲେ, ''ହେ ପିତା,ଦୁଃଖ କରନ୍ତୁ ନାହିଁ । ସଂସାରରେ ଚକ୍ରବର୍ତ୍ତୀ ରାଜା, ସ୍ୱର୍ଗରେ ଇନ୍ଦ୍ର ମଧ୍ୟ ବୈରାଗ୍ୟ ବିହୀନ ହୋଇ କଷ୍ଟ ଭୋଗନ୍ତି । ସୁତରାଂ ଆପଣଙ୍କ ପାଇଁ ଏବେ ବୈରାଗ୍ୟକୁ ଆଦରିବା ସମୟ ଆସିଯାଇଚି ।

ହରିଭଜନ ଲାଗି ଆପଣ ବନଗମନ କରନ୍ତୁ ।'' ଗୋକର୍ଣ୍ଣ ତାଙ୍କୁ ବାନପ୍ରସ୍ଥର ଧର୍ମ ସବିସ୍ତାର ଉପଦେଶ ଦେଲେ । ସେତେବେଳକୁ ଆତ୍ମଦେବଙ୍କୁ ୬୦ ବର୍ଷ । ସୁତରାଂ ସେ ତତ୍କ୍ଷଣାତ୍ ବନଗମନ କଲେ । ବନ ମଧ୍ୟରେ ଦଶମ ସ୍କନ୍ଧ ଭାଗବତ ପାଠ କରି କରି ଶ୍ରୀକୃଷ୍ଣଚନ୍ଦ୍ରଙ୍କୁ ପ୍ରାପ୍ତ ହୋଇ ଜୀବନ ଧନ୍ୟ କଲେ ।

## ଅଥ ୫ମ ଅଧ୍ୟାୟଃ

### (ଧୁନ୍ଧୁକାରୀଙ୍କର ପ୍ରେତ ଶରୀର ପ୍ରାପ୍ତି ଓ ଭାଗବତ ଶ୍ରବଣରେ ମୁକ୍ତି)

**ସୂତ ଉବାଚ**

ପ୍ରଶ୍ନ-୭୨ : ପିତା ବନକୁ ଚାଲିଗଲା ପରେ ପୁତ୍ର ଧୁନ୍ଧୁକାରୀ ଏଥର କ'ଣ କଲେ ?

**ପିତରି-ଉପରତେ ତେନ ଜନନୀ ତାଡ଼ିତା ଭୃଶମ୍ ।**
**କ୍ୱ ବିତ୍ତଂ ତିଷ୍ଠତି ବ୍ରୂହି ହନିଷ୍ୟେ ଲତୟା ନଚେତ୍ ।୧।**

ଉତ୍ତର : ମା'ଙ୍କୁ ପିଟିଲେ । ଧନ କେଉଁଠି ଅଛି ନ କହିଲେ ନିଆଁ ଖୁଣ୍ଟା ଚେଙ୍କ ଦେବାକୁ ଧମକାଇଲେ । ସକଳ ଧନ ସମ୍ପତ୍ତି ବ୍ୟସନରେ ଉଡ଼ାଇଦେଲେ ।

ପ୍ରଶ୍ନ-୭୩ : ଏ ଅବସ୍ଥାରେ ମା' ଧୁନ୍ଧୁଲୀ ରାତିରେ କୂଅକୁ ଡ଼େଇଁ ଆତ୍ମହତ୍ୟା କଲେ । ଦ୍ୱିତୀୟ ପୁତ୍ର ଗୋକର୍ଣ୍ଣଙ୍କର କି ଅବସ୍ଥା ହେଲା ?

**ଗୋକର୍ଣ୍ଣଃ ତୀର୍ଥ ଯାତ୍ରା-ଅର୍ଥଂ ନିର୍ଗତେ ଯୋଗ-ସଂସ୍ଥିତଃ ।**
**ନ ଦୁଃଖଂ ନ ସୁଖଂ ତସ୍ୟ ନ ବୈରୀ ନ-ଅପି ବାନ୍ଧବାଃ ।୩।**

ଉତ୍ତର : ଜନ୍ମଜାତ ଯୋଗ ସିଦ୍ଧ ଗୋକର୍ଣ୍ଣ ସୁଖ-ଦୁଃଖ ଉଭୟରେ ଆନନ୍ଦିତ । ତାଙ୍କୁ ଶତ୍ରୁ-ମିତ୍ର ଉଭୟେ ଏକାକାର ବୋଧ ହେଉଥିଲେ । ଧୁନ୍ଧୁକାରୀ ଧନ୍ଦା ଦେଖି ରହିବା ପାଇଁ ବନ-ଘର ତାଙ୍କୁ ଏକାଭଳି ମନେ ହେଲା । ସେ ତୁରନ୍ତ ତୀର୍ଥ ଯାତ୍ରାରେ ବାହାରିଗଲେ ।

ପ୍ରଶ୍ନ-୭୪ : ଭାଇ ଗୋକର୍ଣ୍ଣ ଘର ଛାଡ଼ି ଦିଅନ୍ତେ ଧୁନ୍ଧୁକାରୀ କ'ଣ କଲେ ?

**ଧୁନ୍ଧୁକାରୀ ଗୃହେଽତିଷ୍ଠତ୍ ପଞ୍ଚ ପଣ୍ୟବଧୂ ବୃତଃ ।**

**ଅତି-ଉଗ୍ର କର୍ମକର୍ତ୍ତା ଚ     ତତ୍ ପୋଷଣ ବିମୂଢ଼ଧୀଃ ଚ ।୪।**

ଉତ୍ତର : ସେ ପାଞ୍ଚଜଣ ବେଶ୍ୟାଙ୍କୁ ଆଣି ଘରେ ରଖିଲେ । ମୁର୍ଖ ଧୁନ୍ଧୁକାରୀ ସେମାନଙ୍କୁ ପୋଷିବାକୁ ଚୋରୀ,ଡ଼କାୟତି, ହିଂସା ଆଦି ଗର୍ହିତ କର୍ମରେ ବୁଡ଼ିଗଲେ । ଧରାକୁ ସରା ମନେ କଲେ । ତାଙ୍କର ଉତ୍ପାତ ସୀମା ଲଙ୍ଘନ କଲା ।

ପ୍ରଶ୍ନ-୭୫ : ବେଶ୍ୟାମାନେ ଶେଷରେ ଜାଣିଲେ ଯେ ଧୁନ୍ଧୁକାରୀ ଚୋରୀ,ଡ଼କାୟତି କରି ସେମାନଙ୍କୁ ଶାଢ଼ୀ ଗହଣାଦି ବିଳାସ ଜିନିଷ ଯୋଗାଉଛନ୍ତି । ଦିନେ ନା ଦିନେ ଧରାପଡ଼ିଲେ ଧୁନ୍ଧୁକାରୀ ରାଜାଙ୍କ ଦ୍ୱାରା ଦଣ୍ଡିତ ହେବେ । ସେମାନେ ମଧ୍ୟ ଦୁଃଖ କଷ୍ଟ ଭୋଗିବେ । ସୁତରାଂ ବେଳ ଥାଉ ବନ୍ଧ ବାନ୍ଧିବାକୁ ନିଷ୍ପତ୍ତି ନେଲେ । ଥରେ ରାତିରେ ଶୋଇବା ଅବସ୍ଥାରେ ସମସ୍ତେ ମିଶି ତାଙ୍କ ବେକରେ ଦଉଡ଼ି ବାନ୍ଧି ମାରିବାକୁ ଚେଷ୍ଟା କଲେ । ହେଲେ ସେଥିରେ ସେ ନ ମରିବାରୁ ପୁଣି କି କି ଭୟଙ୍କର ନାରକୀୟ ଉପାୟ କଲେ ସେମାନେ ?

**ତପ୍ତ-ଅଙ୍ଗାର ସମୂହାନ୍ ଚ     ତତ୍ ମୁଖେ ହି ବିଚିକ୍ଷିପୁଃ ।**
**ଅଗ୍ନିଜ୍ୱାଳା-ଅତି ଦୁଃଖେନ     ବ୍ୟାକୁଲୋ ନିଧନଂ ଗତଃ ।୧୧।**

ଉତ୍ତର : ତାଙ୍କ ମୁଖରେ ଜଳନ୍ତା ଅଙ୍ଗାର ଢ଼ାଳିଦେଲେ । ବିଚରା ଛଟପଟ ହୋଇ ଅତି ବିକଳରେ ପ୍ରାଣତ୍ୟାଗ କଲେ ।

ପ୍ରଶ୍ନ-୭୬ : ବେଶ୍ୟାମାନେ ତାଙ୍କ ମୃତ ଶରୀରକୁ ଗାତ କରି ଘରେ ପୋତିଦେଲେ । ଧନ ସମ୍ପତ୍ତି ଧରି ପଳାୟନ କଲେ । ଧୁନ୍ଧୁକାରୀ ନିଜ କୁକର୍ମର ଫଳ ସ୍ୱରୂପ ଭୟଙ୍କର ପ୍ରେତ ହେଲେ । ବାୟୁମୟ ରୂପ ଧରି କ୍ଷୁଧା ତୃଷାରେ ଆତୁର ହେଲେ । ତାଙ୍କୁ କେଉଁଠି ହେଲେ ଶାନ୍ତି ମିଳିଲାନି । ଶାନ୍ତିପାଇଁ ଏଣେ ତେଣେ ଧାଉଁଥାନ୍ତି ସେ ସୂକ୍ଷ୍ମଲୋକରେ । ଗୋକର୍ଣ୍ଣ ଲୋକମୁଖରୁ ଭାଇଙ୍କ ମୃତ୍ୟୁ ଖବର ଶୁଣିଲେ । ଗୟାରେ ଶ୍ରାଦ୍ଧ ଆଦି ସମ୍ପନ୍ନ କରି ତାଙ୍କ ପାଇଁ ପିଣ୍ଡଦାନ କଲେ । ସେ ଅନେକ ତୀର୍ଥ ଜାଗାରେ ପହଞ୍ଚିଲେ । ତାଙ୍କ ପାଇଁ ଅନେକ ଶ୍ରାଦ୍ଧ ମଧ୍ୟ କରୁଥାନ୍ତି । ଶେଷରେ ଘରକୁ ଫେରି (ସମୁପେୟିବାନ୍) କ'ଣ ଦେଖିଲେ ?

**ଏବଂ ଭ୍ରମନ୍ ସ ଗୋକର୍ଣ୍ଣଃ     ସ୍ୱପୁରଂ ସମୁପେୟିବାନ୍ ।**
**ରାତ୍ରୌ ଗୃହାଙ୍ଗନେ ସ୍ୱପ୍ତୁଂ     ଆଗତୋଽଲକ୍ଷିତଃ ପରୈଃ ।୨୦।**

ଉତ୍ତର : ଅନ୍ୟମାନେ ଧୁନ୍ଧୁକାରୀଙ୍କ ପ୍ରେତ ଆତ୍ମା ବିଷୟରେ କିଛି ଜାଣିପାରୁ ନଥାନ୍ତି । ରାତିରେ ଗୋକର୍ଣ୍ଣଙ୍କୁ କିନ୍ତୁ ସେ ପ୍ରେତ ରୂପରେ ଦେଖା ଦେଲେ ।

ପ୍ରଶ୍ନ-୭୭ : ନିଶା ଅର୍ଦ୍ଧରେ ମେଣ୍ଢା, ହାତୀ, ମହିଷ, ଇନ୍ଦ୍ର, ଅଗ୍ନି ରୂପ ଦେଖାଇ ଶେଷରେ ମଣିଷ ରୂପ ମଧ୍ୟ ଧୁନ୍ଧୁକାରୀଙ୍କର ପ୍ରେତ ଦେଖାଇଲା । ଗୋକର୍ଣ୍ଣ ଡ଼ରିନଯାଇ କିପରି ତାର ପରିଚୟ ପଚାରିଲେ ?

**ଗୋକର୍ଣ୍ଣ ଉବାଚ**

**କଃ ତ୍ୱଂ ଉଗ୍ରତରୋ ରାତ୍ରୌ କୁତୋ ଯାତୋ ଦଶାଂ ଇମାମ୍ ।**
**କିଂବା ପ୍ରେତଃ ପିଶାଚୋ ବା ରାକ୍ଷସୋଽସି-ଇତି ଶଂସ ନଃ ।୨୪।**

ଉତ୍ତର : ସେ ପଚାରିଲେ, "ଏଭଳି ଅର୍ଦ୍ଧ ରାତ୍ରରେ କିଏ ତୁମେ ଏପରି ଭିନ୍ନ ଭିନ୍ନ ରୂପ ଧରି ବୁଲୁଚ ? ତୁମର ଏ ଦଶା ହେଲା କିପରି ? ତୁମେ ପ୍ରେତ, ପିଶାଚ ନା ରାକ୍ଷସ ? ପ୍ରକାଶ କର ।"

ପ୍ରଶ୍ନ-୭୮ : ଦୁଃଖରେ ବିଚରାର ପାଟି ଫିଟୁ ନଥାଏ । କିଛି ସଂକେତ କଲା ସେ । ଗୋକର୍ଣ୍ଣ ପ୍ରେତର ସଙ୍କେତ ବୁଝିପାରି ମନ୍ତ୍ରଜଳ ସିଞ୍ଚିଲେ ଉପରେ ତାଙ୍କର । ଦୁଃଖ ଟିକିଏ କମ୍ ହେବାରୁ ସେ କହିଲେ, "ମୁଁ ତୁମର ଭାଇ ଧୁନ୍ଧୁକାରୀର ପ୍ରେତ । ନିଜ କୁକର୍ମରୁ ବ୍ରାହ୍ମଣତ୍ୱ ବ୍ରହ୍ମତେଜ ହରାଇ ମୁକ୍ତି ନ ପାଇ ବେଶ୍ୟାମାନଙ୍କ ହାତରେ ଆୟୁଷ ଥାଉ ଥାଉ ମରି ପ୍ରେତ ହୋଇଛି । ମୋର ଉଦ୍ଧାର ପାଇଁ ଯତ୍ନ କର ଭାଇ ।" ଏ କଥା ଶୁଣି ଗୋକର୍ଣ୍ଣ କ'ଣ କହିଲେ ?

**ତ୍ୱତ୍ ଅର୍ଥେ ତୁ ଗୟାପିଣ୍ଡୋ ମୟା ଦତ୍ତୋ ବିଧାନତଃ ।**
**ତତ୍ କଥଂ ନୈବ ମୁକ୍ତୋଽସି ମମ-ଆଶ୍ଚର୍ଯ୍ୟଂ ଇଦଂ ମହତ୍ ।୩୧।**

ଉତ୍ତର : କହିଲେ, "ତୁମ ମୁକ୍ତି ପାଇଁ ବିଧି ବିଧାନ ଅନୁସାରେ ମୁଁ ଗୟାରେ ପିଣ୍ଡଦାନ କରିଛି । ଅନେକ ତୀର୍ଥମାନଙ୍କରେ ତୁମ ମୁକ୍ତି ଲାଗି ଶ୍ରାଦ୍ଧ ତ କରିଛି । ମୋତେ ବଡ଼ ଆଶ୍ଚର୍ଯ୍ୟ ଲାଗୁଛି ତଥାପି ତୁମେ ପ୍ରେତ ହୋଇ ବୁଲୁଛ !!!"

ପ୍ରଶ୍ନ-୭୯ : ଗୋକର୍ଣ୍ଣ କହିଲେ- "ହେ ଭାଇ, ଯଦି ଗୟା ଶ୍ରାଦ୍ଧରେ ତୁମର ମୁକ୍ତି ନହେଲା, ମୋତେ ଆଉ ଅନ୍ୟ ଉପାୟ କିଛି ଦିଶୁନାହିଁ ତୁମ ମୁକ୍ତିର ।" ଏଭଳି ନିରାଶ ବାଣୀ ଶ୍ରବଣ କରି ଧୁନ୍ଧୁକାରୀଙ୍କର ପ୍ରେତ କ'ଣ କହିଲା ?

ପ୍ରେତ ଉବାଚ

**ଗୟା ଶ୍ରାଦ୍ଧ ଶତେନ-ଅପି ମୁକ୍ତିଃ ମେ ନ ଭବିଷ୍ୟତି ।**
**ଉପାୟଂ ଅପରଂ କିଂଚିତ୍ ତ୍ୱଂ ବିଚାରୟ ସାଂପ୍ରତମ୍ ।୩୩।**

ଉତ୍ତର : ପ୍ରେତ କହିଲା, "ଭାଇ, ମୋ ଭଳି ପାପୀ ଶିରୋମଣି ପାଇଁ ଶହେ ଗୟା ଶ୍ରାଦ୍ଧରେ ମଧ୍ୟ ମୁକ୍ତି ଅସମ୍ଭବ ଭାଇ । କାହାକୁ ଅନ୍ୟ କିଛି ଉଦ୍ଧାରର ଉପାୟ ପଚାରି ବୁଝ । ମୋ ମୁକ୍ତି ଲାଗି ଶୀଘ୍ର କିଛି ବ୍ୟବସ୍ଥା କର । ତୁମ୍ଭ କୃପା ବିନା ମୋର ଗତି କିମ୍ବା ମୁକ୍ତି ଏକାନ୍ତ ଅସମ୍ଭବ ।"

ପ୍ରଶ୍ନ-୮୦ : ଗୋକର୍ଣ୍ଣ ମହାରାଜ କହିଲେ-"ଭାଇ, ତୁମେ ଆଦୌ ବ୍ୟସ୍ତ ହୁଅନାହିଁ । ମୁଁ କିଛି ଅନ୍ୟ ଉପାୟ ଦେଖୁଛି ।" ସେ ଗାଁ ଲୋକଙ୍କୁ ସେହି ରାତିରେ ଘଟିଥିବା ପ୍ରେତ କଥା ସବିସ୍ତାର କହି ମୁକ୍ତିର କିଛି ଅନ୍ୟ ଉପାୟ ପଚାରିଲେ । ପଣ୍ଡିତମାନେ, ଯୋଗୀମାନେ, ଶାସ୍ତ୍ରବିତ୍‌ମାନେ ଏପରିକି ବେଦଜ୍ଞ ବ୍ରାହ୍ମଣମାନେ ମଧ୍ୟ ଶାସ୍ତ୍ର ଖୋଜି ନିରାଶ ହେଲେ । ଭଗବାନ ସୂର୍ଯ୍ୟଦେବଙ୍କୁ ଧ୍ୟାନକରି ତାଙ୍କୁ ପ୍ରସନ୍ନ କରିପାରିଲେ ତାଙ୍କଠାରୁ କିଛି ବିକଳ୍ପ ଉପାୟ ପାଇପାରନ୍ତି ବୋଲି ପରାମର୍ଶ ଦେଲେ । ଗୋକର୍ଣ୍ଣଜୀ ଜଣେ ଗାୟତ୍ରୀ ସାଧକ ଥିଲେ । ସେ ତାଙ୍କ ଯୋଗ ଶକ୍ତି କୌଶଳ ପ୍ରୟୋଗ କରି କ'ଣ କଲେ ?

ସୂତ ଉବାଚ

**ତତଃ ସ ବୈ ସୂର୍ଯ୍ୟ ବାକ୍ୟଂ ତତ୍ ମୁକ୍ତୌ ସ୍ଥାପିତଂ ପରମ୍ ।**
**ଗୋକର୍ଣ୍ଣଃ ସ୍ତମ୍ଭନଂ ଚକ୍ରେ ସୂର୍ଯ୍ୟ ବେଗସ୍ୟ ବୈ ତଦା ।୩୯।**

ଉତ୍ତର : ମହାଯୋଗୀ ଗୋକର୍ଣ୍ଣ ସ୍ତମ୍ଭନ ବିଦ୍ୟାବଳରେ ସୂର୍ଯ୍ୟଦେବଙ୍କ ଗତିକୁ ରୋଧ କରିଦେଲେ । ଉଦ୍ଦେଶ୍ୟ ଆଦର୍ଶ ଦୃଷ୍ଟାନ୍ତ ରୂପେ ଜଗତ କଲ୍ୟାଣ ଲାଗି ତାଙ୍କ ଭାଇକୁ ପ୍ରେତ ଯୋନୀରୁ ମୁକ୍ତ କରିବା । ସୂର୍ଯ୍ୟ ନାରାୟଣଙ୍କ ସୃଷ୍ଟି ପାଳନ କ୍ରିୟାରେ ବିଘ୍ନ ସୃଷ୍ଟି କରିବା ନୁହେଁ ।

ପ୍ରଶ୍ନ-୮୧ : ଗୋକର୍ଣ୍ଣ ମହାରାଜ ସବିନୀତ ପ୍ରାର୍ଥନା କଲେ ଶ୍ରୀ ସୂର୍ଯ୍ୟ ନାରାୟଣଙ୍କୁ । ସୂର୍ଯ୍ୟଦେବ ପ୍ରସନ୍ନ ହୋଇ ତାଙ୍କୁ କେଉଁ ସଦୁପଦେଶ ପ୍ରଦାନ କଲେ ?

**ଶ୍ରୀମଦ୍ଭାଗବତାତ୍ ମୁକ୍ତିଃ ସପ୍ତାହଂ ବାଚନଂ କୁରୁ ।**

**ଇତି ସୂର୍ଯ୍ୟ ବଚଃ ସ ବୈ ଧର୍ମରୂପଂ ତୁ ବିଶ୍ରୁତମ୍ ।୪୧।**

ଉତ୍ତର : ଧର୍ମରୂପୀ ସୂର୍ଯ୍ୟଦେବ ସମସ୍ତଙ୍କୁ ଶୁଣାଇ କହିଲେ-ଶ୍ରୀମଦ୍ ଭାଗବତ ସପ୍ତାହ ପାରାୟଣ ପ୍ରବଚନ କର । ପ୍ରେତ ଜନ୍ମରୁ ମୁକ୍ତି ନିଶ୍ଚୟ କରତଳ ଗତ ହେବ । ଅଧିକ କିଛି ମଧ ପାଇପାର ଆନୁସଙ୍ଗିକ ଫଳ ରୂପେ ।

ପ୍ରଶ୍ନ-୮୨ :ଗୋକର୍ଣ୍ଣଜୀ ଶ୍ରଦ୍ଧାର ସହିତ ପାଖାପାଖି ଜନବସତି ମାନଙ୍କରେ ନିମନ୍ତ୍ରଣ ପତ୍ର ବାଣ୍ଟିବା ବ୍ୟବସ୍ଥା କଲେ । ଧୁମ୍‌ଧାମ୍‌ରେ ସପ୍ତାହ ଶ୍ରବଣର ଆୟୋଜନରେ ଲାଗି ପଡ଼ିଲେ । ଦେଶ-ଦେଶାନ୍ତର, ଗ୍ରାମ-ଗ୍ରାମାନ୍ତରରୁ ଅନେକ ଲୋକ କଥା ଶ୍ରବଣ ଲାଗି ଆସି ପହଞ୍ଚିଲେ । ଏପରିକି ପଙ୍ଗୁ, ଅନ୍ଧ, ରୋଗୀ, ଯୋଗୀ, ଭୋଗୀ, ପାପୀ, ନିଷ୍ପାପ, ଜ୍ଞାନୀ, ଅଜ୍ଞାନ, ଗୃହସ୍ଥ, ସନ୍ନ୍ୟାସୀ, ବ୍ରହ୍ମଜ୍ଞ ଓ ଚଣ୍ଡାଳ ସମସ୍ତେ ଜମା ହେଲେ । ଏକଥା ଦେଖି ଦେବତାମାନେ ମଧ୍ୟ ଆଶ୍ଚର୍ଯ୍ୟ ହେଲେ । ଗୋକର୍ଣ୍ଣଜୀ ନିଜେ ବ୍ୟାସ ଆସନରେ ବସି ଶ୍ରୀମଦ୍ଭାଗବତ ପ୍ରବଚନ ଦେବା ଆରମ୍ଭ କଲେ । ଧୁନ୍ଧୁକାରୀ ସୂକ୍ଷ୍ମଦେହ ଧରି ପ୍ରେତ ରୂପରେ ପହଞ୍ଚିଲେ । ବସିବାକୁ ସ୍ଥାନ ଖୋଜିଲେ । ସାତ ଗଣ୍ଠି (ମନୁଷ୍ୟର କାମ କ୍ରୋଧ ଆଦି ୬ ଶତ୍ରୁ ସହିତ ଅହଂକାର) ବିଶିଷ୍ଟ ପୋତା ଯାଇଥିବା ପତାକା ଯୁକ୍ତ ଶୁଭ ସ୍ତମ୍ଭ ବାଉଁଶଟିକୁ ଦେଖି କ'ଣ କଲେ ?

**ତତ୍ ମୂଳ ଛିଦ୍ରଂ ଆବିଶ୍ୟ ଶ୍ରବଣ-ଅର୍ଥଂ ସ୍ଥିତୋ ହି-ଅସୌ ।**
**ବାତରୂପୀ ସ୍ଥିତିଂ କର୍ତ୍ତୁଂ ଅଶକ୍ତୋ ବଂଶଂ ଆବିଶତ୍ ।୪୬।**

ଉତ୍ତର : ଧୁନ୍ଧୁକାରୀ ସ୍ଥୂଳ ଦେହ ଧରିବାରେ ଅକ୍ଷମ ଥିବାରୁ ବାୟୁ ଦେହ ଧରି ବାଉଁଶର ମୂଳରେ ଥିବା ଛିଦ୍ର ମଧରେ ପ୍ରବେଶ କଲେ । ନିର୍ବିଘ୍ନରେ କଥା ଶ୍ରବଣ ପାଇଁ ଉତ୍କଣ୍ଠିତ ହୋଇ ପ୍ରତୀକ୍ଷାରେ ରହିଲେ ।

ପ୍ରଶ୍ନ-୮୩ : ବ୍ରାହ୍ମଣ,ବୈଷ୍ଣବମାନଙ୍କୁ ମୁଖ୍ୟ ଶ୍ରୋତା କରି ଗୋକର୍ଣ୍ଣ ପ୍ରଥମ ସ୍କନ୍ଧ ଠାରୁ କଥାରମ୍ଭ କରି ୩ୟ ସ୍କନ୍ଧସ୍ଥ ମନୁ-କର୍ଦ୍ଦମ ସମ୍ବାଦ ପାଖରେ ପ୍ରଥମ ବିଶ୍ରାମ କଲେ । ସେତେବେଳେ କି ଆଶ୍ଚର୍ଯ୍ୟ ଘଟଣା ଘଟିଲା ?

**ଦିନାନ୍ତେ ରକ୍ଷିତା ଗାଥା ତଦା ଚିତ୍ରଂ ବଭୂବ ହ ।**
**ବଂଶୈକ ଗ୍ରନ୍ଥିଭେଦୋଽଭୂତ୍ ସଶବ୍ଦଂ ପଶ୍ୟତାଂ ସତାମ୍ ।୪୮।**

ଉତ୍ତର : ସକଳ ସ୍ରୋତ ସାଧୁମାନେ ଦେଖୁ ଦେଖୁ ସେ ପତାକା ବନ୍ଧା

ଶୁଭଷ୍ତମ୍ଭ ବାଉଁଶର ମୂଳରୁ ପ୍ରଥମ ଗଣ୍ଠିଟି ପ୍ରଚଣ୍ଡ ଶବ୍ଦ କରି ଫୁଟିଗଲା ।

ପ୍ରଶ୍ନ-୮୪: ଦ୍ୱିତୀୟ ଦିନ ପ୍ରବଚନ ଶେଷରେ ଆଉ ଗୋଟିଏ ଗଣ୍ଠି ଫୁଟିଲା । ଏହିପରି ଦ୍ୱାଦଶ ସ୍କନ୍ଧ ଶେଷରେ ୭ମ ଦିନ ପ୍ରବଚନ ଶେଷରେ ୭ମ ଗଣ୍ଠିଟି ଫୁଟି ବାଉଁଶଟି ଦୁଇଫାଳ ହୋଇଗଲା । ଧୁନ୍ଧୁକାରୀ ପ୍ରେତ ଜନ୍ମରୁ ସଂବାଳୁଆ ଖୋଳ ଛାଡ଼ି ପ୍ରଜାପତିଟିଏ ବାହାରିବା ଭଳି ସେ ପ୍ରେତ ଜନ୍ମରୁ ମୁକ୍ତି ପ୍ରାପ୍ତ ହେଲେ । ତାଙ୍କୁ କିପରି ନୂଆ ଦିବ୍ୟ ଶରୀରଟିଏ ମିଳିଲା ?

**ଦିବ୍ୟରୂପ ଧରୋ ଜାତଃ ତୁଳସୀ ଦାମ ମଣ୍ଡିତଃ ।**
**ପୀତବାସା ଘନଶ୍ୟାମୋ ମୁକୁଟୀ-କୁଣ୍ଡଳ-ଅନ୍ୱିତଃ ।୫୧।**

ଉତ୍ତର : ସମସ୍ତ ସଭାମଣ୍ଡଳୀ ଦେଖିଲେ ଧୁନ୍ଧୁକାରୀଙ୍କର ତେଜୋମୟ ଅଲୌକିକ ଚତୁର୍ଭୁଜଧାରୀ ତେଜୀୟାନ୍ ଶରୀର । କଣ୍ଠରେ ତୁଳସୀମାଳ । ଅଙ୍ଗରେ ତାଙ୍କର ନବ ଜଳଧର କାନ୍ତି । କଟୀତଟେ ପୀତାମ୍ବର, କର୍ଣ୍ଣରେ ଦିବ୍ୟ କୁଣ୍ଡଳ । ପୁଣି ମସ୍ତକରେ ଦିବ୍ୟ ମୁକୁଟ ଶୋଭାୟମାନ ।

ପ୍ରଶ୍ନ-୮୫ : ଧୁନ୍ଧୁକାରୀ ସର୍ବ ପ୍ରଥମେ ପ୍ରବଚନ ଗୋକର୍ଣ୍ଣଙ୍କୁ ଭକ୍ତିପୂର୍ଣ୍ଣ ନମସ୍କାର କଲେ । ପରେ ପରେ ପ୍ରେତ ଯାତନାରୁ କୃପାକରି ମୁକ୍ତି ଦେଇଥିବାରୁ ଗୋକର୍ଣ୍ଣଙ୍କୁ ସେ ଦୁଇହାତ ଯୋଡ଼ି ଅଶେଷ କୃତଜ୍ଞତା ଜ୍ଞାପନ କଲେ । ଶେଷରେ ଭାଗବତ ସପ୍ତାହ ବିଷୟରେ ଦିବ୍ୟ ଦେହଧାରୀ ଧୁନ୍ଧୁକାରୀ କ'ଣ କହିଲେ ?

**ଧନ୍ୟା ଭାଗବତୀ ବାର୍ତ୍ତା ପ୍ରେତପୀଡ଼ା ବିନାଶିନୀ ।**
**ସପ୍ତାହୋଽପି ତଥା ଧନ୍ୟଃ କୃଷ୍ଣ ଲୋକ ଫଳପ୍ରଦଃ ।୫୩।**

ଉତ୍ତର : ଧନ୍ୟ ଭାଗବତୀ କଥା । ଧନ୍ୟ ଭାଗବତ ସପ୍ତାହ ଆୟୋଜନ ରୂପୀ ସତ୍‌କର୍ମ । ଏକେ ତ ଏହା ପ୍ରେତ ଯାତନାରୁ ମୁକ୍ତି ଦାତା । ସେଥିରେ ମହାପାପୀଙ୍କୁ ପୁଣି ଗୋଲକ ଧାମ ପ୍ରଦାୟକ ମଧ୍ୟ !!!

ପ୍ରଶ୍ନ-୮୬ : ଅଗ୍ନି ଦେବତା ଆର୍ଦ୍ର, ଶୁଷ୍କ, ଛୋଟ, ବଡ଼ ସମସ୍ତ କାଠକୁ ଜାଳି ପାଉଁଶ କରନ୍ତି । ଭାଗବତ କଥା ସପ୍ତାହ ଶ୍ରବଣ କରୁଥିବା ଜୀବ (ମନୁଷ୍ୟ, ପ୍ରେତ, ଦେବତା) ସମସ୍ତଙ୍କ ସାନ ବଡ଼ ସବୁ ପାପକୁ ପୋଡ଼ିପକାଏ । ଭାରତ ବର୍ଷରେ ଜନ୍ମ ହୋଇ ଯଦି ଜଣେ ଭାଗବତ ଶ୍ରବଣ ନକରି ପାପରୁ ମୁକ୍ତିପାଇଁ ଚେଷ୍ଟା ନ କରିପାରିଲା ତାର ଭାରତରେ ଜନ୍ମ ହେବା ପୁଣ୍ୟ ଅକାରଣ ହେଲା ।

ଇଂଲଣ୍ଡ, ଆମେରିକା, ଫ୍ରାନ୍ସରେ ସେ ଜନ୍ମ ହେବାର ଥିଲା । ଜଳରୁ ଫୋଟକା ହୋଇ ଫାଟିଯିବା କିମ୍ବା ମଶା, ଓଡ଼ଶ ଜନ୍ମ ପାଇଁ ଦେହ ଛାଡ଼ିବା ସହ ସେମାନଙ୍କ ଜନ୍ମ-ମରଣ ତୁଳନୀୟ । ଆଜି ଅନ୍ନ, ବ୍ୟଞ୍ଜନ ରାନ୍ଧି ନ ଖାଇ ରଖିଦେଲେ କାଲିକି ପଚି ଦୁର୍ଗନ୍ଧ ବାହାରେ । ମଳ, ମୂତ୍ରାଦି ଯୁକ୍ତ କ୍ଷଣ ଭଙ୍ଗୁର ଅଧ୍ରୁବ ଶରୀରକୁ ପାପ ମୁକ୍ତ କରିବାକୁ ଚେଷ୍ଟା ନ କରିବା କେଉଁ ବିଜ୍ଞତାର କାମ ? ହରି ଭଜନ ନ କରି ଖାଲି ଦେହ ଗୃହକୁ ସୁଗନ୍ଧିତ, ସୁସଜ୍ଜିତ କରି ସାଇତିଲେ କି ଲାଭ ? ଆଚ୍ଛା ଭାଗବତ ଶ୍ରବଣରେ ଚେତନ ମନୁଷ୍ୟର କ'ଣ ନିଶ୍ଚିତ ମୁକ୍ତି ସମ୍ଭବ ? ଏ ବିଷୟରେ ଧୁନ୍ଧୁକାରୀଙ୍କ ମନ୍ତବ୍ୟ କ'ଣ ?

**ଜଡ଼ସ୍ୟ ଶୁଷ୍କ ବଂଶସ୍ୟ ଯତ୍ର ଗ୍ରନ୍ଥି ବିଭେଦନମ୍ ।**
**ଚିତ୍ରଂ କିମୁ ତଦା ଚିତ୍ତ ଗ୍ରନ୍ଥି ଭେଦଃ କଥା ଶ୍ରବାତ୍ ।୬୪।**

ଉତ୍ତର : ଭାଗବତ ଶ୍ରବଣରେ ପ୍ରେତ ଚେତନାରେ ବାଉଁଶ ଶରୀରରେ ଥାଇ ଯଦି ଜଣକର ମୁକ୍ତି ସମ୍ଭବ ତେବେ କାହିଁ କେତେ ଉଚ୍ଚ ମନୁଷ୍ୟ ଚେତନାରେ ପୁଣି ମନୁଷ୍ୟ ଦେହରେ ଗ୍ରନ୍ଥି ଭେଦନରେ କାହିଁକି ଅସମ୍ଭବ ହେବ ?

ପ୍ରଶ୍ନ-୮୭ : ଭାଗବତ କଥା ଶ୍ରବଣରେ କର୍ମଯୋଗ ଗ୍ରନ୍ଥି (କିଛି କରିବା), ଜ୍ଞାନଯୋଗ ଗ୍ରନ୍ଥି (କିଛି ଜାଣିବା) ଓ ଭକ୍ତି ଯୋଗ ଗ୍ରନ୍ଥି (କିଛି ପାଇବା) ଫିଟିଯାଏ । ମହାପାପୀ ଧୁନ୍ଧୁକାରୀଙ୍କର ମୁକ୍ତି ଏହାର ପ୍ରତ୍ୟକ୍ଷ ପ୍ରମାଣ । ବୈକୁଣ୍ଠରୁ ଦିବ୍ୟ ବିମାନ ଆସିଲା ତାଙ୍କୁ ନେବାକୁ । ଗୋକର୍ଣ୍ଣ ଆପତ୍ତି କଲେ- ଅନ୍ୟମାନଙ୍କ ପାଇଁ ବିମାନ କାହିଁ ? ନେବାକୁ ଆସିଥିବା ବିଷ୍ଣୁପାର୍ଷଦମାନେ କହିଲେ- "ଅନ୍ୟମାନେ ତାଙ୍କ ଭଳି ଉପବାସ ରହି ଶ୍ରଦ୍ଧା ପୂର୍ବକ ଶ୍ରବଣ କରିଥିବା କଥାର ମନନ କରିପାରି ନାହାନ୍ତି । କିନ୍ତୁ ଆପଣ ସ୍ୱୟଂ ମୁକ୍ତ । ଆଉଥରେ ସେମାନଙ୍କୁ ବିଧିପୂର୍ବକ ସପ୍ତାହ କଥା ଶ୍ରବଣ କରାନ୍ତୁ ।" ଏହାପରେ ଗୋକର୍ଣ୍ଣ କ'ଣ କଲେ ?

**ହରିଦାସାଃ ଉଚୁଃ**

**ଶ୍ରାବଣେ ମାସି ଗୋକର୍ଣ୍ଣଃ କଥାଂ ଉଚେ ତଥା ପୁନଃ ।**
**ସପ୍ତରାତ୍ରବତୀଂ ଭୂୟଃ ଶ୍ରବଣଂ ତୈଃ କୃତଂ ପୁନଃ ।୬୮।**

ଉତ୍ତର : ପୁଣି ଥରେ ଶ୍ରାବଣ ମାସ ଶୁକ୍ଳ ନବମୀରେ ଭକ୍ତଶିରୋମଣି

ଗୋକର୍ଣ୍ଣ ଭାଗବତ କଥା ସପ୍ତାହ ଅନୁଷ୍ଠାନ କଲେ । ସପ୍ତଦିନ ସପ୍ତରାତ୍ରୀ ଯାଏ ଉଜାଗର ରହି ଭାଗବତ କଥା ଶ୍ରବଣ, କୀର୍ତ୍ତନ ମନନ କଲେ ସମସ୍ତେ ।

ପ୍ରଶ୍ନ-୮୮: ସନକାଦି ମୁନିମାନେ ନାରଦଙ୍କୁ ଏହାର ଫଳ କ'ଣ ହେଲା ବୋଲି କହିଲେ ?

**ବିମାନୈଃ ସହ ଭକ୍ତୈଃ ଚ ହରିଃ ଆବିର୍ବଭୂବ ହ ।**
**ଜୟ ଶବ୍ଦାଃ ନମଃ ଶବ୍ଦାଃ ତତ୍ର-ଆସନ୍ ବହବଃ ତଦା ।୮୦।**

ଉତ୍ତର : ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ ଅନେକ ବିମାନ ଧରି ପାର୍ଷଦମାନଙ୍କ ସହ ଗରୁଡ଼ ପୃଷ୍ଠରେ ପ୍ରକଟ ହେଲେ । ଜୟ ଧ୍ୱନି, ସ୍ତୁତି, ସ୍ତବ ପୁଷ୍ପାଞ୍ଜଳି ନିବେଦନରେ ସଭାସ୍ଥଳ କମ୍ପମାନ ହେଲା ।

ପ୍ରଶ୍ନ-୮୯ : ଭଗବାନ ମହା ଆନନ୍ଦରେ ପଞ୍ଚଜନ୍ୟ ଶଙ୍ଖ ବାଦନ କଲେ । ଗୋକର୍ଣ୍ଣଙ୍କୁ ବକ୍ଷରେ ଆଲିଙ୍ଗନ କଲେ । ଗୋକର୍ଣ୍ଣଙ୍କର ପ୍ରାକୃତ ଦେହ ଦିବ୍ୟ ପାର୍ଷଦ ଦେହରେ ରୂପାନ୍ତରିତ ହୋଇଗଲା । ଉପସ୍ଥିତ ଭାଗବତ ଶ୍ରୋତା ମନୁଷ୍ୟଙ୍କ ବ୍ୟତୀତ ଆଉ କିଏ କିଏ ସେ ବିମାନରେ ଗଲେ ?

**ତଦ୍ ଗ୍ରାମେ ଯେ ସ୍ଥିତା ଜୀବାଃ ଆଶ୍ୱଚାଣ୍ଡାଳ ଜାତୟଃ ।**
**ବିମାନେ ସ୍ଥାପିତାଃ ତେଽପି ଗୋକର୍ଣ୍ଣ କୃପୟା ତଦା ।୮୩।**

ଉତ୍ତର : ସେ ଗ୍ରାମରେ ଥିବା ହୀନ ଜାତିର ଚାଣ୍ଡାଳ ଠାରୁ ହେୟ ପଶୁ କୁକୁର, ବିରାଡ଼ି, କୀଟ ପତଙ୍ଗ ପର୍ଯ୍ୟନ୍ତ ସକଳ ଜୀବ ନିଜ ନିଜ ଦେହ ଛାଡ଼ି ଦିବ୍ୟ ଦେହରେ ବିମାନରେ ବସିଲେ । ଏ ସବୁ ଶ୍ରୀକୃଷ୍ଣ ଓ ବୈଷ୍ଣବ ଚୂଡ଼ାମଣି ଗୋକର୍ଣ୍ଣଙ୍କ ଅଲୌକିକ କୃପା ।

ପ୍ରଶ୍ନ-୯୦ : ଶ୍ରୀକୃଷ୍ଣଙ୍କ ପୂର୍ବରୁ ତ୍ରେତୟା ଯୁଗରେ ଶ୍ରୀରାମ ଅବତାର କାଳରେ ପ୍ରଭୁ ଶ୍ରୀରାମ କାହାକୁ ଏଭଳି ଉଦ୍ଧାର କରିଥିବାର ଦୃଷ୍ଟାନ୍ତ ଅଛି କି ?

**ଅଯୋଧ୍ୟା ବାସିନଃ ପୂର୍ବଂ ଯଥା ରାମେଣ ସଂଗତାଃ ।**
**ତଥା କୃଷ୍ଣେନ ତେ ନୀତା ଗୋଲୋକଂ ଯୋଗୀ ଦୁର୍ଲ୍ଲଭମ୍ ।୮୫।**

ଉତ୍ତର : ହଁ ନିଶ୍ଚୟ ଅଛି । ଦେଖାଯାଏ ଯୋଗୀ, ମୁନି, ମହର୍ଷି ମାନେ ଅଷ୍ଟାଙ୍ଗ ଯୋଗ ସିଦ୍ଧ କରି ସିଦ୍ଧି ଐଶ୍ୱର୍ଯ୍ୟକୁ ଧରି ବସନ୍ତି । ହରିଭକ୍ତି-ପ୍ରେମ ଇତ୍ୟାଦିରୁ ବଂଚିତ ହୋଇଥାନ୍ତି । ସେମାନେ ବୈକୁଣ୍ଠ ଆଦି ମୁକ୍ତିର ମଧ୍ୟ ସ୍ୱାଦ ପାଇପାରି

ନଥାନ୍ତି । ଗୋଲୋକ ପ୍ରାପ୍ତି ତ କାହିଁ କେତେ ଦୂରର କଥା ।

ଭଗବାନ ଶ୍ରୀରାମଙ୍କ ଲୀଳା ଶେଷରେ ତାଙ୍କ କୃପାରୁ ଜୀବଜନ୍ତୁ ସହିତ ସମସ୍ତ ଅଯୋଧ୍ୟାବାସୀ ତାଙ୍କ ନିର୍ଦ୍ଦେଶରେ ସରଯୁ ନଦୀରେ ସ୍ନାନ କରୁକରୁ ମର୍ତ୍ତ୍ୟ ଦେହ ତ୍ୟାଗ କରି ଦିବ୍ୟ ଦେହ ଧାରଣ କରି ବୈକୁଣ୍ଠ ସ୍ଥିତ ସାକେତ ଲୋକକୁ ଯାଇପାରିଥିଲେ । ଏବେ ଗୋକର୍ଣ୍ଣ ଭକ୍ତଙ୍କୁ ନିମିତ୍ତ କରି ଶ୍ରୀକୃଷ୍ଣ ସେହି ଯୋଗୀ ଦୁର୍ଲ୍ଲଭ ଗୋଲୋକ ଧାମକୁ ସମସ୍ତ ଭାଗବତ ସପ୍ତାହ ଶ୍ରବଣକାରୀଙ୍କୁ ନେଇଗଲେ ।

## ଅଥ ଷଷ୍ଠ ଅଧ୍ୟାୟଃ

### ଶ୍ରୀମଦ୍ଭାଗବତ ସପ୍ତାହ ଯଜ୍ଞ ଅନୁଷ୍ଠାନର ବିଧି ।

### (ନାରଦଜୀଙ୍କ ସପ୍ତାହ ଯଜ୍ଞ ସମାପ୍ତିରେ ଜ୍ଞାନ, ବୈରାଗ୍ୟଙ୍କ ପରମାନନ୍ଦ ପ୍ରାପ୍ତି ଓ ଭଗବାନଙ୍କର ସ୍ୱ ପାର୍ଷଦମାନଙ୍କ ସହ ପ୍ରାକଟ୍ୟ ।)

**କୁମାରାଃ ଉଚୁଃ**

ପ୍ରଶ୍ନ-୯୧ : ସନକାଦି ମୁନିମାନେ ସପ୍ତାହ ଯଜ୍ଞାନୁଷ୍ଠାନର ବିଧି ବିଧାନ ବର୍ଣ୍ଣନ କଲେ । ପ୍ରଥମେ ଜ୍ୟୋତିଷଙ୍କ ଠାରୁ ଶୁଭ ସମୟ ବୁଝି ନେବା ଉଚିତ । ଆଷାଢ଼ ମାସଠାରୁ କାର୍ତ୍ତିକ ମାସ ପର୍ଯ୍ୟନ୍ତ ଛଅମାସ ଏଥିପାଇଁ ସର୍ବୋତ୍କୃଷ୍ଟ । କଥା ଯଜ୍ଞ ଯାଇଁ ଦୂରଦୂରାନ୍ତ ସ୍ଥାନକୁ ବ୍ରାହ୍ମଣ ବୈଷ୍ଣବମାନଙ୍କ ପାଖକୁ ନିମନ୍ତ୍ରଣ ପଠାଇବା ଭଲ । ଉପସ୍ଥିତ ଶ୍ରୋତାମାନଙ୍କ ପାଇଁ ବାସ, ଭୋଜନ, ସତ୍କାର ଆଦିର ବ୍ୟବସ୍ଥା କରିବା ଉଚିତ୍ । ଶ୍ରୋତାମାନେ ବୈଷ୍ଣବ ଦୀକ୍ଷା ଗ୍ରହଣ କରିଥିବେ । ଜଣେ ଆଦର୍ଶ ବକ୍ତାଙ୍କର ଯୋଗ୍ୟତାର ଲକ୍ଷଣ ତେବେ କିପରି ହେବା କଥା ?

**ବିରକ୍ତୋ ବୈଷ୍ଣବୋ ବିପ୍ରୋ ବେଦ ଶାସ୍ତ୍ର ବିଶୁଦ୍ଧି କୃତ୍ ।**
**ଦୃଷ୍ଟାନ୍ତ କୁଶଳୋ ଧୀରୋ ବକ୍ତା କାର୍ଯ୍ୟୋଽତି ନିଃସ୍ପୃହଃ ।୨୦।**

ଉତ୍ତର : ପୂର୍ଣ୍ଣ ସଂସାର ବୈରାଗୀ, ବୈଷ୍ଣବ, ବେଦବେତ୍ତା, ସଦାଚାରୀ, କଥା ସ୍ଥଳରେ ଉପଯୋଗୀ ଉଦାହରଣ ବା ଦୃଷ୍ଟାନ୍ତ ଦେଇପାରୁଥିବା, ଧୈର୍ଯ୍ୟବାନ୍ ଓ ସର୍ବୋପରି ସଂସାରୀ ଧନ ସଂପତ୍ତି ଲୋଭୀ ନ ହେବା ଉଚିତ ।

ପ୍ରଶ୍ନ-୯୨ : ସପ୍ତାହ କଥା ଯଜ୍ଞ ସମାପନରେ ଅନ୍ନ ଯଜ୍ଞ, ଘୃତଯଜ୍ଞ କରିବା ବିଧି । ଦେବର୍ଷି ନାରଦଙ୍କ ଆୟୋଜିତ ସନକାଦି ମୁନିମାନଙ୍କ କଥା ଯଜ୍ଞ

ଶେଷରେ ଫଳ କିସ ହେଲା ?

**ସୂତ ଉବାଚ**

**ଇତି-ଉକ୍ତ୍ୱା ତେ ମହାତ୍ମନଃ ପ୍ରୋଚୁଃ ଭାଗବତୀଂ କଥାମ୍ ।**
**ସର୍ବପାପ ହରା ପୁଣ୍ୟାଂ ଭୁକ୍ତି ମୁକ୍ତି ପ୍ରଦାୟିନୀମ୍ ।୭୦।**

ଉତ୍ତର : ବିଧି ପୂର୍ବକ କଥା ଶ୍ରବଣ ଫଳରେ ଶ୍ରୋତାମାନଙ୍କ ଜନ୍ମ-ଜନ୍ମାନ୍ତରର ସଂଚିତ ପାପ ନଷ୍ଟ ହୋଇଗଲା । ଧର୍ମ ଅର୍ଥ, କାମ ଓ ମୋକ୍ଷ କାମୀଙ୍କୁ ଇପ୍‌ସିତ ଲକ୍ଷ୍ୟ ପ୍ରାପ୍ତି ହେଲା । କୃଷ୍ଣଭକ୍ତଙ୍କୁ ଜୀବନ୍‌ମୁକ୍ତି ମିଳିଗଲା ।

ପ୍ରଶ୍ନ-୯୩: ବୃନ୍ଦାବନରେ ମୂର୍ଚ୍ଛିତ ଜ୍ଞାନ ବୈରାଗ୍ୟ ହରିଦ୍ୱାର ତୀର୍ଥରେ କଥା ଶ୍ରବଣ କରନ୍ତେ ତାଙ୍କର କି ପରିବର୍ତ୍ତନ ଘଟିଲା ଏବଂ ଭକ୍ତି ମହାରାଣୀଙ୍କ ଅବସ୍ଥା କ'ଣ ହେଲା ?

**ତଦନ୍ତେ ଜ୍ଞାନ ବୈରାଗ୍ୟଂ ଭକ୍ତିନାଂ ପୁଷ୍ଟତାପରା ।**
**ତାରୁଣ୍ୟଂ ପରମଂ ଚ-ଅଭୂତ୍ ସର୍ବଭୂତ ମନୋହରମ୍ ।୭୨।**

ଉତ୍ତର : ଜ୍ଞାନ-ବୈରାଗ୍ୟଙ୍କର ନବଯୌବନ ଲାଭ ହେଲା । ଭକ୍ତିଦେବୀ ମଧ୍ୟ ସକଳ ଜୀବଗଣଙ୍କ ମଧ୍ୟରେ ଦିବ୍ୟରୂପ ଧାରଣ କରି ସମସ୍ତ ଶ୍ରୋତାଗଣଙ୍କ ହୃଦୟ କମଳରେ ଦୁଇ ପୁତ୍ରଙ୍କ ଗହଣରେ ଶୋଭାୟମାନ ହେଲେ ।

ପ୍ରଶ୍ନ-୯୪ : କଥା ଆୟୋଜକ ନାରଦଙ୍କ ମନୋରଥ ପୂର୍ଣ୍ଣ ହେଲା । ସେ ପରମ ଆନନ୍ଦିତ ହେଲେ । ତାଙ୍କର ସର୍ବାଙ୍ଗ ଶରୀର ପ୍ରସ୍ଫୁଟିତ କଦମ-ପୁଷ୍ପ ଭଳି ରୋମାଞ୍ଚିତ ହେଲା । ସେ କୃତାଞ୍ଜଳି ହୋଇ ପ୍ରେମ ଗଦ୍‌ଗଦ୍ ବାକ୍ୟରେ ସଭା ମଧ୍ୟରେ କ'ଣ ଘୋଷଣା କଲେ?

**ନାରଦ ଉବାଚ**

**ଧନ୍ୟୋଽସ୍ମି ଅନୁଗୃହିତୋଽସ୍ମି ଭବଦ୍‌ଭିଃ କରୁଣାପରୈଃ ।**
**ଅଦ୍ୟ ମେ ଭଗବାନ୍ ଲବ୍‌ଧଃ ସର୍ବପାପ ହରୋ ହରିଃ ।୭୫।**

ଉତ୍ତର : ନାରଦଜୀ କହିଲେ, ହେ ସନକାଦି ପରମହଂସ ଚୂଡ଼ାମଣି, ଆଜି ମୁଁ ଧନ୍ୟ ହେଲି । ମୁଁ ଆପଣଙ୍କ ଭଳି କୃପାଳୁ ସନ୍ଥମାନଙ୍କର ଅନୁଗ୍ରହର ପାତ୍ର । ଯେଉଁ ଶ୍ରୀହରିଙ୍କ ଦର୍ଶନରେ ସକଳ ପାପ ସମୂଳେ ନଷ୍ଟ ହୋଇଯାଇଥାଏ ଆଜି ତାଙ୍କୁ ମୁଁ ଏ ସତ୍‌ସଙ୍ଗ ସଭାମଣ୍ଡଳିରେ ସମସ୍ତଙ୍କ ସାମନାରେ ଦର୍ଶନ କରିପାରିଲି ।

ମୋର ଅହୋ ଭାଗ୍ୟ ।

ପ୍ରଶ୍ନ-୯୫ : ସପ୍ତାହ କଥା ଯଜ୍ଞର ଫଳକୁ କ'ଣ ଯଜ୍ଞ, ଦାନ, ତୀର୍ଥ, ବ୍ରତ, ତପ, ବେଦ ଅଧ୍ୟୟନ, ବେଦ ଅଧ୍ୟାପନ ଆଦି ପୁଣ୍ୟ କର୍ମ ସହିତ ତୁଳନା କରିହେବ ?

**ଶ୍ରବଣଂ ସର୍ବ ଧର୍ମେଭ୍ୟୋ ବରଂ ମନ୍ୟେ ତପୋଧନାଃ ।**
**ବୈକୁଣ୍ଠସ୍ଥୋ ଯତଃ କୃଷ୍ଣଃ ଶ୍ରବଣାତ୍ ଯସ୍ୟ ଲଭ୍ୟତେ ।୭୬।**

ଉତ୍ତର : ଆଦୌ ତୁଳନୀୟ ନୁହେଁ । କାରଣ କେବଳ ଏହି ଯଜ୍ଞରେ ବିଷ୍ଣୁ ବୈକୁଣ୍ଠ ଛାଡ଼ି ବେଳେ ବେଳେ ଶ୍ରୀକୃଷ୍ଣ ଗୋଲକଧାମ ଛାଡ଼ି, କଥା ସ୍ଥଳକୁ ଦୌଡ଼ି ଆସିଥାନ୍ତି । ଅନ୍ୟ ସାଧନରେ ଏହା ଏକାନ୍ତ ଅସମ୍ଭବ ବ୍ୟାପାର ।

ପ୍ରଶ୍ନ-୯୬ : ସଭାସ୍ଥଳରେ ନାରଦଜୀ ଏହି କଥା କହୁଥିବା ବେଳେ ପୁଣି କିଏ ସେଠାରେ ପହଞ୍ଚିଗଲେ ?

ସୂତ ଉବାଚ

**ଏବଂ ବ୍ରୂବତୀ ବୈ ତତ୍ର ନାରଦେ ବୈଷ୍ଣବ-ଉତ୍ତମେ ।**
**ପରିଭ୍ରମନ୍ ସମାୟାତଃ ଶୁକୋ ଯୋଗେଶ୍ୱରଃ ତଦା ।୭୭।**

ଉତ୍ତର : ଦୃଶ୍ୟମାନ ହେଲେ ନିତ୍ୟ ପରିବ୍ରାଜକ ଆଚାର୍ଯ୍ୟ ମହାଯୋଗେଶ୍ୱର ଜନ୍ମଜାତ ପରମହଂସ ଚୂଡ଼ାମଣି ବ୍ୟାସପୁତ୍ର ଶୁକଦେବ ଗୋସ୍ୱାମୀ । ବଜ୍ରଗମ୍ଭୀର ସ୍ୱରରେ ଦେବର୍ଷି ନାରଦ ଘୋଷଣା କଲେ ଶ୍ରୀ ଶୁକଦେବଙ୍କ ପ୍ରାକଟ୍ୟ ।

ପ୍ରଶ୍ନ-୯୭ : ମର୍ତ୍ତ୍ୟଲୋକରେ ମିଳୁଥିବା ଏହି ହରିଭଜନ ରୂପୀ ଭାଗବତ ରସ କ'ଣ ଆଉ କେଉଁ ଲୋକରେ ନାହିଁ କି?

ଶ୍ରୀ ଶୁକ ଉବାଚ

**ସ୍ୱର୍ଗେ ସତ୍ୟେ ଚ କୈଳାସେ ବୈକୁଣ୍ଠେ ନାସ୍ତି-ଅୟଂ ରସଃ ।**
**ଅତଃ ପିବନ୍ତୁ ସଦ୍‌ଭାଗ୍ୟା ମା ମା ମୁଞ୍ଚତ କର୍ହିଚିତ୍ ।୮୩।**

ଉତ୍ତର : ଏପରିକି ସ୍ୱର୍ଗଲୋକରେ, କୈଳାସରେ ଓ ବୈକୁଣ୍ଠରେ ମଧ୍ୟ ଏ ସତ୍‌ସଙ୍ଗ ପ୍ରାପ୍ତିର ସୁଯୋଗ ନାହିଁ । ସେଇଥିପାଇଁ ଶ୍ରୀରାମ ଲୀଳା ଶେଷରେ ଭଗବାନଙ୍କ ସହିତ ସମସ୍ତେ ସାକେତ ଲୋକକୁ ଗଲେ ମଧ୍ୟ ଭକ୍ତି ଶିରୋମଣି ଶ୍ରୀହନୁମାନଜୀ ଯିବାକୁ ମନାକଲେ । ସୁତରାଂ ହେ ଭାଗ୍ୟବାନ କଳିଯୁଗୀ ମଣିଷ,

ଏ ରସ ଆସ୍ୱାଦନ ସୁଯୋଗ ମିଳିଲେ ଜମା ଛାଡ଼ନ୍ତୁନି । ବଞ୍ଚିଥିଲା ଯାକ ପିଅନ୍ତୁ । ମଲାବେଳେ ପିଇବା ପାଇଁ ବନ୍ଦୋବସ୍ତ କରି ରଖନ୍ତୁ । ପର ପର ଜନ୍ମରେ ମଧ୍ୟ ପୁଣି ରସାସ୍ୱାଦନରେ ଲାଗିବାକୁ ଠାକୁରଜୀଙ୍କ ପାଖରେ କୃପା ପ୍ରାର୍ଥନା କରନ୍ତୁ ।

ପ୍ରଶ୍ନ-୯୮ : ସପ୍ତାହ କଥାଯଜ୍ଞ ଶେଷରେ ଭକ୍ତି, ଜ୍ଞାନ ଓ ବୈରାଗ୍ୟଙ୍କର ଅସରନ୍ତି ଖୁସୀ କିପରି ଜଣାଗଲା ? ଭଗବାନ କୃଷ୍ଣଚନ୍ଦ୍ର କ'ଣ ଶ୍ରୋତାମାନଙ୍କୁ କିଛି ବର ମାଗିବାକୁ କହିଲେ କି?

ସୂତ ଉବାଚ

**ନନର୍ତ୍ତ ମଧ୍ୟେ ତ୍ରିକଂ ଏବ ତତ୍ର**
**ଭକ୍ତ୍ୟାଦିକାନାଂ ନଟବତ୍ ସୁତେଜସାମ୍ ।**
**ଅଲୌକିକଂ କୀର୍ତ୍ତନଂ ଏତତ୍ ଈକ୍ଷ୍ୟ**
**ହରିଃ ପ୍ରସନ୍ନୋଽପି ବଚୋଽବ୍ରବୀତ୍ ତତ୍ ।୮୭।**

ଉତ୍ତର : ଭକ୍ତି, ଜ୍ଞାନ ଓ ବୈରାଗ୍ୟ ତିନିଜଣ ଯାକ ଅତି ଖୁସିରେ ଜଣେ ଜଣେ ଦକ୍ଷ ନର୍ତ୍ତକ-ନର୍ତ୍ତକୀ ସଦୃଶ ନାଚିବାରେ ଲାଗିଲେ । ଏ ଦିବ୍ୟ ଅବସ୍ଥାରେ ଭଗବାନ ମଧ୍ୟ ପରମ ଆନନ୍ଦରେ ବକ୍ତାଦି ସହିତ ଶ୍ରୋତାମାନଙ୍କୁ ବର ଯାଚିଲେ ।

ପ୍ରଶ୍ନ- ୯୯ : ନାରଦ଼ଙ୍କ ସହିତ ଶୁକ, ପ୍ରହ୍ଲାଦ, ଉଦ୍ଧବ, ଇନ୍ଦ୍ର, ଅର୍ଜୁନ, ୪କୁମାର ଆଦି ସମସ୍ତେ କି କି ବର ମାଗିଲେ ?

**ଦାରିଦ୍ର୍ୟ ଦୁଃଖ ଜ୍ୱରଦାହିତାନାଂ**
**ମାୟା ପିଶାଚି ପିରମର୍ଦ୍ଦିତାନାମ୍ ।**
**ସଂସାର ସିନ୍ଧୌ ପରିପାତିତାନାଂ**
**କ୍ଷେମାୟ ବୈ ଭାଗବତଂ ପ୍ରଗର୍ଜତି ।୯୨।**

ଉତ୍ତର : ସେମାନେ ମାଗିଥିବା ବରଟି ହେଲା-କଳିଯୁଗରେ କର୍ମକାଣ୍ଡୀମାନେ ଦାରିଦ୍ର୍ୟ ଦୁଃଖରେ ସଢୁଥିବା ବେଳେ, ଜ୍ଞାନକାଣ୍ଡୀମାନେ ସ୍ୱରୂପାବଳିକା ମାୟାରୁ ମୁକ୍ତ ହେଲେ ମଧ୍ୟ ଗୁଣାବଳିକା ମାୟାରେ ତ୍ରାହି ତ୍ରାହି ଡ଼ାକିଲା ବେଳେ ଓ ଉପାସନା କାଣ୍ଡୀମାନେ ସକାମ ଭକ୍ତି କରି କରି ମାୟାରୂପୀ ମୁଁ-ମୋର ରୂପି ମାୟା ନିର୍ମିତ ଭବସାଗରରେ ବୁଡ଼ି ଯାଉଥିଲା ବେଳେ ଯଦି ସେମାନଙ୍କର ଜନ୍ମ-ଜନ୍ମାନ୍ତରର ପୁଣ୍ୟ ଫଳ ସ୍ୱରୂପ ସତ୍‌ସଙ୍ଗ ପ୍ରଭାବରେ ଶ୍ରୀମଦ୍ଭାଗବତ ସପ୍ତାହ ଯଜ୍ଞରେ ତନ୍ ମନ୍ ଧନ୍ ଦେଇ ଶରଣ ପଶିବେ ତେବେ ଭକ୍ତି-ଜ୍ଞାନ-ବୈରାଗ୍ୟଙ୍କୁ ଧରି ଭଗବାନ ପ୍ରତ୍ୟେକ ଶ୍ରୋତା ହୃଦୟ କମଳରେ ଉଦୟ ହେବେ ହିଁ ହେବେ । ଭଗବାନଙ୍କ ମୁଖରୁ ''ଏବଂ ଅସ୍ତୁ'' ପ୍ରତିଶ୍ରୁତି ପାଇବା ପରେ

ସମସ୍ତେ ଭଗବାନଙ୍କର ଜୟଧ୍ୱନି କରି ଗଗନ ପବନ ପ୍ରକମ୍ପିତ କରି ପକାଇଥିଲେ ।

**ବିଶେଷ ଦ୍ରଷ୍ଟବ୍ୟ-** ପଦ୍ମପୁରାଣ ବର୍ଣ୍ଣିତ ଭାଗବତ ସପ୍ତାହ ଯଜ୍ଞ ଅନୁଷ୍ଠାନର ମାହାତ୍ମ୍ୟ ୯୯ଟି ଶ୍ଳୋକ ମାଧ୍ୟମରେ ଏକ ମନୋହର ଦୃଷ୍ଟାନ୍ତ ସହିତ ବର୍ଣ୍ଣନା କରାଗଲା ।

ଏବେ ସ୍କନ୍ଦ ପୁରାଣ ବର୍ଣ୍ଣିତ ଭାଗବତ ମାହାତ୍ମ୍ୟ ୯ଟି ଶ୍ଳୋକ ମାଧ୍ୟମରେ ବର୍ଣ୍ଣିତ ହେବ । ସେଥିରେ ପ୍ରତିପାଦିତ ହେବ ଯେ ଗୀତା ପାପ ନାଶକ, ରାମାୟଣ ତାପ ନାଶକ ଓ ଭାଗବତ ପାପ ଓ ତାପ (ତ୍ରିତାପ) ଉଭୟର ନାଶକ । ପାପ ସହିତ ତାପର ବୀଜ-ବୃକ୍ଷ ସମ୍ବନ୍ଧ ଥାଏ ।

## ଶ୍ରୀମଦ୍ଭାଗବତ ମାହାତ୍ମ୍ୟମ୍

### ସ୍କନ୍ଦ ପୁରାଣ-ବିଷ୍ଣୁଖଣ୍ଡେ (ଅଧ୍ୟାୟ-୧, ଶ୍ଳୋକ-୩୯)

**ବକ୍ତା-ସ୍ୱୟଂ ଭଗବାନ ଶ୍ରୋତା-ବେଦଗର୍ଭ ଚତୁର୍ମୁଖୀ ବ୍ରହ୍ମାଜୀ**

**ଶ୍ରୀ ଭଗବାନ ଉବାଚ**

ପ୍ରଶ୍ନ-୧୦୦ : ତିନି ଲୋକ ବିଖ୍ୟାତ ୧୦ ଲକ୍ଷଣଯୁକ୍ତ ମହାପୁରାଣ ଶ୍ରୀମଦ୍ ଭାଗବତକୁ ଶ୍ରଦ୍ଧାଯୁକ୍ତ ହୋଇ ଶ୍ରବଣ କଲେ କ'ଣ ହୁଏ ?

**ଶ୍ରୀମଦ୍ଭାଗବତଂ ନାମ ପୁରାଣଂ ଲୋକ ବିଶ୍ରୁତମ୍ ।**
**ଶୃଣୁୟାତ୍ ଶ୍ରଦ୍ଧୟା ଯୁକ୍ତୋ ମମ ସନ୍ତୋଷ କାରଣମ୍ ।୧।**

ଉତ୍ତର : ସ୍ୱୟଂ ଶ୍ରୀ ଭଗବାନ ପ୍ରସନ୍ନ ହୁଅନ୍ତି । ଜୀବର ଚରମ ଓ ପରମ ଲକ୍ଷ୍ୟ ପ୍ରାପ୍ତି ଘଟେ ଅତି ବିଖ୍ୟାତ (ବିଶ୍ରୁତଂ) ଭାଗବତ କଥା ଶ୍ରବଣରେ ।

ପ୍ରଶ୍ନ-୧୦୧ : କ'ଣ କଲେ ମନୁଷ୍ୟ କଳିଯୁଗର ଉତ୍ପୀଡ଼ନ (ତିନିତାପ) ରୁ ମୁକ୍ତ (କଳିବାହ୍ୟା) ହୋଇପାରିବ ?

**ନିତ୍ୟଂ ମମ କଥା ଯତ୍ର ତତ୍ର ତିଷ୍ଠନ୍ତି ବୈଷ୍ଣବାଃ ।**
**କଳିବାହ୍ୟା ନରାଃ ତେ ବୈ ଯେଽର୍ଚ୍ଚୟନ୍ତି ସଦା ମମ ।୫।**

ଉତ୍ତର. ଯଦି ସେମାନଙ୍କ ଗୃହରେ ପ୍ରତ୍ୟେକ ଦିନ ଶ୍ରୀମଦ୍‌ଭାଗବତ ଶ୍ରବଣ,କୀର୍ତ୍ତନ ମନନ ଓ ପୂଜନ ହେଉଥିବ । ସାଧୁ, ବୈଷ୍ଣବମାନଙ୍କ ସତ୍‌ସଙ୍ଗ ପ୍ରାପ୍ତ ହେଉଥିବ ସେହିଭଳି ଘରେ ଦୁଃଖଶୋକ ଖୋଜିଲେ ମଧ୍ୟ ମିଳିବନି ।

ପ୍ରଶ୍ନ-୧୦୨ : ଯେଉଁ ବୈଷ୍ଣବମାନେ ପଠନ ଶ୍ରବଣ ସୁବିଧା ଅଭାବରେ କେବଳ ଶ୍ରୀମଦ୍‌ଭାଗବତ ଶାସ୍ତ୍ର/ଗ୍ରନ୍ଥକୁ ପୂଜନ କରିଥାନ୍ତି ସେମାନଙ୍କୁ କି ଫଳ ପ୍ରାପ୍ତି ହୁଏ ?

**ବୈଷ୍ଣାବାନାଂ ତୁ ଶାସ୍ତ୍ରାଣି ଯେଽର୍ଚ୍ଚୟନ୍ତି ଗୃହେ ନରାଃ ।**
**ସର୍ବପାପ ବିନିର୍ମୁକ୍ତାଃ ଭବନ୍ତି ସୁରବନ୍ଦିତାଃ ।୬।**

ଉତ୍ତର : ସେମାନେ ସାନ ବଡ଼ ସମସ୍ତ ପାପରୁ ଏପରିକି ଗୋ ହତ୍ୟା, ବ୍ରହ୍ମହତ୍ୟା, ସ୍ତ୍ରୀ ହତ୍ୟା, ସ୍ୱର୍ଣ୍ଣ ଚୋରୀ ଓ ଗୁରୁ ତଳ୍ପ ଗମନ ଜନିତ ଅପରାଧରୁ ମୁକ୍ତି ପ୍ରାପ୍ତ ହୁଅନ୍ତି । ସ୍ୱର୍ଗର ଦେବତାମାନେ ମଧ୍ୟ ସେଭଳି ବୈଷ୍ଣବମାନଙ୍କୁ ବିନୀତ ବନ୍ଦନା କରନ୍ତି ।

ପ୍ରଶ୍ନ-୧୦୩ : ଏ ଘୋର କଳିଯୁଗରେ ବୈଷ୍ଣବମାନେ କାହାକୁ ଭୟ କରନ୍ତି ନି ?

**ଯେଽର୍ଚ୍ଚନ୍ତି ଗୃହେ ନିତ୍ୟଂ ଶାସ୍ତ୍ରଂ ଭାଗବତଂ କଳୌ ।**
**ଆସ୍‌ଫୋଟୟନ୍ତି ବଲ୍‌ଗନ୍ତି ତେଷାଂ ପ୍ରୀତୋ ଭବାମି-ଅହମ୍ ।୭।**

ଉତ୍ତର : ମନ୍ତ୍ରୀ, ଯନ୍ତ୍ରୀ, ତନ୍ତ୍ରୀ, ରୋଗୀ, ଭୋଗୀ, ଯୋଗୀ, ଦେବ ଦାନବ ଆଦି ଡ଼ରୁଥିବା ମୃତ୍ୟୁକୁ ମଧ୍ୟ ନୁହେଁ । ଇସ୍କନ୍ ଦୀକ୍ଷିତ ବିଦେଶୀ ବୈଷ୍ଣବଙ୍କ ଭଳି ମୃତ୍ୟୁକୁ ମଧ୍ୟ ଡ଼ରାଇ ଡ଼ିଆଁ କୁଦା କଲେ (ବଲ୍‌ଗନ୍ତି) ଭଗବାନ ପ୍ରସନ୍ନ ହୁଅନ୍ତି । ଯମ କିମ୍ବା ଯମଦୂତ ପାଖ ମାଡ଼ନ୍ତିନି ।

ପ୍ରଶ୍ନ-୧୦୪ : ଶ୍ରୀମଦ୍‌ଭାଗବତ ପଠନ କର କି ନକର, ଅର୍ଚ୍ଚନ କର କି ନକର ଗ୍ରନ୍ଥଟିକୁ କେବଳ ଗୃହରେ ରଖିନେଲେ କି ଲାଭ ହୁଏ ଜାଣିଛକି ? (ହେ ପୁତ୍ର ବ୍ରହ୍ମାଜୀ)

**ଯାବତ୍ ଦିନାନି ହେ ପୁତ୍ର ଶାସ୍ତ୍ରଂ ଭାଗବତଂ ଗୃହେ ।**

**ତାବତ୍ ପିବନ୍ତି ପିତରଃ କ୍ଷୀରଂ ସର୍ପି ମଧୁ-ଉଦକମ୍ ।୬।**

ଉତ୍ତର : ପ୍ରେତ ଲୋକସ୍ଥିତ ପିତୃପୁରୁଷମାନେ ଶ୍ରାଦ୍ଧାରେ ଅର୍ପଣ କରାଯାଉଥିବା, ଦୁଧ, ଘିଅ, ମଧୁ ଓ ଗଙ୍ଗାଜଳ ଆଦି ନୈବେଦ୍ୟ ଗ୍ରହଣ କରୁଥାନ୍ତି । ବଦଳରେ ବର୍ଷା କରନ୍ତି ଅଜସ୍ର ଆଶୀର୍ବାଦ (ନୃତ୍ୟନ୍ତି ପିତରଃ ସ୍ୱର୍ଗେଽପି ତେଷାଂ)।

ପ୍ରଶ୍ନ-୧୦୫ : ଶ୍ରୀମଦ୍‌ଭାଗବତ ଗ୍ରନ୍ଥ ଖଣ୍ଡିକ ଯେଉଁ ଗୃହରେ ବା ମଠ ମନ୍ଦିରରେ ଥାଆନ୍ତି ସେଠରେ ଆଉ କିଏ କିଏ ସବୁ ଥାଆନ୍ତି? (ଯଦି ସେମାନଙ୍କ ସନ୍ତାନମାନେ ଘରେ ବହିଟିକୁ ପଠନ, ପାଠନ, ପୂଜନ କରୁଥାନ୍ତି ।)

**ଯତ୍ର ଯତ୍ର ଭବେତ୍ ପୁଣ୍ୟଂ ଶାସ୍ତ୍ରଂ ଭାଗବତଂ କଳୌ ।**
**ତତ୍ର ତତ୍ର ସଦା ଏବ-ଅହଂ ଭବାମି ତ୍ରିଦଶୈଃ ସହ ।୧୫।**

ଉତ୍ତର : ସ୍ୱୟଂ (ଅହଂ) ଭଗବାନ, ଇନ୍ଦ୍ର, ଚନ୍ଦ୍ର,ସୂର୍ଯ୍ୟ, ଗଣେଶ,ଦୂର୍ଗା, ବ୍ରହ୍ମା, ଶଙ୍କରାଦି ଦେବୀ ଦେବତାଙ୍କ (ତ୍ରିଦଶୈ) ଗହଣରେ ଉପସ୍ଥିତ ରହନ୍ତି । ପୁଣି ତାହା ସଶରୀରେ (ସୁଲଭଂ ଆତ୍ମ ଭକ୍ତୌ) ଭକ୍ତକୁ ସାକ୍ଷାତ୍ ଦର୍ଶନ ଦେଲାଭଳି ।

ପ୍ରଶ୍ନ-୧୦୬ : ଭଗବାନ ଓ ଦେବୀ ଦେବତାଙ୍କ ବ୍ୟତୀତ ଆଉ କିଏ କିଏ ଭାଗବତ କଥା ଶ୍ରବଣ କୀର୍ତ୍ତନ ସ୍ଥଳରେ ଉପସ୍ଥିତ ରହନ୍ତି ?

**ତତ୍ର ସର୍ବାଣୀ ତୀର୍ଥାନି ନଦୀ ନଦ ସରାଂସି ଚ ।**
**ଯଜ୍ଞାଃ ସପ୍ତପୁରୀ ନିତ୍ୟଂ ପୁଣ୍ୟାଃ ସର୍ବେ ଶିଳୋଚ୍ଚୟାଃ ।୧୬।**

ଉତ୍ତର : ବଦ୍ରିନାଥ, ହରିଦ୍ୱାର, ଋଷିକେଶ, ପ୍ରୟାଗ, ମଥୁରା, ବୃନ୍ଦାବନ, ଜଗନ୍ନାଥ ପୁରୀ ନବଦ୍ୱୀପ ଆଦି ତୀର୍ଥ ସକଳ, ଗଙ୍ଗା, ଯମୁନା, ସରସ୍ୱତୀ, ସିନ୍ଧୁ, ନର୍ମଦା, କାବେରୀ, ସିପ୍ରା, କୃଷ୍ଣବେଣୀ, ଗୋଦାବରୀ ଆଦି ନଦୀ ସକଳ ବ୍ରହ୍ମପୁତ୍ର ଆଦି ନଦ ଓ କୁରୁକ୍ଷେତ୍ର ମଧ୍ୟସ୍ଥ ବ୍ରହ୍ମସର, ପୁରୁଷୋତ୍ତମ କ୍ଷେତ୍ରସ୍ଥ ନରେନ୍ଦ୍ର ସରୋବର, ଲିଙ୍ଗରାଜ କ୍ଷେତ୍ରସ୍ଥ ବିନ୍ଦୁସର, ହିମାଳୟ ସ୍ଥିତ ମାନସରୋବର ଆଦି ସକଳ ସରୋବର, ଅଶ୍ୱମେଧ, ବାଜପେୟ, ପୁତ୍ରେଷ୍ଟି ଆଦି ଯଜ୍ଞସକଳ, ଅଯୋଧ୍ୟା, ମଥୁରା ମାୟା, କାଶୀ, କାଞ୍ଚି, ଅବନ୍ତିକା ଆଦି ସପ୍ତପୁରୀ ଆଦି ତୀର୍ଥସ୍ଥାନ ସହିତ ଗୋବର୍ଦ୍ଧନ ବିନ୍ଧ୍ୟ, ସୀମାଚଳ,ହିମାଚଳ ଆଦି ପୁଣ୍ୟ ପର୍ବତମାନେ ମହାନନ୍ଦରେ ସୂକ୍ଷ୍ମଶରୀର ଧରି ନିତ୍ୟ ନିବାସ କରିଥାନ୍ତି ।

ପ୍ରଶ୍ନ-୧୦୭ : ଜନ୍ମଜନ୍ମାନ୍ତର ତପସ୍ୟାର ଫଳ ଉଦୟରେ ଭୋଗ ଭୂମି ଇଂଲଣ୍ଡ, ଆମେରିକା, ଫ୍ରାନ୍ସ, ଆଦି ଛାଡ଼ି ପବିତ୍ର କର୍ମଭୂମି ଭାରତ ମାଟିରେ ଜନ୍ମଲାଭ କରି ଯଦି ଭାଗବତ କଥା ଶ୍ରବଣରେ ଯାହାଙ୍କର ରତି ନହେଲା ହେ ବ୍ରହ୍ମାଜୀ(ଲୋକେଶ) ଜୀବନ ଶେଷରେ ସେମାନଙ୍କର କି ଗତି ହେବ ଜାଣିଛ କି ?

**ନ ଶୃଣ୍ୱନ୍ତି ନ ହୃଷ୍ୟନ୍ତି ଶ୍ରୀମଦ୍ଭାଗବତଂ ପରମ୍ ।**
**ସତ୍ୟଂ ସତ୍ୟଂ ହି ଲୋକେଶ ତେଷାଂ ସ୍ୱାମୀ ସଦା ଯମ ।୧୯।**

ଉତ୍ତର : ଭଗବାନ ସ୍ୱୟଂ ସତ୍ୟ ପ୍ରତିଜ୍ଞା କରି କହୁଛନ୍ତି- ସେମାନେ ଜୀବନ କାଳରେ ତ୍ରିତାପରେ ସଢ଼ିବେ । ମୃତ୍ୟୁକୁ ଭୟ କରୁଥିବେ । ଜୀବନ କାଳ ଅବସାନରେ ଯମ ଦଣ୍ଡ ମଧ୍ୟ ଭୋଗିବେ । ସେମାନଙ୍କର ଜନ୍ମ-ଜୀବନ-ଜରା-ମରଣ ସକଳ ଦୁଃଖମୟ ।

ପ୍ରଶ୍ନ-୧୦୮ : ଶେଷରେ ଭଗବାନ କହିଲେ "ହେ ବ୍ରହ୍ମାଜୀ (ଚତୁର୍ବକ୍ତ୍ର), ଯେଉଁଠାରେ ଶ୍ରୀମଦ୍ଭାଗବତ ପାରାୟଣ, ପ୍ରବଚନ, ଅର୍ଚ୍ଚନ ଆଦି ଅନୁଷ୍ଠିତ ହୁଏ ମୁଁ ସେଠାକୁ କେତେ ଆଗ୍ରହରେ ଯାଏ ଜାଣିଛ କି?"

**ଯତ୍ର ଯତ୍ର ଚତୁର୍ବକ୍ତ୍ର ଶ୍ରୀମଦ୍ଭାଗତଂ ଭବେତ୍ ।**
**ଗଚ୍ଛାମି ତତ୍ର-ତତ୍ର-ଅହଂ ଗୌଃ ଯଥା ସୁତବତ୍ସଳା ।୨୩।**

ଉତ୍ତର: ଭଗବାନ କହିଲେ, "ମୁଁ ଧାଏଁ ସେହିଭଳି ଉତ୍କଣ୍ଠାରେ, ଯେପରି କଅଁଳା ବାଛୁରୀ ପଛରେ ନବପ୍ରସୂତି ଗାଈ ଧାଉଁଥାଏ ।

ସେଇଥିପାଇଁ ତ ଭଗବାନଙ୍କ ନାମ କର୍ମ ବତ୍ସଳ, ଯୋଗବତ୍ସଳ କି ଜ୍ଞାନ ବତ୍ସଳ ନୁହେଁ। ସେ କେବଳ ଭକ୍ତ ବତ୍ସଳ । ଭକ୍ତ-ଭଗବାନଙ୍କର ସଂପର୍କ ଗୋ-ବତ୍ସା ସମ୍ପର୍କ ପରି ତୀବ୍ର ବ୍ୟାକୁଳତା ଭରା । ଭକ୍ତ ଭଗବାନ କେହି କାହାରିକୁ ଦଣ୍ଡେ ଭୁଲିବା ଅସମ୍ଭବ । ମିଳନରେ ବ୍ରହ୍ମ ଆନନ୍ଦ । ପୁଣି ବିରହରେ ଦ୍ୱିଗୁଣିତ, ବହୁଗୁଣିତ ପ୍ରେମାନନ୍ଦ । ଯାହାର ଦୃଷ୍ଟାନ୍ତ ମିଳେ ଶ୍ରୀମଦ୍ଭାଗବତ ମହାଗ୍ରନ୍ଥ ପୃଷ୍ଠା-ମାନଙ୍କରେ ।

# ଭାଗବତ ମାହାତ୍ମ୍ୟ ପ୍ରକରଣ ସାର

ସାର ଅସାରକୁ ନେଇ ଏ ଚିତ୍ର ବିଚିତ୍ର ସଂସାର । ଏଥିରେ ସଂସାରୀ ପାଏ ବିଷୟ ଆନନ୍ଦ ନିଜ ମନ ସହିତ ବିଷୟ ଭୋଗ ସୁଖକୁ ମିଳନ କରି । ଯୋଗୀ ପାଏ ବ୍ରହ୍ମାନନ୍ଦ ସମାଧିରେ ମନକୁ ବିଷୟଠାରୁ ଅଲଗା କରି । ଭକ୍ତ ପାଏ ପ୍ରେମାନନ୍ଦ ମନକୁ ନିର୍ବିଷୟୀ କୃଷ୍ଣ ନାମ, ରୂପ, ଗୁଣ, ଲୀଳାଧାମ, ବୈଷ୍ଣବ ସେବାରେ ଲଗାଇ । କାରଣ କୃଷ୍ଣ ସ୍ୱୟଂ ଆନନ୍ଦ ସ୍ୱରୂପ । କଂସ ବିଜୟ, ରୁକ୍ମିଣୀ ବିବାହ ଓ ଗୋପୀମାନଙ୍କ ସହ ମହାରାସରେ ଯେଉଁ ଆନନ୍ଦ କୃଷ୍ଣଙ୍କର, କୁରୁ ପାଣ୍ଡବ ମହାସମରରେ ଓ ଦ୍ୱାରକା ଭୁବନ, ଯଦୁବଂଶୀଙ୍କ ମହାବିନାଶରେ ସେଇ ଆନନ୍ଦ ତାଙ୍କର । ସଂକ୍ଷେପରେ ଏଇ ତ ସଂସାର ବୈଚିତ୍ର୍ୟ ।

ଗୋବିନ୍ଦଙ୍କର ବାର୍ତ୍ତା ଏ ସଂସାରୀ ଜୀବକୁ କେବଳ ଏତିକି ଜଣାଇବାକୁ ଯେ ମନୁଷ୍ୟ ଜୀବନର ଚରମ ଲକ୍ଷ୍ୟ କେବଳ ଦିବ୍ୟ ଆନନ୍ଦ ପ୍ରାପ୍ତି । ବିଷୟ ଆନନ୍ଦ ଓ ସମାଧି ଆନନ୍ଦ ସବୁ ଅଧୁରା, ଅସଂପୂର୍ଣ୍ଣ ଆନନ୍ଦ ମାତ୍ର । ଜ୍ଞାନୀମାନଙ୍କର ତତ୍ତ୍ୱଜ୍ଞାନ ଦୃଷ୍ଟି । ମୁଁ ଭଗବାନ ଏକ । ମୁଁ ଓ ବ୍ରହ୍ମ ଉଭୟେ ସଚ୍ଚିଦାନନ୍ଦମୟ । ସ୍ୱରୂପାବସ୍ଥାନରେ ମୋର ମୁକ୍ତି । ଭକ୍ତ ମାନଙ୍କର କିନ୍ତୁ ପ୍ରେମ ଦୃଷ୍ଟି । ମୁଁ ଓ ଭଗବାନ

ଭିନ୍ନ । ମୁଁ ସେବକ ସେ ସେବ୍ୟ। ତାଙ୍କର ଓ ତାଙ୍କ ଭକ୍ତଙ୍କର ସେବା ମୋର ଲକ୍ଷ୍ୟ । ମୁକ୍ତି ମୋ ପାଇଁ ପିଶାଚିନୀ । ଇନ୍ଦ୍ରପଦାଦି ଭୁକ୍ତି ମଧ୍ୟ ମୋ ପାଇଁ ଶୁକରୀ ବିଷ୍ଠା ।

ଜ୍ଞାନ ମାର୍ଗ ତ୍ୟାଗ ବୈରାଗ୍ୟର ମାର୍ଗ । କଳି ଯୁଗର ସାଧାରଣ ସଂସାରୀ ଲୋକ ବିଷୟ ଭୋଗୀ । ମନ୍ଦ (ଅଳସୁଆ) ତାର ଇନ୍ଦ୍ରିୟ ଓ ମନ । ପୁଣି ମନ୍ଦ (ଅଳ୍ପ) ବୁଦ୍ଧି ସଂପନ୍ନ । କଳିଯୁଗର ମଣିଷ ମଦ, ବିଡ଼ି, ସିଗାରେଟ, ଆମିଷ ଭୋଜନ ଛାଡ଼ି ପାରେନା । ସେ ଘର ଦ୍ୱାର ସଂସାର, ପ୍ରଶଂସା, ପୁତ୍ର ଓ ପତ୍ନୀର ଲୋଭନୀୟ ଆସକ୍ତି ଛାଡ଼ିବ କେମିତି ? କାମ, କ୍ରୋଧ, ଲୋଭାଦି କବଳରେ ପଡ଼ି ଆଧି, ବ୍ୟାଧିରେ ସଢ଼ି ତ୍ରାହି ତ୍ରାହି ଡ଼ାକୁଥାଏ । ତା ପକ୍ଷରେ ସଂସାର ବୈରାଗ୍ୟ ଅସମ୍ଭବ । ଭକ୍ତି ମାର୍ଗରେ କିନ୍ତୁ ଅଳ୍ପ ବୈରାଗ୍ୟରେ କାମ ଚଳିଯାଏ । ସେଥିପାଇଁ ତା ପାଇଁ ଏଇ ଭାଗବତ ପ୍ରଦର୍ଶିତ ଭକ୍ତି ମାର୍ଗ, ସୁଖକର, ସହଜ ସାଧ୍ୟ । ଲାଗୁ ପଛେ କୋଟି ଜନ୍ମ । ପଡ଼ି ଉଠି ସେ ସେଥିରେ ଚାଲେ । କୃଷ୍ଣ ତା ହାତ ଧରିଥାନ୍ତି, ବେଳେବେଳେ ଦୁଃଖରେ ଜୀବ ଛାଟିପିଟି ହୁଏ । ହେଲେ ଗୋବିନ୍ଦ ଛାଡ଼ନ୍ତି କେତେବେଳେ? ଏହାହିଁ ସରଳ ଭାଗବତ ମାର୍ଗ ।

ଅଧ୍ୟାତ୍ମ ସାଧନରେ ପତନ ହେଲେ କର୍ମ ଯୋଗୀ ହୁଏ ଦୁଃଖୀ । ଜ୍ଞାନ ଯୋଗୀ ହୁଏ ନାସ୍ତିକ । ଧ୍ୟାନଯୋଗୀ ବିଚରା ରୋଗ ଧରି ବସେ । ଭକ୍ତ ହୋଇଯାଏ ଅତିବେଶୀରେ ଭୋଗୀ ବା ବିଳାସୀ । ଭଗବାନ ଭକ୍ତ ଓ ଭକ୍ତି ପଥ ପାଇଁ ନିଜେ ଇନ୍‌ସୁରାନ୍‌ସ ବା ଜୀବନ ରକ୍ଷା ବ୍ୟବସ୍ଥା କରିଥାନ୍ତି **ନ ମେ ଭକ୍ତ ପ୍ରଣଶ୍ୟତି** ଘୋଷଣା କରି(ଗୀତା)। କଳିଯୁଗୀ ଗୃହସ୍ଥ ପାଇଁ ଭାଗବତ ଧର୍ମ ଆଚରଣ ଏକ ବିଲକ୍ଷଣ ଆଶ୍ୱାସନା । ସନ୍ନ୍ୟାସୀମାନଙ୍କ ପାଇଁ ଏ ଭାଗବତ ତ ରାଜମାର୍ଗ । ଶୁକଦେବ ପରମହଂସ ନିଜେ ତାର ସାକ୍ଷୀ । ଜନ୍ମ ଜାତ ପରମହଂସ ସେ । ଜନ୍ମ ହେଉ ହେଉ ପିତା-ମାତା-ସଂସାର ଛାଡ଼ି ପଳେଇଲେ କିନ୍ତୁ ଛାଡ଼ି ପାରିଲେନି ଭାଗବତ ପ୍ରେମରସ ସୌରଭର ଲୋଭନୀୟ ମହାଆକର୍ଷଣ । ପୁଣି ଫେରିଥିଲେ ବ୍ୟାସାଶ୍ରମକୁ । ଭାଗବତ ଗ୍ରନ୍ଥଙ୍କ ଆଶ୍ରୟରେ ରହିଲେ ।

ସନ୍ନ୍ୟାସୀମାନେ ଭଗବାନଙ୍କୁ ପାଇବାକୁ ଦଣ୍ଡକାରଣ୍ୟ ଭଳି ଘଞ୍ଚ ଜଙ୍ଗଲରେ ବୁଲନ୍ତି। ବଣରେ ପର୍ବତ ଗୁମ୍ଫାରେ ଡ଼େରା ପକାଇ ରହନ୍ତି । ଅଥଚ ସେଇ ଭଗବାନ କୃଷ୍ଣ ରୂପ ଧରି ଗୃହସ୍ଥ ଗୋପୀଙ୍କୁ ଦର୍ଶନ ଦେବାକୁ ବ୍ୟାକୁଳ ହୋଇ ଦୌଡ଼ନ୍ତି । ନିତ୍ୟ ଗୋଲକ ଧାମ ଛାଡ଼ି ପଳାଇ ଆସନ୍ତି ଭୌମ ବୃନ୍ଦାବନକୁ । କି ଆଶ୍ଚର୍ଯ୍ୟ

ସତେ ଏ କୃଷ୍ଣପ୍ରେମର ଦିବ୍ୟ ଦଉଡ଼ି । ଗୋବିନ୍ଦ କହନ୍ତି ଘରେ ରହିବା ପାପ ନୁହେଁ । ମନରେ ଘରକୁ ରଖିବା ପାପ । ନଉକା ପାଣିରେ ରହୁ । ପାଣି କିନ୍ତୁ ନଉକାରେ ରହିଲେ ବିପଦ । କୃଷ୍ଣ ସତର୍କ କରାନ୍ତି ଜୀବକୁ ବାସ ଛାଡ଼ ନାହିଁ ବାସନା ଛାଡ଼ । କାମ ଛାଡ଼ ନାହିଁ କାମନା ଛାଡ଼ ।

ସନ୍ଥ ଆଶ୍ରୟରେ ଭକ୍ତିଯୋଗ ସାଧକ ହୁଏ ସନ୍ଥ । ସାଧୁ ମଳୟ ପବନ । ସନ୍ଥ କାଠକୁ ଚନ୍ଦନ କରିପାରେ । ଭାଗବତ ଗ୍ରନ୍ଥ ହେଉ କି ଭାଗବତ ପନ୍ଥୀ ସନ୍ଥ ହେଉ । ଉଭୟେ ଆଶ୍ରିତଙ୍କୁ କରନ୍ତି ଭାଗବତ, ଭକ୍ତ, ସନ୍ଥ, ପରମହଂସ, ଗୋସ୍ୱାମୀ । ଆହୁରି କେତେ କ'ଣ। ଭାଗବତ କହନ୍ତି ଯେ ଭକ୍ତି କେବଳ ମନ୍ଦିରରେ ହୁଏନା । ବରଂ ସକଳ ସ୍ଥାନରେ ହୁଏ । ସକଳ ସମୟରେ ହୁଏ । ସକଳ ପରିସ୍ଥିତିରେ ହୁଏ । ମହାଭାରତ ଲଢ଼େଇ ଭୂଇଁରେ ବି ହୁଏ । ସକଳ ଜୀବଙ୍କ ଦ୍ୱାରା ହୁଏ । ଦସ୍ୟୁ ରତ୍ନାକର ଦ୍ୱାରା ହୁଏ । ଜଗାଇ ମାଧାଇଙ୍କ ଦ୍ୱାରା ହୁଏ । ମହାପାପୀ ଅଜାମିଳ ଦ୍ୱାରା ବି ହୁଏ । ସେ ତମୋଗୁଣୀ ଚଢ଼େଇ ଜଟାୟୁ ପକ୍ଷୀ ହେଉ । ହେଉ ପଛେ ପଶୁ ରୂପରେ ବାନର ହନୁମାନ, ଭଲ୍ଲୁକ, ଜାମ୍ବବାନ । ଅଜାତିଆ ଗୁହକ ଶବର, ଶୂଦ୍ରକୂଳ ଜାତ ବିଦୁର, ଭିଲୁଣୀ ଶବରୀ ସମସ୍ତଙ୍କୁ ସ୍ୱାଗତ ଜଣାନ୍ତି ଏହି ଭାଗବତ ଧର୍ମ । ସେମାନେ ସମସ୍ତେ ଗୋଟିଏ ଗୋଟିଏ ଶକ୍ତିଶାଳୀ ଇଞ୍ଜିନ୍। ତାଙ୍କ ପିଛା ଧରି ପାସେଞ୍ଜର ଡ଼ବା ହୋଇ କେତେ ଲୋକ ଏବେ ବି ଦୁସ୍ତର ମାୟାମୟ ଭବସାଗର ପାର ହୋଇ ପାରୁଛନ୍ତି ।

ଭକ୍ତି ତ ମନରେ କରିବାକୁ ହୁଏ । ଯାହା ମନରେ ଭକ୍ତି ହୋଇପାରେ ନା ତାକୁ ପ୍ରଣମରେ ତନରେ (ଦେହରେ ଇନ୍ଦ୍ରିୟରେ) ଭକ୍ତି ଅଭ୍ୟାସ କରିବାକୁ ପଡ଼େ । ପରମାତ୍ମାଙ୍କ ରୂପ ବରାହ, କଚ୍ଛପ, ମତ୍ସ୍ୟ ଭଳି କୁରୂପ ହୋଇପାରେ । ତଥାପି ତାଙ୍କ ସ୍ୱଭାବ ସର୍ବଦା ସୁନ୍ଦର । ଯାହାର ସ୍ୱଭାବ ମଇଳାଯୁକ୍ତ ସେଇତ ବିଚରା ଜୀବ । ଜୀବର ଦୁଃଖର ସାଥୀ ଈଶ୍ୱର । ସୁଖର ସାଥୀ ସିନା ସଂସାରୀ ବିଷୟୀ ସ୍ୱାର୍ଥୀ ଜୀବ । ଈଶ୍ୱର ବିପଦ ବେଳେ ପାଣ୍ଡବମାନଙ୍କ ପାଖେ ପାଖେ ରହୁଥିଲେ । ଯୁଧିଷ୍ଠିର ସିଂହାସନରେ ବସନ୍ତେ ଦ୍ୱାରକା ପଳାଇଗଲେ ।

ଯେତିକି ପରିଶ୍ରମରେ ଧନ, ସଂସାର, ସୁଖ ମିଳୁଛି ତା ଠାରୁ କମ ଶ୍ରମରେ ଈଶ୍ୱର ମିଳିଯିବେ । ବିନା ଡ଼ାକରାରେ ଶବରୁଣୀର ଫଳ, ବିଦୁରଙ୍କ ଶାଗ ଭଜା ଓ

ଗୋପୀଙ୍କ ଲହୁଣୀ ଚୋରାଇ ଖାଇବାକୁ ଧାଆଁନ୍ତି ବୋଲି ସିନା ସେ ଭଗବାନ । ଆମେ ଏତେ ଜପ, ତପ, ଧ୍ୟାନ, ପୂଜନ କରୁଛେ । ଆମକୁ ଗୋବିନ୍ଦ ନ ମିଳିବା କାରଣ କଅଣ ? ଆମ ସ୍ୱଭାବ ସଫ୍‌ଟ ଓୟାର୍ ସଂପୂର୍ଣ୍ଣ ସୁଧୁରି ନାହିଁ ବୋଲି । ସେ ଅପେକ୍ଷା କରିଛନ୍ତି । ଆମ ପାଖକୁ ସାଧୁ, ସନ୍ଥ ଆଦି ଗୁରୁ ପଠାଉଛନ୍ତି । ଗୁରୁ ଆମର ମନର ମଇଳା ଧୋଇ ଧାଇ ଦେବେ । ତେଣିକି ହରିକୃପା ଗୁରୁ ଗୋବିନ୍ଦଙ୍କ ହାତର କଥା । ଗୁରୁ ବନ୍ଦନା, ଭଗବତ ଶରଣାଗତିରେ ଆମ ଅହଂକାର ସୌଧ ଭାଙ୍ଗିପଡ଼େ । ସଂସାର ଆସକ୍ତିର ସମୁଦ୍ର ଶୁଖିଯାଏ ।

ଭାଗବତଙ୍କର ଆରମ୍ଭ ହରି ବନ୍ଦନାରେ । ଶେଷ ବି ହରି ବନ୍ଦନାରେ । ଆମକୁ ଶିକ୍ଷା ମିଳୁଛି ସଂସାରର ସକଳ କର୍ମ ହରି ବନ୍ଦନାରେ ଆରମ୍ଭ ହେବା କଥା ଓ ଶେଷ ହେବା କଥା ମଧ୍ୟ ।

ଭାଗବତଙ୍କ ମତରେ ଏ ସଂସାରର ପ୍ରତ୍ୟେକ ଜୀବ ଗୋଟିଏ ଗୋଟିଏ ପରୀକ୍ଷିତ । ପରମାତ୍ମାଙ୍କ ଦ୍ୱାରା ମାତୃ ଗର୍ଭରେ ପରିରକ୍ଷିତ, ପାଳିତ, ପୋଷିତ ଓ କୃପା ପ୍ରାପ୍ତ । ତକ୍ଷକ ସର୍ପ ହିଁ କାଳ ସର୍ପ । କାଳ ଆମ ସମସ୍ତଙ୍କୁ ଡ଼ରାଉଛି । ବ୍ରହ୍ମାଙ୍କୁ ମଧ୍ୟ କାଳ ଭୟ ଅଛି । ଲୋକେ ଭାବନ୍ତି କାଳ/ମୃତ୍ୟୁ ଅମଙ୍ଗଳମୟ କିନ୍ତୁ କାଳ ଯେ ଭଗବାନଙ୍କର ଏକ ଶକ୍ତି । ଜଣେ ପାପୀ ପାଇଁ କେବଳ ସେ ଅମଙ୍ଗଳମୟ । ମୃତ୍ୟୁଭୟ ନ ଥିଲେ କାହିଁକି କିଏ ଅବା ପାପମୟ ଭୋଗୀ ଜୀବନ ଛାଡ଼ି ହରି ଭଜନ କରନ୍ତା? ପାପ କଲାବେଳେ ମଣିଷ ଡ଼ରେ ନା । ଭୋଗରେ ମାତି ଥାଏ । ଡ଼ରେ ସେତେବେଳେ ଯେତେବେଳେ ବିଚରାକୁ ତାର ନିଜ କୃତ ପାପର ଫଳ ଭୋଗ କରିବାକୁ ପଡ଼େ ।

ବିଷୟୀ ମଣିଷ ସଂସାରରେ କେତେ ଲୋକଙ୍କୁ ଡରୁ ନାହିଁ । ଚାକର ମାଲିକକୁ । ବିକ୍ରେତା କ୍ରେତାଙ୍କୁ । ଓକିଲ ମହକିଲକୁ । ଚୋର ପୋଲିସକୁ । କଳା ବେପାରୀ ଇନ୍‌କମ ଟ୍ୟାକ୍ସ ବାଲାକୁ କିନ୍ତୁ ଭଗବାନଙ୍କୁ କି ତାଙ୍କ ଶକ୍ତି ମୃତ୍ୟୁକୁ ଡରୁ ନାହିଁ । ଫଳରେ ଆମର ଜୀବନ ପାପ ମୟ ହେଉଛି । କିଛି ପଇସା, ବ୍ୟାଙ୍କ ବ୍ୟାଲାନ୍ସ ଥିଲେ ଆମେ କେତେ ନିର୍ଭୟ । ପରମାତ୍ମାଙ୍କୁ ହାତରେ ରଖିଲେ କିସ ନ ହେବ ଭାଇ । ଭାଗବତଙ୍କର ଜ୍ଞାନ, ବୈରାଗ୍ୟ ଓ ଭକ୍ତି ମଣିଷକୁ ନିର୍ଭୀକ, ନିଷ୍ପାପ, ନିଃଶୋକ କରିପାରେ ।

ବିବାହ, ବ୍ରତ, ଗୃହ ପ୍ରତିଷ୍ଠା ଲାଗି ପ୍ରସ୍ତୁତି କରିବା ଭଳି ଆମକୁ ନିଜ ମରଣକୁ ସୁଧାରିବାକୁ ପ୍ରସ୍ତୁତ ହେବାକୁ ପଡ଼ିବ । ମୃତ୍ୟୁ ହିଁ ଜୀବନର ଅନ୍ତିମ ଅତିଥି। ତାକୁ ସ୍ୱାଗତ କରିବାକୁ ଭାଗବତ ବାଟ ବତାନ୍ତି । ଭାଗବତ ଆମକୁ ପଚାରନ୍ତି

ଭଗବାନ ଆମକୁ କୃପା କରି ଦୁଇ ଦୁଇଟା ହସ୍ତ, ଚକ୍ଷୁ, ନାସିକା, ପାଦ ଆଦି ଦେଇଛନ୍ତି । ଆମେ ସେଗୁଡ଼ିକର କି ସଦୁପଯୋଗ କରିଛେ !!! ମୃତ୍ୟୁକୁ ଉଜ୍ଜ୍ୱଳ କରିବ ତ ପ୍ରାପ୍ତ ତନ, ମନ, ଧନର ସଦୁପଯୋଗ କର । ନଚେତ କଳା ଧନ, ମଇଳା ମନ ଓ କଳା କଳିଜା(ହୃଦୟ) ଧରି ଶେଷରେ ହରବର ହେବ । ଭାଗବତ ନାସ୍ତିକଙ୍କୁ କରନ୍ତି ଆସ୍ତିକ । ଆସ୍ତିକକୁ କରନ୍ତି ଭାଗବତ ସ୍ୱରୂପ ।

ଭାଗବତ ବ୍ୟାସଦେବଙ୍କର ଅନ୍ତିମ ରଚନା । କର୍ମ, ଜ୍ଞାନ, ଯୋଗ ମାର୍ଗ ଉଜ୍ଜ୍ୱଳ କରିବାକୁ ସତର ପୁରାଣ, ବେଦାନ୍ତ ଦର୍ଶନ, ବେଦ ବିଭାଜନ କେତେ କ'ଣ କଲେ । ତଥାପି ମନ ଅଶାନ୍ତ । କଳିଯୁଗରେ ଏସବୁ କିଏ ପଢ଼ିବ ? ତାକୁ ପରା ଫାଷ୍ଟଫୁଡ୍, ମୋବାଇଲ ମିସ କଲ, ଟିଭି ସରିଅଲ, କ୍ରିକେଟ୍ ସ୍କୋର ଦେଖିବାକୁ ବେଳ ମିଳିବନି । ନରଃ, ନରୌ, ନରାଃ କିଏ ଘୋଷିବ? ଭାଗବତ କିନ୍ତୁ ପ୍ରେମ ଶାସ୍ତ୍ର । ତାକୁ ଶୁଣୁ ଶୁଣୁ ଅଙ୍କୁରେ ସଂସାର ବୈରାଗ୍ୟ । ସଂସାର ଆସକ୍ତି ବୃକ୍ଷର ଚେର ମୂଳ ଉପୁଡ଼ି ପଡ଼ନ୍ତି । ନାରଦଜୀଙ୍କ ଉପଦେଶରେ ବ୍ୟାସଜୀ ଏଥର ଧ୍ୟାନ କଲେ ବଦରି ବନରେ । ମାନସପଟରେ ଦର୍ଶନ କଲେ ମାୟା, ମାୟାଧୀଶ, ମହାବୈକୁଣ୍ଠର ଦିବ୍ୟ ଲୀଳା । ସ୍ମରଣ କଲେ ଓଁକାର ରୂପୀ ଗଣେଶ ଭଗବାନଙ୍କୁ । ଧ୍ୟାନରେ ଯାହା ଦେଖିଲେ ଡ଼ାକି ଚାଲିଲେ । ଗଣପତି ଲେଖିଲେ ଅଠର ହଜାର ମନ୍ତ୍ର, ତିନିଶତ ପଞ୍ଚତିରିଶ ଅଧ୍ୟାୟ, ତେୟାଳିଶି ପ୍ରକରଣ, ଦ୍ୱାଦଶ ସ୍କନ୍ଧ, ବିଶିଷ୍ଟ ଏହି ଶ୍ରୀମତ୍ ଭାଗବତ ଗ୍ରନ୍ଥ । ଶ୍ରୀମଦ୍ ଭାଗବତ ଗ୍ରନ୍ଥ ଲେଖା ସିନା ସମାପ୍ତ ହେଲା । ପୁଣି ଏକ ସମସ୍ୟା । କିଏ ପ୍ରବଚନ କରିବ ? କେଉଁଠି କରିବ ? କେତେବେଳେ କରିବ ? ପୁଣି ବ୍ୟାସଜୀଙ୍କର ମୁଣ୍ଡ ବ୍ୟଥା । ତେଣେ ଭଗବାନ ଶଙ୍କରଙ୍କ ବୈରାଗ୍ୟ ଦାନା ବାନ୍ଧିଲା । ଶ୍ରୀରାଧାଙ୍କ କୃପାଶକ୍ତିକୁ ଆଧାର କରି ଶଙ୍କରଙ୍କ ବୈରାଗ୍ୟ ପ୍ରକଟ ହେଲେ ଶୁକ ରୂପରେ । ଷୋଳ ବର୍ଷ ରହିଗଲେ ବ୍ୟାସପତ୍ନୀ ଅରଣୀ ଦେବୀ ବା ବିଟିକା ଦେବୀଙ୍କ ଗର୍ଭରେ । ମାତା ଗର୍ଭରେ ବି ସେ ପରମହଂସ । ତଥାପି ତାଙ୍କର ମାୟାକୁ ଡ଼ର । ଯୋଗ ବଳରେ ମାତା କଦଳୀ ଭିତରେ ଖାଇଲେ ଅଭିମନ୍ତ୍ରିତ କୌପୀନ କାଛନି । ତେବେ ଯାଇ ବ୍ରହ୍ମଜ୍ଞାନୀଙ୍କର ମାତୃହରଣ ଦୋଷ ଭୟ କଟିଲା । ସମାଧିସ୍ଥ ଅବସ୍ଥାରେ ଜନ୍ମ ହେଉ ହେଉ ଚାଲିଲେ ହିମାଳୟ ଗିରି ଗୁହାକୁ । ପିତା-ମାତା ବ୍ୟାକୁଳ ହେଲେ । ଶେଷରେ ଦୌଡ଼ିଲେ ବ୍ୟାସଦେବ ଶୁକଦେବଙ୍କ ପଛେ ପଛେ । ତଥାପି ସକଳ କାତର ନିବେଦନ ବ୍ୟାସଦେବଙ୍କ ବିଫଳ । ଶୁକଦେବଙ୍କ ତରଫରୁ ବୃକ୍ଷମାନେ ଉତ୍ତର ଦେଲେ, 'ହେ ନରଶ୍ରେଷ୍ଠ ମୁନିବର, ତୁମେ ପୁତ୍ର ବିୟୋଗରେ ଦୁଃଖିତ । ଆମେମାନେ ଜାତିର ବୃକ୍ଷ, ସ୍ୱଭାବରେ ତମୋଗୁଣୀ। ଫଳ ଆମର ପୁତ୍ର । ଲୋକେ ଆମକୁ ଟେକା

ମାରନ୍ତି । ସେମାନଙ୍କୁ ଆମେ କିନ୍ତୁ ଫଳ ଦେଉ । ତୁମ ପୁଅ ଯାଉଛି ଯାଉ । ଭଗବାନଙ୍କୁ ତ ଖୋଜିବ । ଦୁଃଖ କାହିଁକି ? ସେ ତ ଜଗତ କଲ୍ୟାଣ କାମରେ ଲାଗିବ ।'

ବ୍ୟାସଦେବଙ୍କର ହୋସ ଆସିଲା । ବ୍ରହ୍ମ ତତ୍ତ୍ୱ ବୁଝିଗଲେ । ପଥର ମାରିବା ଲୋକକୁ ଫଳ ଦେଇ ସଂସାର କଲ୍ୟାଣ କାମନା ଯେ କରେ ସେ ସିନା ସଚ୍ଚା ବୈଷ୍ଣବ । କିଏ କାହାର ପିତା, ପୁତ୍ର, ପତ୍ନୀ ? ସବୁ କିଛି ସେଇ ପିତାଙ୍କ ପିତା ପରମପିତା ନାରାୟଣ । ଫେରି ଆସିଲେ ବ୍ୟାସଦେବ ଆଶ୍ରମକୁ । ଭାଗବତରେ ଚାରୋଟି ଶ୍ଳୋକ ଅଭ୍ୟାସ କରାଇଲେ ଶିଷ୍ୟମାନଙ୍କୁ । ଶୁକଦେବ ତପ କରୁଥିବା ସ୍ଥାନରେ ଶିଷ୍ୟମାନେ ନିର୍ଦ୍ଦିଷ୍ଟ ଛନ୍ଦ, ଲୟ, ରାଗରେ ଶ୍ଳୋକାବୃତ୍ତି କରନ୍ତେ ନିର୍ବିକଳ୍ପ ସମାଧି ଭାଙ୍ଗିଗଲା ଶୁକଦେବଜୀଙ୍କର । ଆସି ପହଞ୍ଚିଗଲେ ପିତାଜୀଙ୍କ ଆଶ୍ରମରେ । ଭାଗବତ ଗ୍ରନ୍ଥର ରସାସ୍ୱାଦନ କଲେ ରାସ ବିହାରୀଙ୍କ ଦିବ୍ୟ କୃଷ୍ଣ ଲୀଳା ବର୍ଣ୍ଣନରୁ । କୃତାର୍ଥ ହେଲା ତାଙ୍କର ଧ୍ୟାନ ପରାୟଣ ଯୋଗୀ ଜୀବନ । ଯୋଗ ବଳରେ ଅପ୍ରକଟ ହୋଇଗଲେ ସେ । ଅପେକ୍ଷା କରି ରହିଲେ ମହାଶୂନ୍ୟରେ ଉପଯୁକ୍ତ ଶ୍ରୋତା ଶିରୋମଣି କୁରୁକୁଳ କୃଷ୍ଣରସ ପୀପାସୁ ପରୀକ୍ଷିତଙ୍କ ପରମାର୍ଥିକ ଦୁଇ ପ୍ରଶ୍ନକୁ ।

ତୁଙ୍ଗ ଶବ୍ଦର ଅର୍ଥ ଅତ୍ୟନ୍ତ । ଭଦ୍ରା ଅର୍ଥ କଲ୍ୟାଣକାରୀ । ତୁଙ୍ଗଭଦ୍ରା ନଦୀ କହିଲେ ମନୁଷ୍ୟର ଦେହ । ଗୋସ୍ୱାମୀ ତୁଳସୀ ଦାସଙ୍କ ଭାଷାରେ ଏହି ମାନବ ଦେହ ଅଧ୍ୟାତ୍ମ ତତ୍ତ୍ୱରେ ପଶିବା ପାଇଁ ମୋକ୍ଷର ଦ୍ୱାର ବା ଚଢ଼ିବା ପାଇଁ ନିଶୁଣି ଅଟେ । କର୍ମକାଣ୍ଡୀ ଆତ୍ମଦେବ ବ୍ରାହ୍ମଣ କହିଲେ ବିଷୟୀ ମନକୁ ବା ଜୀବାତ୍ମାକୁ ବୁଝାଏ । ତାଙ୍କ ପତ୍ନୀ ଧୁନ୍ଧୁଲୀ ମନ୍ଦ ବା ବିଷୟୀ ବୁଦ୍ଧି । ଧୁନ୍ଧୁକାରୀ ଖଳ ବା ଅସତ୍ ଅମାନିଆ ପୁତ୍ର । ଗୋକର୍ଣ୍ଣ ବିବେକ ବା ସତ୍‌ପୁତ୍ର । ସେ ଆତ୍ମ ସାକ୍ଷାତକାର ବା ଅପରୋକ୍ଷାନୁଭୂତି ଚାହେଁ । ଜୀବ ବିଷୟୀ ବୁଦ୍ଧି(ନାରୀ) ସଙ୍ଗ କଲେ କୁସଙ୍ଗ ହେତୁ ଦୁଃଖ ଭୋଗେ । ବିଷୟୀ ନାରୀ ପୁତ୍ର ଜନ୍ମ କଷଣ ମଧ୍ୟ ସହିବାକୁ ନାରାଜ । ସଂସାରରେ ଯାହାର ପୁତ୍ର ନାହିଁ ସେ ତ ଦୁଃଖୀ । ପୁଣି ଯଦି ପୁତ୍ର ଅଛି ଅଥଚ ଅସତ୍ ପୁତ୍ର । ସେ ଭଳି ପୁତ୍ରର ପିତାମାତା ଅଧିକ ଦୁଃଖୀ ହୁଅନ୍ତି । ପୁତ୍ର ପ୍ରାପ୍ତି ପାଇଁ ପ୍ରଦତ୍ତ ଫଳଟି ହେଉଛି ସାଧୁ କୃପା । ଯାହା ମାଧ୍ୟମରେ ମନୁଷ୍ୟ ସତ୍‌ପୁତ୍ର ଗୋକର୍ଣ୍ଣକୁ ପାଇପାରେ । ଗୋକର୍ଣ୍ଣଙ୍କ ପରି ବିବେକୀ ପୁତ୍ର ନିଜକୁ ଉଦ୍ଧାର କରି ନିଜର ପିତାଙ୍କ ଆତ୍ମାକୁ ମଧ୍ୟ ଉଦ୍ଧାର କରିପାରନ୍ତି । ଭାଇକୁ ଭାଗବତ ଶୁଣାଇ ବୈକୁଣ୍ଠ ପଠାଇ ପାରନ୍ତି । ଆତ୍ମହତ୍ୟା ଲାଗି ଆତ୍ମଦେବଙ୍କ ପୋଖରୀ କୂଳ ଯିବାର ଅର୍ଥ ସଂସାର ବୈରାଗ୍ୟ ହେଲେ ସାଧୁ କୃପା ମିଳିଥାଏ ଏଇକଥା ସଙ୍କେତ କରିବା ।

ସୁଯୋଗ୍ୟ ବା ଅଯୋଗ୍ୟ ଉଭୟ ପ୍ରକାର ପୁତ୍ର ପିତାଙ୍କୁ ମାର୍ଗ ଦର୍ଶନ

କରାନ୍ତି । ସତ୍ ପୁତ୍ର ସତ୍‌ସଙ୍ଗ ଦିଏ । ଅବିବେକୀ ପୁତ୍ର ସଂସାର ବୈରାଗ୍ୟ ଜାଗ୍ରତ କରିଥାଏ । ପତ୍ନୀ-ପୁତ୍ର-ଧନ ଥିଲେ ନ ଥିଲେ ଉଭୟରେ ସାଧକ ସନ୍ତୁଷ୍ଟ ହେବା କଥା । ଅନୁକୂଳ ପତ୍ନୀଟିଏ ପାଇ ସନ୍ଥ ଏକନାଥ ସନ୍ତୁଷ୍ଟ । ପ୍ରତିକୂଳ ପତ୍ନୀ ହେତୁ ସନ୍ଥ ତୁକାରାମ ଖୁସି । ଆଦି ଶଙ୍କରାଚାର୍ଯ୍ୟଙ୍କ ପତ୍ନୀ ନଥିଲେ ବୋଲି ସେ ଭଗବାନଙ୍କ ଠାରେ କୃତଜ୍ଞ । ନରସିଂ ମେହେଟାଙ୍କର ପତ୍ନୀ ବିୟୋଗ ତାଙ୍କ ପ୍ରେମାନନ୍ଦ ବୃଦ୍ଧି କରାଇଲା । ଏଣିକି ସେ ନି ଜଞ୍ଜାଳରେ ହରି ଭଜନ କରିପାରିବାର ସୁଯୋଗ ପାଇଲେ ବୋଲି । ପୁତ୍ରୈଷଣା ଜାଗ୍ରତ ହେଲେ ବିତ୍ତୈଷଣା ଓ ଲୋକୈଷଣା ସାଧକର ପଛେ ପଛେ ଦୌଡ଼ନ୍ତି । ବିଚରା ହୁଏ ଅଣନିଃଶ୍ୱାସୀ ।

ଧୁନ୍ଧୁକାରୀଙ୍କ ଭଳି ଅବିବେକୀ ଲୋକ ଘରେ ସନ୍ଥ ଭାଇ ଗୋକର୍ଣ୍ଣକୁ ପାଇ ମଧ ଜୀବନକୁ ସୁଧାରି ପାରି ନଥାନ୍ତି । ହତ ଭାଗ୍ୟ ସେମାନେ । ପାଞ୍ଚ ବେଶ୍ୟା ମନୁଷ୍ୟର ପାଞ୍ଚ ଜ୍ଞାନେନ୍ଦ୍ରିୟଙ୍କର ଅସଦ୍ ଉପଯୋଗ । ତାହା ହିଁ ଜୀବର ଦୁର୍ଗତି, ଅକାଳ ମରଣ ଓ ପ୍ରେତ ଜନ୍ମର କାରଣ । ଭାଗବତ ପ୍ରବଚନ ସ୍ଥାନରେ ଶୁଭ ବାଉଁଶ ସ୍ତମ୍ଭ ପୋତା ଯାଇଥାଏ । ବାଉଁଶର ସପ୍ତ ଗଣ୍ଠି ଫିଟିବା ସାଧକ ଦେହର ସପ୍ତ ଚକ୍ର ବିଶିଷ୍ଟ କୁଳ କୁଣ୍ଡଳିନୀ ଜାଗ୍ରତ କରି ସପ୍ତଚକ୍ର ଫିଟାଇବା । ଷଡ଼ ରିପୁ ସହିତ ଅହଂକାରକୁ ମିଶାଇ ସାତ ଦ୍ୱାର ଡ଼େଇଁ ବୈକୁଣ୍ଠ ଗମନର ଅଧିକାରୀ ହେବାକୁ ବୁଝାଏ । ବାଉଁଶ ଗଣ୍ଠି ଫିଟିବା ଅର୍ଥ ଜୀବର ଭବ ବନ୍ଧନରୁ ମୁକ୍ତି । ଭାଗବତ ସପ୍ତାହ ଶ୍ରବଣ ହିଁ ମନୁଷ୍ୟ ଜୀବନର ସତ୍‌କର୍ମ । ଚର ଅଚର ସକଳ ଜୀବକୁ ଭଗବତ ଜ୍ଞାନରେ ମାନି ସେବା କରିବା ଶ୍ରେଷ୍ଠ ଭଗବତ ସେବା ।

ସଂସାରରେ ଅବିଦ୍ୟାଗ୍ରନ୍ଥୀ ଭେଦନ କରନ୍ତି ବୋଲି ସେମାନଙ୍କ ନାମ ଗ୍ରନ୍ଥ । ଧର୍ମ, ଅର୍ଥ, କାମ, ମୋକ୍ଷ ଲକ୍ଷ୍ୟରେ ପହଞ୍ଚାଇବାକୁ ଅନେକ ଗ୍ରନ୍ଥ ରଚିତ ହୋଇଛନ୍ତି । ହେଲେ ଭାଗବତ କେବଳ ଗ୍ରନ୍ଥ ନୁହନ୍ତି ବରଂ ମହାଗ୍ରନ୍ଥ । ଅନ୍ୟଗ୍ରନ୍ଥ ମାନଙ୍କରେ ମନୁଷ୍ୟ ନିଜକୁ ଖୋଜିପାଏ । ଭାଗବତ ଗ୍ରନ୍ଥ କିନ୍ତୁ ଜୀବଠାରୁ କୌଶଳ କରି ତାଠୁ ତାର ମୁଁ ଟିକୁ ଛଡ଼ାଇ ନିଅନ୍ତି । ସେ ହୁଏ ଆନନ୍ଦରେ ଆତ୍ମହରା ଖୁସିରେ ଡ଼ିଆଁକୁଦା କରେ ସେ । ତାର ବାଣୀ ଗଦ୍ ଗଦ୍ ହୁଏ । ଚକ୍ଷୁ ଲୋତକ ବର୍ଷଣ କରେ । ତାର ଲୋମ ସମୂହ ବାରମ୍ବାର ପୁଲକିତ ହୁଅନ୍ତି । ଚାରି ଦଉଡ଼ି(ଧର୍ମ-ଅର୍ଥ-କାମ-ମୋକ୍ଷ) କଟା ଭକ୍ତ ଭାଗବତ । ସେ ସଗର୍ବରେ କହିବୁଲେ ମୁଁ ଭକ୍ତ-ଫକ୍ତ କିଛି ନୁହେଁ । ମୁଁ ଜଣେ କୃଷ୍ଣ ପ୍ରେୟସୀ । କୃଷ୍ଣ ଭକ୍ତଙ୍କର ସେବା ମୋର ଏକମାତ୍ର ସତ୍‌କର୍ମ, ସତ୍‌ଧର୍ମ, ସଦ୍‌ଇଚ୍ଛା ସବୁ କିଛି । ଏହାହିଁ ସଂକ୍ଷେପରେ ଭାଗବତ ମାହାତ୍ମ୍ୟ। ଆତ୍ମଦେବ ବ୍ରାହ୍ମଣଙ୍କ ଇତି କଥା । ଭକ୍ତି-ଜ୍ଞାନ-ବୈରାଗ୍ୟଙ୍କ ଆତ୍ମ ତୃପ୍ତି ପ୍ରଖ୍ୟାପକ ଭାଗବତ ରସସାଗର । ଭକ୍ତିକୁଳର ମୁକୁଟମଣି ଦେବର୍ଷି ନାରଦଙ୍କ ଘୋଷଣା ନାମା ବା ବିଜ୍ଞପ୍ତି ପତ୍ର ବା ସାର୍ଟିଫିକେଟ୍ ଏଇ ଭାଗବତ ମାହାତ୍ମ୍ୟ ।

ଭକ୍ତି-ଭକ୍ତ-ଭଗବାନଙ୍କର ଜୟ ହେଉ ।

**ଇତି ଶ୍ରୀପଦ୍ମପୁରାଣେ ଉତ୍ତରଖଣ୍ଡେ ଶ୍ରୀମତ୍ ଭାଗବତ ମାହାତ୍ମ୍ୟ ନାମ ଷଷ୍ଠୋଽଧ୍ୟାୟ ।**

**॥ ହରିଃ ଓଁ ତତ୍‌ସତ୍ ॥**

**ଶ୍ରୀକୃଷ୍ଣାର୍ପଣଂ ଅସ୍ତୁ ।**

## ଦ୍ୱିତୀୟ ନକ୍ଷତ୍ର-ଦ୍ୱିଜା

# ଶ୍ରୀମଦ୍ଭାଗବତମ୍

## ୧ମ ସ୍କନ୍ଧଃ

(୧୯ ଅଧ୍ୟାୟ-୮୧୦ ଶ୍ଳୋକ)

ପ୍ରଥମ ସ୍କନ୍ଧରେ ୩ପ୍ରକରଣ (ଶ୍ରୋତା-ବକ୍ତା ଅଧିକାରୀ ନିର୍ଣ୍ଣୟ)

ଲକ୍ଷଣ - ଶ୍ରୋତାବକ୍ତା

୧. ନିମ୍ନାଧିକାରୀ-ସୂତ-ଶୌନକ ସମ୍ବାଦ ୩ ଅଧ୍ୟାୟ (ରଜୋଗୁଣୀ ଶ୍ରୋତା)

୨. ମଧ୍ୟମାଧିକାରୀ-ନାରଦ- ବ୍ୟାସ ସମ୍ବାଦ ୩ ଅଧ୍ୟାୟ (ସତ୍ୱଗୁଣୀ ଶ୍ରୋତା)

୩. ଉଚ୍ଚାଧିକାରୀ-ଶୁକ- ପରୀକ୍ଷିତ ଚରିତ ୧୩ ଅଧ୍ୟାୟ (ନିର୍ଗୁଣୀ ଶ୍ରୋତା)

## ପ୍ରକରଣ ରଜୋଗୁଣୀ ଶ୍ରୋତା-୧ (ଅଧ୍ୟାୟ ୧ମ-୩ୟ)

## ଅଥ ପ୍ରଥମ ଅଧ୍ୟାୟଃ

(ସୂତ ଗୋସ୍ୱାମୀଙ୍କୁ ଶୌନକାଦି ୮୮,୦୦୦ରଷିଙ୍କ ଭକ୍ତି ଜିଜ୍ଞାସା)

୧. ନିମ୍ନାଧିକାରୀ ବକ୍ତା-ଶ୍ରୋତା-କର୍ମ/ଧର୍ମ ଅଧିକାରୀ ପ୍ରସଙ୍ଗ

କର୍ମକାଣ୍ଡ / ଯଜ୍ଞ କର୍ମ ଶେଷରେ ବିଷାଦ / ବିରକ୍ତି ଆସିଲେ ଭକ୍ତି ଲୋଡ଼ା ପଡ଼େ । ଧର୍ମାନୁଷ୍ଠାନକୁ ମୁଖ୍ୟ କରାଯାଏ ଏଥିରେ । ଗୌଣସ୍ଥାନ ମିଳେ ଭାଗବତ କଥା ଶ୍ରବଣକୁ । ଶ୍ରୋତା ଶୌନକ ଆଦି ୮୮,୦୦୦ ମୁନି ଋଷି ସମସ୍ତେ ରଜୋଗୁଣୀ ସୁତରାଂ ଶ୍ରେଷ୍ଠ କର୍ମାଧିକାରୀ ବା ଧର୍ମାଧିକାରୀ । ବକ୍ତା ରୋମହର୍ଷଣଙ୍କ ପୁତ୍ର ସୂତ ଗୋସ୍ୱାମୀ ସତ୍ତ୍ୱଗୁଣୀ ହୋଇଥିବାରୁ ଭାଗବତ ଶ୍ରବଣ କୀର୍ତ୍ତନ ସମ୍ଭବ ହୋଇଛି ।

ସମଗ୍ର ଶ୍ରୋତାମଣ୍ଡଳୀଙ୍କ ଅପୂର୍ବ ଉତ୍ସାହ **ଅଥାତୋଭକ୍ତି ଜିଜ୍ଞାସା** (ଚାଲ, ଏଥର ଭକ୍ତି କ'ଣ ପଚାରି ବୁଝିବା) ।

**ବେଦବ୍ୟାସଜୀଙ୍କ ମଙ୍ଗଳାଚରଣ (୩ ଶ୍ଳୋକରେ)**

ପ୍ରଶ୍ନ-୧ : ଏହି ଗ୍ରନ୍ଥର ୧ମ ମଙ୍ଗଳା ଚରଣ ଶ୍ଳୋକରେ ଧ୍ୟାନର ଦେବତା ପରମ ସତ୍ୟ କିଏ ?

**ଓଁ ଜନ୍ମ-ଆଦି-ଅସ୍ୟ ଯତଃଽନ୍ୱୟାତ୍ ଇତରତଃ-ଚ-ଅର୍ଥେଷୁ-ଅଭିଜ୍ଞଃସ୍ୱରାଟ୍**
**ତେନେ ବ୍ରହ୍ମ ହୃଦା ଯ ଆଦିକବୟେ ମୁହ୍ୟନ୍ତି ଯତ୍ ସୁରୟଃ ।**
**ତେଜୋ ବାରି ମୃଦାଂ ଯଥା ବିନିମୟୋ ଯତ୍ର ତ୍ରିସର୍ଗୋଽମୃଷା**
**ଧାମ୍ନା ସ୍ୱେନ ସଦା ନିରସ୍ତ କୁହକଂ ସତ୍ୟଂ ପରଂ ଧୀମହି ।୧।**

ଉତ୍ତର : ଯାହାଙ୍କଠାରୁ (ଯତଃ) ଏହି ସୃଷ୍ଟି (ଅସ୍ୟ) ପ୍ରକଟ ହୋଇଛି, ଯାହାଙ୍କ ଦ୍ୱାରା ଏହାର ପାଳନ ପୋଷଣ ହେଉଛି ଓ ପ୍ରଳୟବେଳେ ଯାହାଙ୍କ ମଧ୍ୟରେ ଏହା ଅଦୃଶ୍ୟ ହେବ । ସୃଷ୍ଟିର ସ୍ଥୂଳ,ସୂକ୍ଷ୍ମ ଓ କାରଣ ଅବସ୍ଥାର ଯେ ମହାକାରଣ । ଯେ ସର୍ବଜ୍ଞ । ଯେ ସ୍ୱୟଂ ଶାସିତ । ଯାହାଙ୍କ ବର୍ଣ୍ଣିତ ବେଦଜ୍ଞାନକୁ ସରସ୍ୱତୀ, ବୃହସ୍ପତି, ମହା ମହା ମୁନିଋଷି ବୁଝିନପାରି ଭ୍ରମିତ ହୁଅନ୍ତି । ସେଇ ବେଦ ଜ୍ଞାନର ରହସ୍ୟ (ଚତୁଶ୍ଳୋକୀ ଭାଗବତ ଆକାରରେ ) ଯେ ସୃଷ୍ଟି ଆରମ୍ଭ ବେଳେ ଚତୁର୍ମୁଖୀ ବ୍ରହ୍ମାଜୀଙ୍କୁ କହିଥିଲେ । ଯାହାଙ୍କ ମାୟା ବଳରେ କ୍ଷିତି, ଅପ୍,ତେଜ,ମରୁତ୍, ବ୍ୟୋମ, ନିତ୍ୟ ପରିବର୍ତ୍ତନଶୀଳ (ଅସତ୍) ହୋଇ ମଧ୍ୟ ସତ୍ ଭଳି ପ୍ରତୀୟମାନ ହେଉଛନ୍ତି। ଯେ ମାୟାଧୀନ ନୁହନ୍ତି, ମାୟାତୀତ ନୁହନ୍ତି କିନ୍ତୁ ମାୟାଧୀଶ । ଯେ ତାଙ୍କ ନିତ୍ୟଧାମ ଗୋଲୋକରେ ନିତ୍ୟାନନ୍ଦରେ ନିତ୍ୟ ପାର୍ଷଦ, ଲୀଳା ସହଚର ଓ ସହଚରୀମାନଙ୍କ ଗହଣରେ ନିତ୍ୟ ବିଦ୍ୟମାନ ।

ସେ ହିଁ ବେଦ ବର୍ଣ୍ଣିତ ଆମ୍ନା (ଓଁ), ବେଦାନ୍ତଙ୍କର ନିର୍ଦ୍ଦେଶିତ ବ୍ରହ୍ମ (ତତ୍), ଗୀତା ପ୍ରତିପାଦିତ ପୁରୁଷୋତ୍ତମ (ସତ୍), ରାମାୟଣଙ୍କ ଚିହ୍ନିତ ରାମ, ଅଷ୍ଟାଦଶ ପୁରାଣମାନଙ୍କର ସ୍ତୁତ୍ୟ ଭଗବାନ ଓ ଭାଗବତ ମହାପୁରାଣଙ୍କର ଧ୍ୟେୟ, ସ୍ୱୀକୃତ ପରମ ସତ୍ୟ ।

# ପରମ ସତ୍ୟ କିଏ?

କର୍ମଯୋଗୀର ଉପାସ୍ୟ ହେଲେ ବ୍ରହ୍ମ । ଜ୍ଞାନ ଯୋଗୀର ଧ୍ୟେୟ ପରମାତ୍ମା ଓ ଭକ୍ତମାନଙ୍କର କଣ୍ଠ ହାର ଭଗବାନ ଏହି ପରମ ସତ୍ୟ । ସାଂଖ୍ୟ-ଯୋଗ ବର୍ଣ୍ଣିତ ପୁରୁଷ, ନ୍ୟାୟ-ବୈଶେଷିକ ଆଲୋଚିତ କାଳ, କର୍ମ ମୀମାଂସାର ଈଶ୍ୱର, ଉପନିଷଦ, ବେଦାନ୍ତ ଦର୍ଶନର ଧ୍ୟେୟ ଆତ୍ମା, ଗୀତାର ପୁରୁଷୋତ୍ତମ ଓ ଅଷ୍ଟାଦଶ ପୁରାଣର ବର୍ଣ୍ଣିତ ଭଗବାନ ଏହି ପରମ ସତ୍ୟ ଅଟନ୍ତି ।

ବ୍ୟାସଦେବ କିନ୍ତୁ ଏହି ଶ୍ଲୋକରେ ନିମ୍ନଲିଖିତ ୯ଟି ସର୍ତ୍ତ ରଖିଛନ୍ତି । ଯାହାଙ୍କର ଇଷ୍ଟ ଏହି ସର୍ତ୍ତ ଗୁଡ଼ିକ ପୂରଣ କରୁଥିବେ ତାଙ୍କୁ ଆମେ ପରମ ସତ୍ୟ ବୋଲି ଗ୍ରହଣ କରିବାକୁ ବାଧ୍ୟ ।

୧. ଯାହାଙ୍କ ଠାରୁ ଏ ଚର-ଅଚର ନିଖିଳ ବିଶ୍ୱ ବ୍ରହ୍ମାଣ୍ଡ ଜନ୍ମଲାଭ କରିଥିବ । ଏହାକୁ ପାଳନ ପୋଷଣ କରିବା ପାଇଁ ସାମର୍ଥ୍ୟ ଥିବ । ଯେ ଏହାକୁ ଯେଉଁ ମୁହୂର୍ତ୍ତରେ ଚାହିଁବେ ସଂହାର ବା ଧ୍ୱଂସ କରିପାରିବେ ।

୨. ଏହି ଦୃଶ୍ୟମାନ ସ୍ଥୂଳ ଜଗତ ଓ ତାହା ମଧ୍ୟରେ ଦୃଶ୍ୟମାନ ସ୍ଥୂଳ ବସ୍ତୁ, ବ୍ୟକ୍ତି ସମୂହକୁ ସୂକ୍ଷ୍ମ ଅବସ୍ଥାରେ ଅବସ୍ଥାନ୍ତର କରିବା ପୁଣି ଦରକାର ପଡ଼ିଲେ ସେ ସବୁକୁ ଆହୁରି ସୂକ୍ଷ୍ମତର କାରଣ ଅବସ୍ଥାରେ ରଖିପାରିବା ପାଇଁ ତାଙ୍କ ଠାରେ ଶକ୍ତି ଥିବା ଦରକାର ।

୩. ସେ କେବଳ ବହୁଜ୍ଞ, ବିଶେଷଜ୍ଞ ହେଲେ ଚଳିବନି । ସର୍ବଜ୍ଞ ହୋଇଥିବା ଆବଶ୍ୟକ । ସକଳ ଜ୍ଞାନ, ବିଜ୍ଞାନର ମୂଳ ସ୍ରୋତ ହେଲେ ଯାଇ ପରମ ସତ୍ୟ ପଦବାଚ୍ୟ ହୋଇପାରିବେ ।

୪. ଖାଲି ଦୃଶ୍ୟମାନ ଜଗତ, ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ଅନନ୍ତ କୋଟି ନକ୍ଷତ୍ର ରୂପୀ ବ୍ରହ୍ମାଣ୍ଡ ନୁହନ୍ତି ଅଦୃଶ୍ୟ ଅଥଚ ବିଦ୍ୟମାନ ସକଳ ଦେବୀ ଦେବତାମାନଙ୍କର ସର୍ବୋଚ୍ଚ ଶାସକ ବା ନିୟନ୍ତକ ହେବା ଆବଶ୍ୟକ । କେବଳ ଏଇ ଜଗତର ଚାରି ଶ୍ରେଷ୍ଠ ଦେବତା ବ୍ରହ୍ମା, ବିଷ୍ଣୁ, ଶଙ୍କର ବା ନାରାୟଣ ନୁହନ୍ତି ପରବ୍ୟୋମରେ ଅବସ୍ଥିତ

ଅନନ୍ତକୋଟି ଦିବ୍ୟ ଜଗତର ଶାସକ ମାନଙ୍କର ମଧ୍ୟ ସର୍ବୋଚ୍ଚ ଶାସକ ହୋଇଥିବା ଆବଶ୍ୟକ ।

୫. ସୃଷ୍ଟି ବିଷୟକ ଜ୍ଞାନ ସୃଷ୍ଟି କର୍ତ୍ତା ବ୍ରହ୍ମାଙ୍କୁ, ପାଳନ ପୋଷଣ ବିଷୟକ ଜ୍ଞାନ ବିଷ୍ଣୁଙ୍କୁ ଓ ସଂହାର ବିଷୟକ ଜ୍ଞାନ ଶଙ୍କରଙ୍କୁ ସେ ବେଦ ମାଧ୍ୟମରେ ଦେଇଥିବା ଆବଶ୍ୟକ ।

୬. ଯେଉଁ ବେଦବାଣୀରେ ଧୁରୀଣ ପଣ୍ଡିତମାନେ, ସରସ୍ୱତୀ, ବୃହସ୍ପତି ଆଦି ମୋହିତ ହୋଇ ଯାଆନ୍ତି ସେ ସମ୍ବନ୍ଧରେ ସେ ସଂପୂର୍ଣ୍ଣ ଅବଗତ ହୋଇଥିଲେ ପରମ ସତ୍ୟ ପଦବାଚ୍ୟ ହୋଇପାରିବେ ।

୭. ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତି ଅବସ୍ଥାରେ ବୋଧ ହେଉଥିବା ସ୍ଥୂଳ, ସୂକ୍ଷ୍ମ ଓ କାରଣ ଅବସ୍ଥା ପ୍ରାପ୍ତ ହେଉଥିବା ଆଲୋକ, ଜଳ, ପୃଥିବୀ ଆଦି ତତ୍ତ୍ୱମାନଙ୍କର ଅବସ୍ଥାନ୍ତର କରାଇ ପାରୁଥିବା ସାମର୍ଥ୍ୟ ତାଙ୍କର ଥିବା ଦରକାର ।

୮. ଅଚ୍ୟୁତ ଭଗବାନ ରୂପେ ବ୍ରହ୍ମାଣ୍ଡ ମଧ୍ୟରେ, ସକଳ ଭୌତିକ ବସ୍ତୁ, ବ୍ୟକ୍ତି, ଅନ୍ତରରେ ଓ ବାହାରେ ଉଭୟରେ ବ୍ୟାପ୍ତ ଥାଇ ମଧ୍ୟ ନିଜ ଦିବ୍ୟ ଧାମରେ ଅବସ୍ଥାନ କରୁଥିବା ଦରକାର ।

୯. ସର୍ବଶେଷରେ ଯାହା ସତ୍ୟ ନୁହେଁ ଅସତ୍ୟ ନୁହେଁ, ସତ୍ୟ-ଅସତ୍ୟ ଉଭୟ ନୁହେଁ, ଯାହାର କାର୍ଯ୍ୟ କିନ୍ତୁ ସତ୍ୟ ତାର ନାମ ଅନିର୍ବଚନୀୟ ମାୟା । ସେ କେବଳ ମାୟାତୀତ ନୁହନ୍ତି (ଜୀବ ସ୍ୱ ସାଧନା ବଳରେ ମାୟାତୀତ ହୋଇପାରେ) ମାୟାଧୀଶ ହେବା ଦରକାର । ସଂକ୍ଷେପରେ କହିଲେ ମାୟା ଏତେ ଶକ୍ତିଶାଳୀ ଯେ ବ୍ରହ୍ମା, ବିଷ୍ଣୁ ଓ ଶଙ୍କରଙ୍କୁ ମଧ୍ୟ ନଚେଇ ପାରେ । ସେ ତିନି ଠାକୁର ଅବଶ୍ୟ ସତ୍ୟ କିନ୍ତୁ ଶ୍ରୀକୃଷ୍ଣ କେବଳ ମାୟାକୁ ନଚାଇ ପାରନ୍ତି ଅଙ୍ଗୁଳି ଅଗ୍ରରେ । କାରଣ ସେ ସତ୍ୟର ସତ୍ୟ ପରମ ସତ୍ୟ । ଯେ ଥିବାରୁ ଏ ନିଖିଳ ସୃଷ୍ଟି ଦୃଶ୍ୟମାନ ଓ ଅଦୃଶ୍ୟ ହୋଇ ରହିଛି ପୁଣି ଏ ସବୁ ନ ରହିଲେ ମଧ୍ୟ ଯେ ରହିବେ ସେଇ ହେଉଛନ୍ତି ପରମ ସତ୍ୟ । ଅତଏବ ଶେଷ ନିଷ୍କର୍ଷ ହେଲା ପରମ ସତ୍ୟ ଶ୍ରୀକୃଷ୍ଣ ହିଁ ଶ୍ରୀମଦ୍ଭାବଗତ ଗ୍ରନ୍ଥର ଉପାସ୍ୟ ଦେବ । କାରଣ ସେ କେବଳ ଏହି ନଅ ସର୍ତ୍ତ ପୂରଣ କରୁଛନ୍ତି ।

ପ୍ରଶ୍ନ-୨ : ମଙ୍ଗଳାଚରଣର ଦ୍ୱିତୀୟ ଶ୍ଳୋକରେ ସଂକେତ କରାଯାଇଥିବା ପରମ ଧର୍ମ (ସକଳ ଧର୍ମ ମାନଙ୍କର ମଧ୍ୟ ଧର୍ମ) ବସ୍ତୁଟି କ'ଣ?

**ଧର୍ମଃ ପ୍ରୋଜ୍‌ଝିତ କୈତବୋଽତ୍ର ପରମୋ ନିର୍ମସ୍ରରାଣାଂ ସତାମ୍ ।**
**ବେଦ୍ୟଂ ବାସ୍ତବଂ ଅତ୍ର ବସ୍ତୁ ଶିବଦଂ ତାପ-ତ୍ରୟ-ଉନ୍ମୂଳନମ୍ ।**
**ଶ୍ରୀମତ୍ ଭାଗବତେ ମହାମୁନି କୃତେ କିଂ ବା-ଅପରୈଃ ଈଶ୍ୱରଃ**
**ସଦ୍ୟୋ ହୃଦି-ଅବରୁଦ୍ଧ୍ୟତେଽତ୍ର କୃତିଭିଃ ଶୁଶ୍ରୂଭିଃ ତତ୍‌କ୍ଷଣାତ୍ ।୨।**

ଉତ୍ତର : ଯେଉଁ ଧର୍ମ ନିଷ୍କପଟ, ଅର୍ଥାତ୍ ଯେଉଁଥିରେ (ଅତ୍ର) ଜ୍ଞାନୀମାନଙ୍କର ଲକ୍ଷ୍ୟ ମୁକ୍ତି, ଧ୍ୟାନୀମାନଙ୍କର ଲକ୍ଷ୍ୟ ସିଦ୍ଧି ପ୍ରାପ୍ତି ବା କର୍ମୀମାନଙ୍କ ଲକ୍ଷ୍ୟ ସ୍ୱର୍ଗ ସୁଖ ପ୍ରାପ୍ତି କାମନା, ଲାଳସା ଲୁଚି ନ ଥାଏ । ଯାହା ନେବା, ନେବା,କିମ୍ବା ଦେବା, ନେବା ନୁହେଁ ବରଂ ଦେବା ଦେବା ବା ସେବା ଅଟେ । ଯାହାକୁ କେବଳ ଈର୍ଷ୍ୟା ଶୂନ୍ୟ ପରିବ୍ରାଜକ-ସାଧୁ,ଗୃହସ୍ଥ-ବୈଷ୍ଣବ ବା ଗୃହଶୂନ୍ୟ-ପରମ ହଂସ ଆଚରଣ କରିଥାନ୍ତି । ଯାହା ବାସ୍ତବରେ ମନୁଷ୍ୟର ଅସଲି ଜାଣିବା କଥା ଏଇ ଜୀବନରେ (ଅତ୍ର) । ଯାହା ପରମ କଲ୍ୟାଣପ୍ରଦ (ଶିବଦ) । ଯାହା ତିନି ପ୍ରକାର (ତାପ) ଦୁଃଖ ସମୂହର ବୃକ୍ଷ ମୂଳ ସହିତ ଚେରକୁ ମଧ୍ୟ ଉପାଡ଼ି ଦେଇପାରେ । ଯାହାକୁ ଛାଡ଼ି ଅନ୍ୟ ଧର୍ମ ଗ୍ରନ୍ଥ ଆଶ୍ରୟ କରିବା ଦରକାର ପଡ଼େନା । ଯାହାକୁ ଆଶ୍ରୟ କଲେ ବିନା ବିଳମ୍ବରେ (ସଦ୍ୟୋ) ସ୍ୱୟଂ ପରମେଶ୍ୱର (ଈଶ୍ୱରମାନଙ୍କର ମଧ୍ୟ ଈଶ୍ୱର) ସାଧକ ହୃଦୟରେ କୃପା କରିବା ପାଇଁ ଅଣ୍ଟା ଭିଡ଼ନ୍ତି । ଯାହାକୁ କୀର୍ତ୍ତନକାରୀ (ଅନ୍ୟମତରେ କୃତିଭି ଅର୍ଥ ପୁଣ୍ୟବାନ୍ ଲୋକ) ଓ ଶ୍ରବଣକାରୀ (ଶୁଶ୍ରୂଷୁଭିଃ) କୀର୍ତ୍ତନ ବା ଶ୍ରବଣ କରୁ କରୁ (ତତ୍‌କ୍ଷଣାତ୍) ପ୍ରାପ୍ତ ହୁଅନ୍ତି (ଶ୍ରବଣ କୀର୍ତ୍ତନ ଶେଷରେ ନୁହେଁ) ।

ପ୍ରଶ୍ନ -୩ : ବେଦ, ବେଦାନ୍ତ, ରାମାୟଣ ଓ ମହାଭାରତ ବର୍ଣ୍ଣିତ ଧର୍ମଶାସ୍ତ୍ର ଅଧ୍ୟୟନ, ଶ୍ରବଣ କୀର୍ତ୍ତନ ଆଦି ନକରି ଭାଗବତ ରସ ସେବନ ଜଣେ କରିବ କାହିଁକି ପୁଣି କେଉଁ ପରମ ଲକ୍ଷ୍ୟ ପ୍ରାପ୍ତି ପାଇଁ ?

**ନିଗମ କଳ୍ପତରୋଃ ଗଳିତଂ ଫଳଂ**
**ଶୁକ ମୁଖାତ୍ ଅମୃତ ଦ୍ରବ ସଂଯୁତମ୍ ।**
**ପିବତ ଭାଗବତଂ ରସଂ ଆଲୟଂ**
**ମୁହୁଃ ଅହୋ ରସିକା ଭୁବି ଭାବୁକାଃ ।୩।**

ଉତ୍ତର : ଅନ୍ୟାନ୍ୟ ଧର୍ମ ଶାସ୍ତ୍ରମାନଙ୍କରେ ଅବଶ୍ୟ ଧର୍ମ ଫୁଲ,ଫଳ ଆକାରରେ ମିଳିପାରେ ସଦ୍‌ଗୁରୁଙ୍କୁ ଆଶ୍ରୟ କଲେ । ଭାଗବତରେ କିନ୍ତୁ ପୁରା ପାଚିସାରିଥିବା ଓ ବୃକ୍ଷରୁ ସ୍ୱୟଂ ଖସି ପଡ଼ିଥିବା ସୁସ୍ୱାଦୁ ଫଳରୁ ରସ ଚିପୁଡ଼ି ରଖାଯାଇଛି । ଏଥିରେ ଚୋପା, ଟାକୁଆ, ବୀଜ କି ପାରୁ କିଛି ହେଲେ ଅରସାଳ ଚିଜ ନାହିଁ । ସତେ ଯେପରି ଛଣା ଅମୃତ । ରସାଳ । ଅଠାଳିଆ ମଧ୍ୟ । ଥରେ ଖାଇଲେ ଆଉ ଛାଡ଼ି ହୁଏନା । ବ୍ୟାସଦେବ କହୁଛନ୍ତି,ଭାଇମାନେ, ଏ ରସ ଜାଗ୍ରତ ଅବସ୍ଥାରେ ପିଅ । ଶୋଇ ପଡ଼ିଲେ ଉଠିକରି ପିଅ । ଜୀବନ ସାରା ପିଅ । ମରିଗଲେ ଜନ୍ମାନ୍ତରରେ ବାରମ୍ବାର (ମୁହୁଃ) ମଧ୍ୟ ପିଅ । ଯୁଗ ପରେ ଯୁଗ ପିଇ ପ୍ରଳୟ, ମହାପ୍ରଳୟ ଯାଏ (ଆଲୟଂ) ପିଇବା ବ୍ୟବସ୍ଥା ଏଥିରେ କରାଯାଇଛି । ଏ ରସ ସ୍ୱର୍ଗ, ସତ୍ୟ, କୈଳାସ ଲୋକରେ ଖୋଲାଖୋଲି ପିଇବା ବ୍ୟବସ୍ଥା ନାହିଁ । ଅଛି କେବଳ ମର୍ତ୍ତ୍ୟ ଲୋକରେ (ଭୁବି) । ହେ ରସିକ କୃଷ୍ଣ ପ୍ରେମରସ ଲୋଭୀ ଭଗବାନଙ୍କୁ ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଓ କାନ୍ତା ଭାବରେ ବାନ୍ଧି ପାରିଥିବା ସାଧକ ଗଣ ଏ ରସ ନପିଇ ଛାଡ଼ନା । ପିଇ ପିଇ ନିଜେ ପାଗଳ ହୁଅ । ଅନ୍ୟମାନଙ୍କୁ ମଧ୍ୟ ପିଆଇ ପିଆଇ ପାଗଳ କର । ଅତଏବ ଜୀବର ପରମ ଲକ୍ଷ୍ୟ ଶ୍ରୀକୃଷ୍ଣ ପ୍ରେମପ୍ରାପ୍ତି ।

**କଥାପ୍ରସଙ୍ଗ ଆରମ୍ଭ**

ପ୍ରଶ୍ନ-୪ : ପବିତ୍ର ସ୍ଥାନ ନୈମିଷାରଣ୍ୟରେ ଶୌନକ ଆଦି ୮୮,୦୦୦ ଋଷି ସହସ୍ର ବର୍ଷ (ସମଂ) ବ୍ୟାପୀ ମହାଯଜ୍ଞ (ସତ୍ର) କରୁଥିଲେ (ଆସତ) ପୁଣ୍ୟାର୍ଜନ କରି ସ୍ୱର୍ଗ ଲୋକରେ (ସ୍ୱର୍ଗାୟ) ଦେବତା ହୋଇ ସୁଖଭୋଗ କରିବା ଆଶାରେ । ହେଲେ ଭାଗବତ ଶ୍ରବଣ ଦରକାର ପଡ଼ିଲା କାହିଁକି ?

**ନୈମିଷେଽନିମିଷ କ୍ଷେତ୍ରେ ଋଷୟଃ ଶୌନକ-ଆଦୟଃ ।**
**ସତ୍ରଂ ସ୍ୱର୍ଗାୟ ଲୋକାୟ ସହସ୍ରଂ ସମଂ ଆସତ ।୪।**

ପ୍ରଶ୍ନ-୫ : ଭଗବାନ କରୁଣା ବରୁଣାଳୟ । ସତ୍‌ସଙ୍ଗ ପ୍ରାପ୍ତିର ବ୍ୟବସ୍ଥା କଲେ । ଶୁକଦେବଙ୍କ ସଭାରେ ସାକ୍ଷାତ ସ୍ୱୟଂ ଉପସ୍ଥିତ ଥାଇ ଭାଗବତ ଶ୍ରବଣ କରିଥିବା ରୋମହର୍ଷଣ (ବ୍ୟାସ ଶିଷ୍ୟ)ଙ୍କ ସୁଯୋଗ୍ୟ ସନ୍ତାନ ସୂତ ଗୋସ୍ୱାମୀ ପହଞ୍ଚିଲେ ଯଜ୍ଞ ସ୍ଥଳରେ । ବ୍ରାହ୍ମ ମୂହୂର୍ତ୍ତ ସମୟ । ଅହୋଭାଗ୍ୟ ମନେ କଲେ ଶୌନକାଦି ମୁନିମାନେ । ତାଙ୍କୁ ଆଦର ସତ୍‌କାର କଲେ । ଉପଯୁକ୍ତ ଉଚ୍ଚ ବ୍ୟାସ ଆସନରେ ବସାଇଲେ । ପୁଣି କ'ଣ କଲେ ସେମାନେ ?

**ତେ ଏକଦା ତୁ ମୁନୟଃ ପ୍ରାତଃ ହୁତ ହୁତ-ଅଗ୍ନୟଃ ।**
**ସତ୍ କୃତଂ ସୂତଂ-ଆସୀନଂ ପପ୍ରଛୁଃ ଇଦଂ ଆଦରାତ୍ ।୫।**

ଉତ୍ତର : ବଛା ବଛା ଛଅଟି ସୁନ୍ଦର ସୁନ୍ଦର ପ୍ରଶ୍ନ ପଚାରିଲେ । ଯାହାର ଉତ୍ତର ଏଇ ଦ୍ୱାଦଶ ସ୍କନ୍ଧ ଭାଗବତର ୧୦ ଲକ୍ଷଣ, ୪୩ ପ୍ରକରଣ, ୩୩୫ ଅଧ୍ୟାୟ, ୧୪,୧୦୦ ଶ୍ଳୋକ ବା ୧୮୦୦୦ ମନ୍ତ୍ର ଭାବରେ ସ୍ଥାନିତ ହୋଇଛନ୍ତି ଏଥିରେ ।

**ଋଷୟଃ ଉଚୁଃ**

ପ୍ରଶ୍ନ-୬ : ଆପଣ ତ ୧୮ ପୁରାଣ ସହିତ ରାମାୟଣ ଓ ମହାଭାରତ ରୂପୀ ଦୁଇ ଇତିହାସ ସ୍ୱୟଂ ଅଧ୍ୟୟନ କରିଛନ୍ତି । ଆମମାନଙ୍କୁ ମଧ୍ୟ ବୁଝାଇଲେଣି । ଏମାନେ ସବୁ କେଉଁ ଶାସ୍ତ୍ରର ଅନ୍ତର୍ଭୁକ୍ତ ?

**ତ୍ୱୟା ଖଲୁ ପୁରାଣାନି ସ-ଇତିହାସାନି ଚ-ଅନଘ ।**
**ଆଖ୍ୟାତାନି-ଅପି-ଅଧୀତାନି ଧର୍ମଶାସ୍ତ୍ରାଣି ଯାନି-ଉତ ।୬।**

ଉତ୍ତର : କୁହାଯାଇଛି (ଉତ) ଏ ସବୁ ଧର୍ମଶାସ୍ତ୍ର । ଯାହା ସମଗ୍ର ମାନବ ସମାଜ ପାଇଁ ଏକକ କଲ୍ୟାଣକାରୀ ଓ ସମୂହ କଲ୍ୟାଣକାରୀ ।

ପ୍ରଶ୍ନ-୭ : ହେ ସୂତ ଗୋସ୍ୱାମୀ, ଏ ଯୁଗର ଜ୍ଞାନ ଅବତାର ବେଦବ୍ୟାସଜୀ ଓ ଅନ୍ୟ ବେଦବେତ୍ତା ମୁନିଙ୍କ ଠାରୁ ଏହି ଧର୍ମ ଶାସ୍ତ୍ରମାନ ଗମ୍ଭୀର ଅଧ୍ୟୟନ କରି ଆପଣଙ୍କର କି ଲାଭ ହୋଇଥିଲା ?

**ଯାନି ବେଦ ବିଦାଂ ଶ୍ରେଷ୍ଠୋ ଭଗବାନ୍ ବାଦରାୟଣଃ ।**
**ଅନ୍ୟେ ଚ ମୁନୟଃ ସୂତ ପର-ଅବର ବିଦୋ ବିଦୁଃ ।୭।**

ଉତ୍ତର : ଆପଣ ତେବେ ନିଶ୍ଚୟ ବ୍ରହ୍ମବେତ୍ତା ହୋଇସାରିଥିଲେ ।

ପ୍ରଶ୍ନ-୮ : ଯୋଗୀନ୍ଦ୍ର ମୁନୀନ୍ଦ୍ରମାନେ ବେଦର ଅସଲି ଅର୍ଥ ତାତ୍ପର୍ଯ୍ୟ ବୁଝି ନ ପାରୁଥିବା ବେଳେ ହେ ସୂତ ଗୋସ୍ୱାମୀ (ସୌମ୍ୟ) ଏ ସୁବିଧା ଆପଣ କିପରି ପାଇପାରିଲେ ?

**ବେତ୍‌ଥ ତ୍ୱଂ ସୌମ୍ୟ ତତ୍ ସର୍ବଂ ତତ୍ତ୍ୱତଃ ତତ୍ ଅନୁଗ୍ରହାତ୍ ।**
**ବ୍ରୂୟୁଃ ସ୍ନିଗ୍ଧସ୍ୟ ଶିଷ୍ୟସ୍ୟ ଗୁରବୋଗୁହ୍ୟଂ ଅପି-ଉତ ।୮।**

ଉତ୍ତର : ସେବା ପରାୟଣ ଆଜ୍ଞାକାରୀ ବିନୀତ (ସ୍ନିଗ୍ଧସ୍ୟ ଶିଷ୍ୟସ୍ୟ) ଶିଷ୍ୟକୁ ଗୁରୁ କୃପା କରି (ଅନୁଗ୍ରହାତ୍) ତତ୍ତ୍ୱଜ୍ଞାନ ବୋଧ କରାଇ ଦେଇଥାନ୍ତି

ବୋଲି ସିନା ତାହା ଯେତେ ଗୁପ୍ତ (ଗୂହ୍ୟଂ ଅପି) ହେଲେ ମଧ୍ୟ ।

ପ୍ରଶ୍ନ-୯ : ଶୌନକଜୀ ମୁଖ୍ୟ ଶ୍ରୋତା ଥିଲେ ସଭା ମଧ୍ୟରେ । ସେ ଯେଉଁ ଛଅଟି ବ୍ରହ୍ମ ବିଷୟକ ପ୍ରଶ୍ନ କରିଥିଲେ ସେଥିରୁ ୧ମ ପ୍ରଶ୍ନଟି କ'ଣ ଥିଲା ?

**ତତ୍ର ତତ-ଅଞ୍ଜସା-ଆୟୁଷ୍ମନ୍ ଭବତା ଯତ୍ ବିନିଶ୍ଚିତମ୍ ।**
**ପୁଂସାଂ ଏକାନ୍ତତଃ ଶ୍ରେୟଃ ତତ୍ ନଃ ଶଂସିତୁଂ ଅର୍ହସି ।୯।**

ଉତ୍ତର : ସେଇ ସେଇ ଧର୍ମଶାସ୍ତ୍ରମାନଙ୍କ ବର୍ଣ୍ଣିତ କଥା ମଧ୍ୟରୁ ମନୁଷ୍ୟମାନଙ୍କର ପରମ (ଏକାନ୍ତତଃ) କଲ୍ୟାଣକାରୀ (ଶ୍ରେୟ) ସକଳଧର୍ମର ସାର ବସ୍ତୁଟି କ'ଣ ? ଭଲ କରି (ନିଃସନ୍ଦେହରେ) ବୁଝାଇ ଦେବା ପାଇଁ ଅନୁରୋଧ ।

ପ୍ରଶ୍ନ ୧୦ : କଳିଯୁଗରେ ମନୁଷ୍ୟମାନେ ସବୁ ଧର୍ମ ଶାସ୍ତ୍ର ପଠନ ପାଠନ କରି ସାରକଥା ବୁଝିପାରିବା ଅସମ୍ଭବ ହେବ କେଉଁ ସବୁ କାରଣରୁ ହେ ମହାତ୍ମନ୍ ସୂତଜୀ (ସଭ୍ୟ)?

**ପ୍ରାୟେଣ-ଅଳ୍ପ-ଆୟୁଷଃ ସଭ୍ୟ କଲୌ ଅସ୍ମିନ୍ ଯୁଗେ ଜନାଃ ।**
**ମନ୍ଦାଃ ସୁମନ୍ଦମତୟୋ ମନ୍ଦଭାଗ୍ୟା ହି-ଉପଦ୍ରୁତାଃ ।୧୦।**

ଉତ୍ତର : ପାଞ୍ଚଟି କାରଣରୁ । ସେମାନଙ୍କ ଆୟୂଷ ଅଳ୍ପ (ପାପ ପ୍ରବଣ ହେତୁ) । ଅଳସୁଆ ପଣିଆ । ବୁଦ୍ଧି ସର୍ବଦା ବିଷୟଭୋଗ ମୁଖୀ । ଅଶୁଭ ସଂସ୍କାର ବେଶୀ ଥିବାରୁ (ମନ୍ଦଭାଗ୍ୟା) । ପୁଣି ଶ୍ରେୟାଂସି ବହୁ ବିଘ୍ନାନି । ଧର୍ମ ସାଧନ ବେଳେ ବହୁତ ବାଧା ବିଘ୍ନର (ଉପଦ୍ରୁତାଃ) ସମ୍ମୁଖୀନ ହେବେ ସେମାନେ ନିଜ ସ୍ୱଜନମାନଙ୍କ ଠାରୁ । କାରଣ ରଜୋଗୁଣୀ ତମୋଗୁଣୀ ଆସୁରୀ ଶକ୍ତି ଏହାର ଘୋର ବିରୋଧୀ । କଳିଯୁଗରେ ଏଭଳି ଲୋକଙ୍କର ସଂଖ୍ୟା ସର୍ବାଧିକ ହୁଏ ଅନ୍ୟ ଯୁଗ ତୁଳନାରେ ।

ପ୍ରଶ୍ନ-୧୧ : କର୍ମ, ଜ୍ଞାନ ବା ଭକ୍ତି ବା ଅନ୍ୟ କେଉଁଥିରେ ଆତ୍ମା ଅତି ପ୍ରସନ୍ନ ହୁଅନ୍ତି ବୋଲି ଶୌନକଜୀ ୨ୟ ପ୍ରଶ୍ନ ପଚାରିଲେ ?

**ଭୂରୀଣି ଭୂରି କର୍ମାଣି ଶ୍ରୋତବ୍ୟାନି ବିଭାଗଶଃ ।**
**ଅତଃ ସାଧୋଽତ୍ର ଯତ୍‌ସାରଂ ସମୁଦ୍ଧୃତ୍ୟ ମନୀଷୟା ॥**
**ବ୍ରୁହି ଭଦ୍ରାୟ ଭୂତାନାଂ ଯେନ-ଆତ୍ମା ସୁପ୍ରସୀଦତି ।୧୧।**

ଉତ୍ତର : ମନୁଷ୍ୟପାଇଁ (ଭୂତାନାଂ) ଶୁଣିବାକୁ ଧର୍ମ,ଅର୍ଥ, କାମ, ମୋକ୍ଷ

ଓ ପ୍ରେମ ପ୍ରାପ୍ତି ପାଇଁ ଅନେକ ଶାସ୍ତ୍ର ପ୍ରଣିତ । ଆପଣଙ୍କ ସୁବୁଦ୍ଧି, ବିବେକ, ପ୍ରଜ୍ଞାନୁସାରେ ପରମ କଲ୍ୟାଣ ପ୍ରାପ୍ତି ପାଇଁ (ଭଦ୍ରାୟ) ସାରାତିସାର ଶ୍ରବଣୀୟ ବିଷୟ ଆମକୁ କୁହନ୍ତୁ ।

ପ୍ରଶ୍ନ-୧୨ : ୩ୟ ପ୍ରଶ୍ନରେ ଦେବକୀ ବସୁଦେବଙ୍କ ଗର୍ଭରୁ ଭକ୍ତବତ୍ସଳ ଭଗବାନ ଅଜନ୍ମା ହୋଇ ମଧ ମନୁଷ୍ୟ ଦେହରେ କୃଷ୍ଣ ଅବତାରରେ କ'ଣ କରିବାକୁ ଇଚ୍ଛାକରି ଜନ୍ମ ହେଲେ ?

**ସୂତ ଜାନାସି ଭଦ୍ରଂ ତେ ଭଗବାନ୍ ସାତ୍ତ୍ୱତାଂ ପତିଃ ।**
**ଦେବକ୍ୟାଂ ବସୁଦେବସ୍ୟ ଜାତୋ ଯସ୍ୟ ଚିକୀର୍ଷୟା ।୧୨।**

ଉତ୍ତର : ଆପଣଙ୍କର ଅଶେଷ କଲ୍ୟାଣ ହେଉ ସୂତଜୀ । ଏକଥା ଆପଣ ନିଶ୍ଚୟ ଜାଣିଥିବେ । ଆମକୁ କହିବା ହୁଅନ୍ତୁ ଯଦି ଆମେ ଜାଣିବା ଅଧିକାରୀ ।

ପ୍ରଶ୍ନ-୧୩ : ଆମେମାନେ ହରିକଥା ଶ୍ରବଣ ଲାଗି ବ୍ୟାକୁଳ । କହିବା ପାଇଁ ଆପଣ ନିଶ୍ଚୟ ଅଧିକାରୀ ଭଗବାନଙ୍କର ବରାହ, ମତ୍ସ୍ୟ, ନୃସିଂହ, ବାମନାଦି ଏତେ ଅବତାର ହୁଏ କାହିଁକି ?

**ତତ୍ ନଃ ଶୁଶ୍ରୂଷମାଣାନାଂ ଅର୍ହସି-ଅଙ୍ଗ-ଅନୁବର୍ଣ୍ଣିତୁମ୍ ।**
**ଯସ୍ୟ-ଅବତାରୋ ଭୂତାନାଂ କ୍ଷେମାୟ ଚ ଭବାୟ ଚ ।୧୩।**

ଉତ୍ତର : ମାନବ ଜାତିର ପରମ କଲ୍ୟାଣ (କ୍ଷେମାୟ) ପ୍ରାପ୍ତି ଲାଗି । ମନୁଷ୍ୟ ମୁକ୍ତି ରୂପ ଆଧ୍ୟାତ୍ମିକ ଆତ୍ମହତ୍ୟା ନକରି ବାରମ୍ବାର ଜନ୍ମଲାଭ କରି ନର ନାରାୟଣଙ୍କ ସେବାନନ୍ଦର ସୁଯୋଗ ପ୍ରାପ୍ତି ଲାଗି (ଭବାୟ) ।

ପ୍ରଶ୍ନ-୧୪ : ହରି ଅବତାରର ଅନ୍ୟ କିଛି ତୃତୀୟ କାରଣ ଥାଇପାରେ କି ?

**ଆପନ୍ନଃ ସଂସୃତିଂ ଘୋରାଂ ଯତ୍ ନାମ ବିବଶୋ ଗୃଣନ୍ ।**
**ତତଃ ସଦ୍ୟୋ ବିମୁଚ୍ୟେତ ଯତ୍ ବିଭେତି ସ୍ୱୟଂ ଭୟମ୍ ।୧୪।**

ଉତ୍ତର : ସ୍ୱୟଂ ଭୟ, କାଳ ବା ମୃତ୍ୟୁ ଭଗବାନଙ୍କର ନାମକୁ ଭୟ କରନ୍ତି । ସେଇ ବିଷ୍ଣୁ, ନୃସିଂହ, ବରାହ, ରାମ, ପର୍ଶୁରାମ ଆଦି ନାମ ଲୀଳା ଗୁଣ, ଯଶ ଆଦି ପ୍ରକଟ ପ୍ରଚାର କରିବାକୁ । ଯାହାକୁ ବାଧ୍ୟବାଧକତାରେ ଶ୍ରଦ୍ଧାରେ ନହେଉ ପଛକେ ମଲାବେଳେ ମଧ ମନରେ ଭାବିଲେ,ତୁଣ୍ଡରେ ଧରିଲେ ତତ୍କ୍ଷଣାତ୍

ଦିବ୍ୟଗତି ପ୍ରାପ୍ତ ହୁଏ ଜୀବ । ନଚେତ୍ ଜନ୍ମମରଣଚକ୍ରରେ ପଡ଼ି (ଆପନ୍ନ ସଂସୃତି ଘୋରାଂ) ଦୁଃଖ କଷ୍ଟରେ ସଢୁଥିବ ବିଚରା ।

ପ୍ରଶ୍ନ-୧୫ : ଗଙ୍ଗାକୂଳରେ ବାସ, ସ୍ନାନ ଆଦି କରି ବା ଗଙ୍ଗାଜଳ (ସ୍ୱର୍ଧୂନୀ ଆପ) ଅନେକ ଦିନଧରି ସେବନ କଲେ ସାଧକ ଅବଶ୍ୟ ପବିତ୍ର ହୋଇଥାଏ । କିନ୍ତୁ କାହାର ଦର୍ଶନ ମାତ୍ରେ ସାଧକ ପବିତ୍ର ହୋଇଥାଏ ?

**ଯତ୍ ପାଦ ସଂଶ୍ରୟାଃ ସୂତ ମୂନୟଃ ପ୍ରଶମାୟନାଃ ।**
**ସଦ୍ୟଃ ପୁନନ୍ତି-ଉପସ୍ପୃଷ୍ଟାଃ ସ୍ୱର୍ଧୂନୀ-ଆପୋଽନୁସେବୟା ।୧୫।**

ଉତ୍ତର : ଯେଉଁ ମୁନି,ଋଷି,ସାଧୁ ସନ୍ଥ ଭଗବାନଙ୍କ ଚରଣ କମଳ ଆଶ୍ରୟ କରି ତାଙ୍କ ନାମ, ରୂପ, ଲୀଳା ଗୁଣ ଶ୍ରବଣ କୀର୍ତ୍ତନ କରନ୍ତି ତାଙ୍କ ଧାମରେ ରହି । ସେଇ ସାଧୁମାନଙ୍କ ଦର୍ଶନ ସ୍ପର୍ଶରେ ସଦ୍ୟ ଫଳ ମିଳେ ସାଧକକୁ ।

ପ୍ରଶ୍ନ-୧୬ : କ'ଣ କଲେ କଳିଯୁଗରେ ସାଧକ ପାପ ମୁକ୍ତ ହୋଇପାରେ (ଶୁଦ୍ଧିକାମୋ) ସହଜ ଉପାୟରେ ?

**କୋ ବା ଭଗବତଃ ତସ୍ୟ ପୁଣ୍ୟଶ୍ଳୋକ-ଈଡ୍ୟ କର୍ମଣଃ ।**
**ଶୁଦ୍ଧିକାମୋ ନ ଶୃଣୁୟାତ୍ ଯଶଃ କଳିମଳ-ଅପହମ୍ ।୧୬।**

ଉତ୍ତର : ଭଗବାନ (ଯାହାଙ୍କୁ ପୁଣ୍ୟଶ୍ଳୋକ ଦ୍ୱାରା ସ୍ତୁତି କରାଯାଏ)ଙ୍କର ଦିବ୍ୟ ଲୀଳା (ଈଡ୍ୟ କର୍ମଣଃ) ବା ଯଶ ଶ୍ରବଣ କୀର୍ତ୍ତନ ଦ୍ୱାରା ।

ପ୍ରଶ୍ନ-୧୭ : ସନକାଦି ମୁନିଗଣ ଓ ଦେବର୍ଷି ନାରଦ ଭଗବାନଙ୍କର କି କି ଗୁଣଗାନ କରି ନିଜକୁ ଧନ୍ୟ କରନ୍ତି ?

**ତସ୍ୟ କର୍ମାଣି-ଉଦାରାଣି ପରିଗୀତାନି ସୂରିଭିଃ ।**
**ବ୍ରୂହି ନଃ ଶ୍ରଦ୍ଦଧାନାନାଂ ଲୀଳୟା ଦଧତଃ କଳାଃ ।୧୭।**

ଉତ୍ତର : ଭଗବାନ କର୍ମ ଫଳ ଭୋଗିବାକୁ ଅବତାର ଗ୍ରହଣ କରିନଥାନ୍ତି । କରନ୍ତି କେବଳ ନିଜ ଲୀଳା ମାଧ୍ୟମରେ ସ୍ୱ ମାହାତ୍ମ୍ୟ ପ୍ରକଟ କରିବାକୁ । ଆମେ ସେଇ କଥା ଶ୍ରବଣ କରିବାରେ ଶ୍ରଦ୍ଧାଳୁ । ଅତଏବ ଆମକୁ ହରି ଲୀଳା, ହରିକଥା, ହରିଗୁଣ କହିବା ହୁଅନ୍ତୁ ।

ପ୍ରଶ୍ନ-୧୮ : ଠାକୁରଜୀ ପୂର୍ବ ଅବତାରମାନଙ୍କରେ କିପରି ଲୀଳା ପ୍ରକଟ କରିଥିବା କଥା ୪ର୍ଥ ପ୍ରଶ୍ନରେ ଉପସ୍ଥାପନ କଲେ ?

**ଅଥ-ଆଖ୍ୟାହି ହରେଃ ଧୀମନ୍ ଅବତାର କଥାଃ ଶୁଭାଃ ।**
**ଲୀଳା ବିଦଧତଃ ସ୍ୱୈରଂ ଈଶ୍ୱରସ୍ୟ-ଆତ୍ମ ମାୟୟା ।୧୮।**

ଉତ୍ତର: ବ୍ରହ୍ମା ଶଙ୍କରଙ୍କୁ ଅଗୋଚର ବିଷ୍ଣୁ ମାୟାଙ୍କ ଆଢୁଆଳରେ ରହି ।

ପ୍ରଶ୍ନ-୧୯ : ଉତ୍ତମ ଶ୍ଳୋକ ଭଗବାନ କୃଷ୍ଣଙ୍କ କଥା ସ୍ୱୟଂ ରସମୟ । କଥାର ପଦ ପଦକରେ ନୂତନ (ନିତ୍ୟ ନବାୟମାନ) ସ୍ୱାଦ ମିଳୁଥାଏ । ଆପଣ ହରି କଥା କହି କ'ଣ ଆମକୁ ତୃପ୍ତ କରିପାରିବେ ?

**ବୟଂ ତୁ ନ ବିତୃପ୍ୟାମ ଉତ୍ତମ ଶ୍ଳୋକ ବିକ୍ରମେ ।**
**ଯତ୍ ଶୃଣ୍ୱତାଂ ରସଜ୍ଞାନାଂ ସ୍ୱାଦୁ ସ୍ୱାଦୁ ପଦେ ପଦେ ।୧୯।**

ଉତ୍ତର : ଆଦୌ ନୁହେଁ । ହରି କଥାରେ ଏପରି ଗୁଣ ଅଛି ଯେ-ଯେତେ ବେଶୀ ଶୁଣିବ ଶ୍ରୋତାଙ୍କର ଆହୁରି ଆହୁରି ଶୁଣିବାକୁ ଇଚ୍ଛା ପ୍ରକଟିକତ ହେବ ।

ପ୍ରଶ୍ନ-୨୦ : ପଞ୍ଚମ ପ୍ରଶ୍ନରେ ପଚାରିଲେ ଯେ-କୃଷ୍ଣାବତାରରେ ବଳରାମଙ୍କୁ ସାଙ୍ଗରେ ଧରି ଭଗବାନ ଗୁପ୍ତରେ ମଣିଷ ରୂପ ଧରି କ'ଣ କ'ଣ ଲୀଳା ପ୍ରକଟ କଲେ ?

**କୃତବାନ୍ କିଲ ବୀର୍ଯ୍ୟାଣି ସହ ରାମେଣ କେଶବଃ ।**
**ଅତିମର୍ତ୍ତ୍ୟାନି ଭଗବାନ୍ ଗୂଢ଼ଃ କପଟ ମାନୁଷଃ ।୨୦।**

ଉତ୍ତର : ଅତି ଅଲୌକିକ ଲୀଳା (ବୀର୍ଯ୍ୟାଣି) । ଯାହା ସବୁ ଅଂଶ ଅବତାର କିମ୍ୱା କଳା ଅବତାରରେ ମଧ୍ୟ ସମ୍ଭବ ହୋଇପାରି ନଥିଲା । ବାମନ ହୋଇ ବଳିଙ୍କ କନ୍ୟାଙ୍କୁ ବିଷପାନ କରି ଗୋଲୋକ ନେବା ଅସମ୍ଭବ ହେଲା । ଶ୍ରୀରାମ ହୋଇ ଦଣ୍ଡକାରଣ୍ୟ ମୁନିମାନଙ୍କ ସହ ରାସ କରିବା ଇଚ୍ଛାକୁ କୃଷ୍ଣ ଅବତାରରେ ପୂରଣ କରିବେ ବୋଲି କଥା ଦେଇଥିଲେ । ଜାମ୍ବବାନଙ୍କ ଯୁଦ୍ଧ କରିବା କଣ୍ଡୂ ନିବାରଣ ମର୍ଯ୍ୟାଦା ପୁରୁଷୋତ୍ତମ କିପରି ପୂରଣ କରିପାରିଥାଆନ୍ତେ ? ଇମିତି ଅନେକ ଅବତାରର ଅନେକ ପ୍ରତିଶ୍ରୁତି ଭକ୍ତ ବାଞ୍ଛା କଳ୍ପତରୁ ଷୋହଳ କଳା ଶ୍ରୀକୃଷ୍ଣ ଅବତାରରେ ପୂରଣ କଲେ ।

ପ୍ରଶ୍ନ-୨୧ : ହଜାରେ ବର୍ଷ ଯଜ୍ଞ କରିବାକୁ (ଦୀର୍ଘ ସତ୍ରେଣ) ପ୍ରତିଜ୍ଞା କରି ମଧ୍ୟ ଶୌନକାଦି ମୁନିମାନେ କିପରି କଳିଯୁଗରେ ବାଧା ବିଘ୍ନରୁ ରକ୍ଷା ପାଇବାକୁ ଉପାୟ କଲେ ?

**କଲିଂ ଆଗତଂ ଆଜ୍ଞାୟ କ୍ଷେତ୍ରେଽସ୍ମିନ୍ ବୈଷ୍ଣବେ ବୟମ୍ ।**
**ଆସୀନା ଦୀର୍ଘ ସତ୍ରେଣ କଥାୟାଂ ସକ୍ଷଣା ହରେଃ ।୨୧।**

ଉତ୍ତର : ପରମ ପବିତ୍ର ବୈଷ୍ଣବ ଧାମ ନୈମିଷାରଣ୍ୟରେ ବସି ସନ୍ଥ ମୁଖରୁ ହରି କଥା ଶ୍ରବଣ ଦ୍ୱାରା ।

ପ୍ରଶ୍ନ-୨୨ : ଭବ ସାଗରରୁ ପାର ହେବାକୁ ଇଚ୍ଛୁକ (ନିସ୍ତିତୀର୍ଷତାଂ) ସେମାନଙ୍କ ପାଖକୁ ସୂତ ଗୋସ୍ୱାମୀ ରୂପକ ନାବିକ (କର୍ଣ୍ଣଧାର) କିଏ ପଠାଇଛନ୍ତି ବୋଲି ମୁନିମାନେ କହିଲେ ?

**ତ୍ୱଂ ନଃ ସଂଦର୍ଶିତୋ ଧାତ୍ରା ଦୁସ୍ତରଂ ନିସ୍ତିତୀର୍ଷତାମ୍**
**କଲିଂ ସତ୍ତ୍ୱ ହରଂ ପୁଂସାଂ କର୍ଣ୍ଣଧାର ଇବ-ଅର୍ଣ୍ଣବମ୍ ।୨୨।**

ଉତ୍ତର : ବ୍ରହ୍ମାଜୀଙ୍କ (ଧାତ୍ରା) ଦ୍ୱାରା ପ୍ରେରିତ । ଦୁଷ୍ଟ କଳିଯୁଗ ମନୁଷ୍ୟମାନଙ୍କୁ ସତ୍ତ୍ୱଗୁଣକୁ ଚାପି ରଖି ରଜ-ତମ ଗୁଣରେ ପୀଡ଼ା ଦେଲାବେଳେ ସ୍ୱୟଂ ବିଧାତାଙ୍କ ଛଡ଼ା ଆଉ କିଏ ଅବା ଏ କଥା କରିପାରନ୍ତା ?

ପ୍ରଶ୍ନ-୨୩ : ଷଷ୍ଠ ଓ ଶେଷ ପ୍ରଶ୍ନରେ ବ୍ରାହ୍ମଣ, ବୈଷ୍ଣବ ଓ ଧର୍ମରକ୍ଷକ ମହା ଯୋଗେଶ୍ୱର ଶ୍ରୀକୃଷ୍ଣ ଧରାଧାମ ଛାଡ଼ି ଗୋଲକ ଧାମ ଯିବାକୁ ନିଷ୍ପତ୍ତି କରନ୍ତେ ଧର୍ମଙ୍କ ପାଇଁ ରହିବା କେଉଁ ସ୍ଥାନ ଖୋଜା ପଡ଼ିଲା ?

**ବ୍ରୂହି ଯୋଗେଶ୍ୱରେ କୃଷ୍ଣେ ବ୍ରହ୍ମଣ୍ୟେ ଧର୍ମବର୍ମଣି ।**
**ସ୍ୱାଂ କାଷ୍ଠାଂ-ଅଧୁନା-ଉପେତେ ଧର୍ମଃ କଂ ଶରଣଂ ଗତଃ ।୨୩।**

ଉତ୍ତର : ଭଗବାନଙ୍କ ଦ୍ୱାରା ବ୍ରହ୍ମାଙ୍କ ପ୍ରାର୍ଥନା ଜନିତ ଦୁଷ୍ଟ ଦଳନ, ସନ୍ଥ ପାଳନ ଓ ଧର୍ମ ସଂସ୍ଥାପନ କର୍ମ ଶେଷ ହୋଇ ସାରିଥିଲା ସେତେବେଳକୁ । ଧର୍ମଙ୍କ ଧର୍ମ ପରମ ଧର୍ମ ଭକ୍ତି ଧର୍ମକୁ ସାଇତି ରଖିବାକୁ ଭଗବାନଙ୍କୁ କଥା ଅବତାର ହୋଇ ସେଥିର (ଭାଗବତରେ) ଲୁଚି ରହିବାକୁ ଦରକାର ପଡ଼ିଲା । ସେତେବେଳକୁ ତାଙ୍କର ବାଣୀ ଅବତାର ମହାଭାରତ ଗ୍ରନ୍ଥରେ ଗୀତାଙ୍କ ୭୦୦ ଶ୍ଳୋକରେ ରଚନା ହୋଇ ସାରିଥିଲା । ଗୀତା କଲ୍ୟାଣ କରିବେ ପଣ୍ଡିତ ମାନଙ୍କର । ହେଲେ ଗାଁ ଗହଳି ଶୂଦ୍ର, ପତିତ, ମୂର୍ଖ, ନାରୀମାନଙ୍କ କଲ୍ୟାଣ କରିବ କିଏ ? ଏ ଦାୟିତ୍ୱ ଦିଆଗଲା ଭାଗବତ ମହାପୁରାଣଙ୍କ ହସ୍ତରେ । ବ୍ୟାସଦେବ ଏହା ରଚନା କରି ସାରି ଲେଖନୀ ଥୋଇଦେଲେ । ଲେଖକ ଗଣେଶଙ୍କୁ ଛୁଟି କରିଦେଲେ ।

# ଅଥ ୨ୟ ଅଧ୍ୟାୟଃ

## (ଦିବ୍ୟ ଭଗବତ୍ କଥା ଓ ଦିବ୍ୟ ଭଗବତ୍ ଭକ୍ତିଙ୍କ ମାହାତ୍ମ୍ୟ)

### ବ୍ୟାସ ଉବାଚ

ପ୍ରଶ୍ନ-୨୪ : ବେଦ ଅଧ୍ୟୟନକାରୀ ଶୌନକାଦି ମୁନିମାନଙ୍କର ବ୍ରହ୍ମ ସମ୍ବନ୍ଧିତ ଛଅଟି ପ୍ରଶ୍ନ ରୋମହର୍ଷଣଙ୍କ ପୁତ୍ର ଉଗ୍ରଶ୍ରବା ଅନ୍ୟନାମ ସୂତ ଗୋସ୍ୱାମୀ ଶୁଣି ଅତ୍ୟନ୍ତ ପ୍ରସନ୍ନ ହେଲେ । ସେମାନଙ୍କୁ ମଙ୍ଗଳମୟ ପ୍ରଶ୍ନ ପାଇଁ ଅଭିନନ୍ଦନ ଜଣାଇ ସୂତଜୀ କ'ଣ କଲେ ?

**ଇତି ସଂପ୍ରଶ୍ନ ସଂହୃଷ୍ଟୋ ବିପ୍ରାଣାଂ ରୋମହର୍ଷଣିଃ ।**
**ପ୍ରତିପୂଜ୍ୟ ବଚଃ ତେଷାଂ ପ୍ରବକ୍ତୁଂ ଉପଚକ୍ରମେ ।୧।**

ଉତ୍ତର : ସେଇ ଛଅ ପ୍ରଶ୍ନର ଉତ୍ତର ଦେବାକୁ ଆରମ୍ଭ କଲେ ।

ପ୍ରଶ୍ନ-୨୫: ସୂତ ଗୋସ୍ୱାମୀ ସର୍ବ ପ୍ରଥମେ କାହାକୁ ନମସ୍କାର କଲେ ନିଜ ମଙ୍ଗଳାଚରଣ ଶ୍ଳୋକରେ ?

### ସୂତ ଉବାଚ

**ଯଂ ପ୍ରବ୍ରଜନ୍ତଂ ଅନୁପେତଂ-ଅପେତ କୃତ୍ୟଂ**
**ଦ୍ୱୈପାୟନୋ ବିରହ କାତର ଆଜୁହାବ ।**
**ପୁତ୍ର-ଇତି ତନ୍ମୟତୟା ତରବୋଽଭିନେଦୁଃ**
**ତଂ ସର୍ବଭୂତ ହୃଦୟଂ ମୁନିଂ-ଆନତୋଽସ୍ମି ।୨।**

ଉତ୍ତର : ବ୍ୟାସଦେବ ସନ୍ତାନ ଶୁକଦେବ ଜନ୍ମ ହେଉ ହେଉ ୧୬ ବର୍ଷର କିଶୋର ବାଳକଟିଏ ହୋଇ ନିଜର ଜାତ କର୍ମ ସଂସ୍କାର ନ ହେଉଣୁ ସଂସାର ଛାଡ଼ି ବଣରେ ପଶିଲେ । ଭୟ ହେଲା କାଳେ ସଂସାର ମାୟା ଆକ୍ରମଣ କରି ତାଙ୍କୁ ବନ୍ଧନରେ ପକାଇଦେବ ଯାହାଙ୍କ ପଛେ ପଛେ ପୁଅ ପୁଅ ବୋଲି ରଡ଼ି ଛାଡ଼ି ବ୍ୟାସଦେବ ଦୌଡ଼ିଥିଲେ । କିନ୍ତୁ ପିତାଙ୍କୁ ନମସ୍କାର କରିବା ତ ଦୂରର କଥା, ନିରୁତ୍ତର ରହିବାକୁ ପସନ୍ଦ କଲେ ସେଇ ଆଜନ୍ମ ବ୍ରହ୍ମଜ୍ଞାନୀ ଶୁକଦେବଜୀ । ସେ

ସେତେବେଳକୁ ପୂର୍ଣ୍ଣ ସମାଧିସ୍ଥ ଥିଲେ । ତାଙ୍କର ଆତ୍ମା ତାଙ୍କ ଚାରି ପାଖରେ ଥିବା ବୃକ୍ଷଲତାଙ୍କ ମଧ୍ୟସ୍ଥ ପରମାତ୍ମାଙ୍କ ଠାରେ ପୂର୍ଣ୍ଣ ସଂଲଗ୍ନ ଥିଲା । ସୁତରାଂ ତାଙ୍କ ତରଫରୁ ବୃକ୍ଷଲତାମାନେ ବ୍ୟାସଙ୍କୁ ଉତ୍ତର ଦେଇଥିଲେ । ସେଇ ଆଜନ୍ମ ପରମହଂସ ପରା ବୈରାଗୀ ଶୁକଦେବ ଗୋସ୍ୱାମୀଙ୍କୁ ସୂତଜୀ ଗୁରୁ ହିସାବରେ ଏହି ଶ୍ଳୋକରେ ବନ୍ଦନା କରିଥିଲେ ଶ୍ରୀମଭାଗବତ ପ୍ରବଚନ ଆରମ୍ଭ କରିବା ପୂର୍ବରୁ ।

ପ୍ରଶ୍ନ-୨୬ : କେଉଁ କେଉଁ ଛଅ ଜଣଙ୍କୁ ପ୍ରଥମେ ନମସ୍କାର କରି ଶ୍ରୀମଦ୍ ଭାଗବତ ମହାପୁରାଣ (ଜୟଂ) ଶ୍ରବଣ କୀର୍ତ୍ତନ କରିବାକୁ ସେ କହିଲେ ?

**ନାରାୟଣଂ ନମସ୍କୃତ୍ୟ ନରଂ ଚ-ଏବ ନରୋତ୍ତମମ୍ ।**
**ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟଂ ଉଦୀରୟେତ୍ ।୪।**

ଉତ୍ତର : କର୍ମମାର୍ଗର ଦୁଇ ଗୁରୁ ନର (ଅର୍ଜୁନ)-ନାରାୟଣ (କୃଷ୍ଣ), ଭକ୍ତିମାର୍ଗର ଦୁଇ ଗୁରୁ ଶ୍ରୀକୃଷ୍ଣ (ନରୋତ୍ତମ)-ରାଧା (ଦେବୀଂ) ଓ ଜ୍ଞାନ ମାର୍ଗର ଦୁଇ ଗୁରୁ ମା ସରସ୍ୱତୀ ଓ ବେଦବ୍ୟାସଙ୍କୁ ।

ପ୍ରଶ୍ନ-୨୭ : ପୂର୍ବୋକ୍ତ ଛଅଟି ଯାକ ପ୍ରଶ୍ନର ସଂକ୍ଷେପରେ ଗୋଟିଏ ଶ୍ଳୋକରେ କ'ଣ କହି ଉତ୍ତର ଦେଲେ ସୂତଜୀ ମହାରାଜ ? (ପ୍ରଶ୍ନ ସିନା ଛଅଟି ଉତ୍ତର କିନ୍ତୁ ଗୋଟିଏ)

**ମୁନୟଃ ସାଧୁପୃଷ୍ଟୋଽହଂ ଭବଦ୍‌ଭିଃ ଲୋକମଙ୍ଗଳମ୍ ।**
**ଯତ୍‌କୃତଃ କୃଷ୍ଣ ସଂପ୍ରଶ୍ନୋ ଯେନ-ଆତ୍ମା ସୁପ୍ରସୀଦତି ।୪।**

ଉତ୍ତର : ସଂକ୍ଷିପ୍ତ ଉତ୍ତରଟି ଅତ୍ୟନ୍ତ ଲୋକ କଲ୍ୟାଣ କାରକ । ଆତ୍ମାଙ୍କୁ ସର୍ବୋଚ୍ଚ ଆନନ୍ଦ ମିଳେ-''କୃଷ୍ଣ କଥା ଶ୍ରବଣରେ'' ଛଅ ପ୍ରଶ୍ନର ଉତ୍ତର ଏଇ ତିନି ଶବ୍ଦରେ ।

ପ୍ରଶ୍ନ-୨୮ : ସଂସାର ଭୋଗ ସଂଗ୍ରହ ସୁଖ କାମନା ଶୂନ୍ୟ ହୋଇ ପୁଣି ବ୍ୟବଧାନ ରହିତ (ଅପ୍ରତିହତା) ଭକ୍ତି କାହାକୁ କଲେ ତାହା ଧର୍ମମାନଙ୍କର ଧର୍ମ ପରମ ଧର୍ମ ବୋଲାଇ ସାଧକର ଆତ୍ମାକୁ ପ୍ରସନ୍ନ କରିବ ?

**ସ ବୈ ପୁଂସାଂ ପରୋ ଧର୍ମୋ ଯତୋ ଭକ୍ତିଃ ଅଧୋକ୍ଷଜେ ।**
**ଅହୈତୁକୀ-ଅପ୍ରତିହତା ଯୟା-ଆତ୍ମା ସୁପ୍ରସୀଦତି ।୬।**

ଉତ୍ତର : ସେ ଦୁହେଁ (ଜ୍ଞାନ, ବୈରାଗ୍ୟ) ଭକ୍ତିଦେବୀଙ୍କ ପଛରେ ଆପେ ଆପେ ଦୌଡ଼ିବେ । ସ୍ୱଧର୍ମ ପାଳନ, ଅଷ୍ଟାଙ୍ଗ ଯୋଗ ସାଧନ ଆଦି ସମସ୍ତେ ପଛରେ ରହିଯିବେ । ଏଇତ ଭକ୍ତିମାର୍ଗର ବାହାଦୁରୀ ।

ପ୍ରଶ୍ନ-୨୯ : କେବଳ ବାସୁଦେବଙ୍କୁ ଭକ୍ତି କଲେ ତତ୍ତ୍ୱଜ୍ଞାନ, ସଂସାର ବୈରାଗ୍ୟ ପ୍ରାପ୍ତି ହେବ କିପରି ବିନା ବେଦ ପଠନରେ, ବିନା ଗୃହତ୍ୟାଗରେ ?

**ବାସୁଦେବେ ଭଗବତି ଭକ୍ତିଯୋଗଃ ପ୍ରଯୋଜିତଃ ।**
**ଜନୟତି-ଆଶୁ ବୈରାଗ୍ୟଂ ଜ୍ଞାନଂ ଚ ଯତ୍ ଅହୈତୁକମ୍ ।୭।**

ଉତ୍ତର : ଜ୍ଞାନ ଓ ବୈରାଗ୍ୟ ଦୁହେଁ ଭକ୍ତିଦେବୀଙ୍କ ପଛରେ ଆପେ ଆପେ ଦୌଡ଼ିବେ । ସ୍ୱଧର୍ମ ପାଳନ ଅଷ୍ଟାଙ୍ଗ ଯୋଗ ସାଧନ ଆଦି କାହିଁ କେତେ ପଛରେ ରହିଯିବେ । ଗୋପୀମାନଙ୍କୁ ଗୋବିନ୍ଦ ସ୍ୱଧର୍ମ ତ୍ୟାଗର ଦୃଷ୍ଟାନ୍ତ କରି ରଖିଯାଇଛନ୍ତି । ଅର୍ଜୁନଙ୍କୁ କିନ୍ତୁ ନବୀନ ସାଧକ ବୋଲି ସ୍ୱଧର୍ମ ପାଳନର ଉପଦେଶ ଦେଇଛନ୍ତି । ବାସୁଦେବ ଭକ୍ତି କର୍ମଯୋଗ-ଜ୍ଞାନଯୋଗକୁ ପଛରେ ପକାଇ ଭକ୍ତିମାର୍ଗୀକୁ ଆଖି ବୁଜି ଦୌଡ଼ାନ୍ତି (ଧାବନ୍ ନିମିଲ୍ୟ ବା ନେତ୍ରେ ନ ସ୍ଖଲେତ୍ ନ ପତେତ୍ ଇହ)। ଏଇତ ଭକ୍ତିମାର୍ଗର ବାହାଦୂରୀ ।

ପ୍ରଶ୍ନ-୩୦ : ଯଦି ବର୍ଣ୍ଣ ଧର୍ମ, ଆଶ୍ରମ ଧର୍ମ, ରାଜ ଧର୍ମ, ପ୍ରଜା ଧର୍ମ, ଗୁରୁ ଧର୍ମ, ଶିଷ୍ୟ ଧର୍ମ, ନାରୀ ଧର୍ମ ଆଦି ସଂସାରୀ ମାନବ ଧର୍ମ ପାଳନ କରି ହରିକଥା (ବିଶ୍ୱକ୍ ସେନ କଥାସୁ) ଶ୍ରବଣରେ ରତି ନହେଲା, ତେବେ ସେ କି ବୁଦ୍ଧି କି ବିବେକର କାମ ହେଲା ?

**ଧର୍ମଃ ସୁ-ଅନୁଷ୍ଠିତଃ ପୁଂସାଂ ବିଶ୍ୱକ୍‌ସେନ କଥାସୁ ଯଃ ।**
**ନ-ଉତ୍ପାଦୟେତ୍ ଯଦି ରତିଂ ଶ୍ରମ ଏବ ହି କେବଳମ୍ ।୮।**

ଉତ୍ତର : କେବଳ ଚଷୁକୁଟିବା ଭଳି ବ୍ୟର୍ଥ ଶ୍ରମ ହେଲା ।

ପ୍ରଶ୍ନ-୩୧: ସନାତନ ହିନ୍ଦୁ ଧର୍ମର ଅନ୍ତିମ ଲକ୍ଷ୍ୟ ପ୍ରେମକୁ ଛାଡ଼ି ପ୍ରଥମ ୪ଲକ୍ଷ୍ୟ ଧର୍ମ-ଅର୍ଥ-କାମ-ମୋକ୍ଷ (ଅପବର୍ଗ) ମଧ୍ୟରେ କି ସମ୍ବନ୍ଧ ଅଛି ? ୧ମ ଲକ୍ଷ୍ୟ ଧର୍ମ ଓ ୪ର୍ଥ ଲକ୍ଷ୍ୟ ମୋକ୍ଷ ପ୍ରାରବ୍ଧ ପ୍ରଧାନ । ପୂର୍ବ ଜନ୍ମର ଅର୍ଜିତ ସଂସ୍କାର ଏଥିରେ ସାହାଯ୍ୟ କରିଥାନ୍ତି । କିନ୍ତୁ ୨ୟ ଲକ୍ଷ୍ୟ ଅର୍ଥ ଉପାର୍ଜନ ଓ ୩ୟ ଲକ୍ଷ୍ୟ କାମନା ପୂରଣ ଦୁଇଟି ଗୌଣ ଲକ୍ଷ୍ୟ ଓ ପୁରୁଷାର୍ଥ ପରାୟଣ । ଏଥିରେ ଅର୍ଥ ଶାସ୍ତ୍ର

ଓ କାମ ଶାସ୍ତ୍ର କିପରି ସାହାଯ୍ୟ କରନ୍ତି ?

**ଧର୍ମସ୍ୟ ହି-ଅପବର୍ଗସ୍ୟ ନ-ଅର୍ଥୋଽର୍ଥାୟ-ଉପକଳ୍ପତେ ।**
**ନ-ଅର୍ଥସ୍ୟ ଧର୍ମ-ଏକ-ଅନ୍ତସ୍ୟ କାମୋଲାଭାୟ ହି ସ୍ମୃତଃ ।୯।**

ଉତ୍ତର : ପରମ କଲ୍ୟାଣ ଇଚ୍ଛୁକ ମାନବ ପାଇଁ ଯେନ ତେନ ପ୍ରକାରେଣ ଅର୍ଥ ଉପାର୍ଜ୍ଜନ ଅନୁଚିତ (ନ-ଅର୍ଥୋ) । ଧର୍ମ ମାର୍ଗରେ ଜୀବନ ବିତାଇ ଅର୍ଥ ସଂଗ୍ରହ ଅବଶ୍ୟ କର୍ତ୍ତବ୍ୟ । ଉପାର୍ଜିତ ଅର୍ଥକୁ ଦେହ-ଗୃହ ସଜାଇବାରେ ଖର୍ଚ୍ଚ ନକରି କେବଳ ସେଇ କାମନା ଗୁଡ଼ିକ ପୂରଣ କରିବାରେ ଖର୍ଚ୍ଚ କରିବା ଉଚିତ ଯେଉଁଥିରେ ମୋହ (ସଂସାର ଆସକ୍ତି) କ୍ଷୟ ହେବ ବା ମୋକ୍ଷ ପ୍ରାପ୍ତି ହେବ ।

ପ୍ରଶ୍ନ-୩୨ : ଦେବ ଦୁର୍ଲ୍ଲଭ ମନୁଷ୍ୟ ଜୀବନରେ କାମନା ପୂରଣର ଅସଲି ଅର୍ଥ ବା ଲକ୍ଷ୍ୟ କ'ଣ ?

**କାମସ୍ୟ ନ-ଇନ୍ଦ୍ରିୟ ପ୍ରୀତିଃ ଲାଭୋ ଜୀବେତ ଯାବତା ।**
**ଜୀବସ୍ୟ ତତ୍ତ୍ୱ ଜିଜ୍ଞାସା ନ-ଅର୍ଥୋ ଯଃ ଚ-ଇହ କର୍ମଭିଃ ।୧୦।**

ଉତ୍ତର : ଅର୍ଥ ଉପାର୍ଜ୍ଜନର ଲକ୍ଷ୍ୟ ଭୋଗ ବିଳାସରେ ମାତି ଇନ୍ଦ୍ରିୟ ତୃପ୍ତି ଆଶା କରିବା ନୁହେଁ । ବରଂ ସରଳ ନିବରାଡ଼ମ୍ବର ସାଧକ ଜୀବନ ବିତାଇ ବଳକା ଅର୍ଥରେ ଧର୍ମ ସଂଗ୍ରହ କରି ମୋକ୍ଷ ଲକ୍ଷ୍ୟରେ ପହଞ୍ଚିବା । ଯାହାର ଅନ୍ୟନାମ ତତ୍ତ୍ୱଜ୍ଞାନ, ସ୍ୱରୂପଜ୍ଞାନ, ସମ୍ବନ୍ଧ ଜ୍ଞାନ ବା ରାଗ ଦ୍ୱେଷରେ ସମତା ପ୍ରାପ୍ତି ।

ପ୍ରଶ୍ନ-୩୩ : ତତ୍ତ୍ୱଜ୍ଞାନୀମାନେ ଅଦ୍ୱୟ ବ୍ରହ୍ମଜ୍ଞାନ ବିଷୟରେ କି ମତ ଦେଇଥାନ୍ତି ?

**ବଦନ୍ତି ତତ୍ ତତ୍ତ୍ୱବିଦଃ ତତ୍ତ୍ୱଂ ଯତ୍ ଜ୍ଞାନଂ ଅଦ୍ୱୟମ୍ ।**
**ବ୍ରହ୍ମ-ଇତି ପରମାତ୍ମା-ଇତି ଭଗବାନ୍-ଇତି ଶବ୍ଦ୍ୟତେ ।୧୧।**

ଉତ୍ତର : ବ୍ରହ୍ମ ୩ ନୁହନ୍ତି ଏକ । ତାଙ୍କର ନାମ କିନ୍ତୁ ତିନୋଟି । କର୍ମଯୋଗୀ ପାଇଁ ବ୍ରହ୍ମ, ଜ୍ଞାନଯୋଗୀପାଇଁ ପରମାତ୍ମା ଓ ଭକ୍ତିଯୋଗୀ ପାଇଁ ସେ ଭଗବାନ ।

ପ୍ରଶ୍ନ-୩୪ : ଶ୍ରଦ୍ଧାଳୁ ସାଧକ କିପରି ତାଙ୍କୁ ଦର୍ଶନ କରନ୍ତି ?

**ତତ୍ ଶ୍ରଦ୍ଧଧାନା ମୁନୟୋ ଜ୍ଞାନ ବୈରାଗ୍ୟ ଯୁକ୍ତୟା ।**
**ପଶ୍ୟନ୍ତି-ଆତ୍ମନି ଚ-ଆତ୍ମାନଂ ଭକ୍ତ୍ୟା ଶ୍ରୁତ ଗୃହୀତୟା ।୧୨।**

ଉତ୍ତର : ବୈଦିକ ମାର୍ଗରେ (ଶ୍ରୁତ ଗୃହୀତୟା) କର୍ମଯୋଗୀ ସମଗ୍ର ବିଶ୍ୱବ୍ରହ୍ମାଣ୍ଡକୁ ପରମାତ୍ମାଙ୍କ ଦେହ ବା ବିରାଟ ପୁରୁଷ ଭାବରେ ଧ୍ୟାନ କରି, ଜ୍ଞାନଯୋଗୀ ନିଜ ଆଜ୍ଞାଚକ୍ରରେ ଅଙ୍ଗୁଷ୍ଠ ମାତ୍ର ପୁରୁଷଙ୍କୁ ଧ୍ୟାନ କରି ଏବଂ ଭକ୍ତିଯୋଗୀ ନିଜ ହୃଦୟ କମଳରେ ଲକ୍ଷ୍ମୀ-ନାରାୟଣ, ସୀତା-ରାମ ବା ରାଧା-କୃଷ୍ଣ ରୂପରେ ଦର୍ଶନ କରନ୍ତି । କର୍ମଯୋଗୀର ସାଧନ ଜ୍ଞାନ-ଭକ୍ତି, ଜ୍ଞାନଯୋଗୀର ସାଧନ ବୈରାଗ୍ୟ-ଭକ୍ତି ଓ ଭକ୍ତିଯୋଗୀର ସାଧନ ଶୁଦ୍ଧ ଭକ୍ତି । ଜ୍ଞାନ-ବୈରାଗ୍ୟର ସ୍ୱତନ୍ତ୍ର, ସାଧନ ଭକ୍ତ ପାଇଁ ଗୌଣ ।

ପ୍ରଶ୍ନ-୩୫ : କିଭଳି ସରଳ ସାଧନରେ ଶ୍ରୀହରିଙ୍କୁ ପ୍ରସନ୍ନ କରିହୁଏ ?

**ଅତଃ ପୁଂଭିଃ ଦ୍ୱିଜ ଶ୍ରେଷ୍ଠା ବର୍ଣ୍ଣ-ଆଶ୍ରମ ବିଭାଗଶଃ ।**
**ସୁ-ଅନୁଷ୍ଠିତସ୍ୟ ଧର୍ମସ୍ୟ ସଂସିଦ୍ଧିଃ ହରିତୋଷଣମ୍ ।୧୩।**

ଉତ୍ତର : ହେ ଶୌନକାଦି ଋଷିଗଣ (ଦ୍ୱିଜ ଶ୍ରେଷ୍ଠା), ଯାହାର ଯେଉଁ ବର୍ଣ୍ଣ, ଯେଉଁ ଆଶ୍ରମରେ ଯେତେବେଳେ ଯେଉଁ ଅଧିକାର ସହର୍ଷ ତାଂକୁ କର୍ତ୍ତବ୍ୟ ରୂପେ ପାଳନ କଲେ ଶ୍ରୀହରି ପ୍ରସନ୍ନ ହୁଅନ୍ତି । ତାହାହିଁ ମାନବ ଜୀବନର ଅସଲି ସିଦ୍ଧି ବା ମୋକ୍ଷ ପ୍ରାପ୍ତି ।

ପ୍ରଶ୍ନ-୩୬ : ସୁତରାଂ ଏକାଗ୍ର ମନରେ ସଦା ସର୍ବଦା ସାରା ଜୀବନ କର୍ମଯୋଗୀ, ଜ୍ଞାନଯୋଗୀ ଓ ଭକ୍ତିଯୋଗୀ ସାଧକ କ'ଣ କରିବ ?

**ତସ୍ମାତ୍ ଏକେନ ମନସା ଭଗବାନ୍ ସାତ୍ତ୍ୱତାଂ ପତିଃ ।**
**ଶ୍ରୋତବ୍ୟଃ କୀର୍ତ୍ତିତବ୍ୟଃ ଚ ଧେୟଃ ପୂଜ୍ୟଃ ଚ ନିତ୍ୟଦା ।୧୪।**

ଉତ୍ତର : ଭକ୍ତ ବତ୍ସଳ (ସାତ୍ତ୍ୱତାଂ ପତିଃ) ଭଗବାନଙ୍କର ନାମ, ରୂପ,ଲୀଳା, ଗୁଣ ଶ୍ରବଣ କୀର୍ତ୍ତନ କରିବ । ବିଷ୍ଣୁ-ବୈଷ୍ଣବଙ୍କ ପୂଜନ କରିବ । ଦଶ ଇନ୍ଦ୍ରିୟଙ୍କୁ ତାଙ୍କ ସେବାରେ ଲଗାଇ ଓ ତାଙ୍କ ରୂପ ଲୀଳା ଆଦିର ମନନ ସହିତ ଧ୍ୟାନ କରିବ ନିଜ ଅମାନିଆ ମନକୁ ବୁଝେଇ, ଶୁଝେଇ ଓ ଫୁସୁଲେଇ ।

ପ୍ରଶ୍ନ-୩୭ : ଏସବୁ କଲେ କ'ଣ ଫଳ ମିଳିବ ସାଧକକୁ ?

**ଯତ୍ ଅନୁଧ୍ୟା-ଅସିନା ଯୁକ୍ତାଃ କର୍ମଗ୍ରନ୍ଥି ନିବନ୍ଧନମ୍ ।**
**ଛିନ୍ଦନ୍ତି କୋବିଦାଃ ତସ୍ୟ କୋ ନ କୁର୍ଯ୍ୟାତ୍ କଥା ରତିମ୍ ।୧୫।**

ଉତ୍ତର : ବନ୍ଧନ କାରକ କର୍ମଗ୍ରନ୍ଥି ଛିଣ୍ଡିଯିବ ଜ୍ଞାନ ତଲୱାରରେ । ସାଧକ କୃତ-କୃତ୍ୟ ହେବ । ତେଣିକି ଆଉ କିଛି କରିବା ବାଧ୍ୟତା ମୂଳକ ନୁହେଁ । କଲେ ଭଲ । କର୍ମର ଫଳ ଭକ୍ତିରେ ପରିଣତ ହେବ । ନ କଲେ ମନ୍ଦ ନୁହେଁ ବୈରାଗ୍ୟବାନ ହୋଇ ଜ୍ଞାନଯୋଗର ଅଧିକାରୀ ହେବ । କେତେ ଲୋକଙ୍କୁ ମୋକ୍ଷର ବାଟ କଢ଼ାଇବ । ଏଭଳି ଅବସ୍ଥାରେ କର୍ମୀ, ଜ୍ଞାନୀ, ଭକ୍ତ କିଏ ଅବା ହରିକଥା ଶ୍ରବଣରେ ରତ ନହେବ । ଅର୍ଥାତ୍ ସମସ୍ତେ ଲାଗିପଡ଼ି ହରିକଥା ଶୁଣିବେ, ହରିଗୁଣ ଗୁଣିବେ, ହରିରୂପ ଧ୍ୟାନ କରିବେ ଓ ହରିନାମ ଗାଇବେ ।

ପ୍ରଶ୍ନ-୩୮ : ଏ ଚାରି କଥାରେ କିଛି କ୍ରମବଦ୍ଧତା ଅଛି କି ?

**ଶୁଶ୍ରୂଷୋଃ ଶ୍ରଦ୍ଧଧାନସ୍ୟ ବାସୁଦେବ କଥା ରୁଚିଃ ।**
**ସ୍ୟାତ୍ ମହତ୍ ସେବୟା ବିପ୍ରାଃ ପୁଣ୍ୟତୀର୍ଥ ନିଷେବଣାତ୍ ।୧୬।**

ଉତ୍ତର : ନିଶ୍ଚୟ ଅଛି । ହେ ଶୌନକାଦି ମୁନିଗଣ (ବିପ୍ରାଃ) । ପ୍ରଥମେ ଗୃହସ୍ଥାଶ୍ରମରେ ଥାଇ ମଧ୍ୟ ପୁଣ୍ୟ ତୀର୍ଥ ଦର୍ଶନ କରି ଯିବାକୁ ହୁଏ । ତୀର୍ଥ ସ୍ଥାନରେ ସନ୍ଥ ସେବା (ମହତ୍ ସେବୟା) କରାଯାଏ । ସାଧୁ ବୈଷ୍ଣବଙ୍କ କୃପାହେଲେ କଥା ଶ୍ରବଣରେ ଇଚ୍ଛା (ଶୁଶ୍ରୂଷା) ଜାତ ହୁଏ । କଥା ଶ୍ରବଣ କଲେ ଶ୍ରଦ୍ଧା ଉତ୍ପନ୍ନ ହୁଏ । ଶ୍ରଦ୍ଧାଳୁ ସାଧକର ବାସୁଦେବଙ୍କ କଥା ଶ୍ରବଣରେ ବଳବତୀ ରୁଚି ଜନ୍ମେ । ଯାହା ନକରି ସେ ଆଉ ରହିପାରେନା । ଜୀବନ ଦୁର୍ବିସହ ମନେହୁଏ ବିଚରାକୁ । ଉଦାହରଣ ସ୍ୱରୂପ କୁହାଯାଇପାରେ ରାମଲୀଳା ଶେଷର ହନୁମାନଜୀ ସାକେତ ଲୋକକୁ ମଧ୍ୟ ଯିବାକୁ ଅମଙ୍ଗ ହେବା ।

ପ୍ରଶ୍ନ-୩୯ : ହରି କଥା ଶ୍ରବଣରେ ରୁଚି ହେଲେ ସାଧକଙ୍କୁ ପୁଣି କି ଲାଭ ମିଳେ ?

**ଶୃଣ୍ୱତାଂ ସ୍ୱକଥାଃ କୃଷ୍ଣଃ ପୁଣ୍ୟ ଶ୍ରବଣ କୀର୍ତ୍ତନଃ ।**
**ହୃଦି-ଅନ୍ତଃସ୍ଥୋ ହି-ଅଭଦ୍ରାଣି ବିଧୁନୋତି ସୁହୃତ୍ ସତାମ୍ ।୧୭।**

ଉତ୍ତର : ଭଗବାନ ଶ୍ରୀକୃଷ୍ଣଙ୍କ ଯଶ, ଗୁଣ, ଲୀଳା, ନାମ ଶ୍ରବଣ କୀର୍ତ୍ତନ ଆଦି କଲେ ସାଧକର ଅନ୍ତଃକରଣରେ ସେ ପ୍ରକଟ ହୁଅନ୍ତି । ପାପ ବୃକ୍ଷର ଚେର ମୂଳ ସ୍ୱତଃ ଉପୁଡ଼ି ପଡ଼ନ୍ତି । ସଂସାର ଭୋଗ ସଂଗ୍ରହ ବୃତ୍ତି ଦୂରେଇ ଯାଆନ୍ତି । ଭଗବାନ ପରା ସାଧୁ, ସନ୍ଥଙ୍କର ଆତ୍ମା, ସୁହୃଦ୍ ଓ ସର୍ବସ୍ୱ ।

ପ୍ରଶ୍ନ-୪୦ : ସଂସାର ଭୋଗ ବାସନା ରୂପୀ ମନ (ଅଭଦ୍ରେଷୁ) ଦୂର

ହୋଇଗଲେ ସାଧକର କି ଅବସ୍ଥା ହୁଏ ?

**ନଷ୍ଟ ପ୍ରାୟେଷୁ-ଅଭଦ୍ରେଷୁ ନିତ୍ୟଂ ଭାଗବତ୍ ସେବୟା ।**
**ଭଗବତି-ଉତ୍ତମ ଶ୍ଳୋକେ ଭକ୍ତିଃ ଭବତି ନୈଷ୍ଠିକୀ ।୧୮।**

ଉତ୍ତର : ନିତ୍ୟ ଗ୍ରନ୍ଥ ଭାଗବତ ଓ ସନ୍ଥ ଭାଗବତଙ୍କର ସେବା କଲେ ଉତ୍ତମ ହୃଦୟରେ ଉତ୍ତମ ଶ୍ଳୋକ ଭଗବାନ କୃଷ୍ଣଙ୍କ ଠାରେ ଐକାନ୍ତିକ ବା ଅନନ୍ୟ ଭକ୍ତିର (ନୈଷ୍ଠିକୀ) ଉଦ୍ରେକ ହୁଏ । ଅନ୍ୟାନ୍ୟ ଦେବୀ ଦେବତା ଭକ୍ତି ପଛକୁ ରହିଯାଏ । ବିଷ୍ଣୁ-ବୈଷ୍ଣବ ହରି-ହରଙ୍କ ଭିନ୍ନତା ଓ ଅଭିନ୍ନତା ତତ୍ତ୍ୱଜ୍ଞାନ ହୋଇଯାଏ ।

ପ୍ରଶ୍ନ-୪୧ : କୃଷ୍ଣଙ୍କର ଅନନ୍ୟ ଭକ୍ତିରେ ସାଧକର କି ଅବସ୍ଥାନ୍ତର ହୁଏ ?

**ଭିଦ୍ୟତେ ହୃଦୟ ଗ୍ରନ୍ଥିଃ ଛିଦ୍ୟନ୍ତେ ସର୍ବସଂଶୟାଃ ।**
**କ୍ଷୀୟନ୍ତେ ଚ-ଅସ୍ୟ କର୍ମାଣି ଦୃଷ୍ଟ ଏବ-ଆତ୍ମନି-ଈଶ୍ୱରେ ।୨୧।**

ଉତ୍ତର : ବ୍ରହ୍ମଗ୍ରନ୍ଥି (କରିବା ଶେଷ ହୁଏ), ରୁଦ୍ର ଗ୍ରନ୍ଥି (ଜାଣିବା ଶେଷ ହୁଏ) ଓ ବିଷ୍ଣୁ ଗ୍ରନ୍ଥି (ପାଇବା ଶେଷ ହୁଏ) ବା ଗଣ୍ଠି ଛିଣ୍ଡିଯାଏ । ମୁଁ ହରିଭଜନ କଲେ ମୋ ସଂସାର ଚଳିବ କେମିତି ? ମୁଁ ଖାଇବି କ'ଣ ? ପିନ୍ଧିବି କ'ଣ ? ରହିବି କେଉଁଠି ଇତ୍ୟାଦି ବିଷୟରେ ମୁଣ୍ଡ ଖେଳାଇବା ଦରକାର ହୁଏନା । ବିଚରାର ସଞ୍ଚିତ ଓ କ୍ରିୟାମାଣ କର୍ମର ଯୁଗଯୁଗର ଅସରନ୍ତି ପସରା ଖାଲି ହୋଇଯାଏ । କେବଳ ପ୍ରାରବ୍ଧକର୍ମ ଭୋଗ କରିବାକୁ ସେ ଶ୍ରୀକୃଷ୍ଣଙ୍କ ଚରଣ କମଳ ଆଶ୍ରୟରେ ସହର୍ଷ, ସଉତ୍ସାହ ପଡ଼ି ରହେ । ତାର ବୋଧ ଆସିଯାଏ ହୃଦୟ କମଳରେ ରାଧା-କୃଷ୍ଣ ବିଦ୍ୟମାନ ବୋଲି । ଡ଼ର କାହାକୁ, ଭୟ କାହାକୁ, ଠାକୁରେ ଅଛନ୍ତି ଚଉବାହାକୁ ।

ପ୍ରଶ୍ନ-୪୨ : ତେବେ ରଜୋଗୁଣୀ ଲୋକେ କୃଷ୍ଣ ଭିନ୍ନ ଅନ୍ୟ ଦେବୀ, ଦେବତା, ପିତୃଗଣ, ଆଦି ପୂଜନ ଓ ତମୋଗୁଣୀ ଲୋକେ ଭୂତ, ପ୍ରେତ ଆଦି ପୂଜନ କରନ୍ତି କାହିଁକି ?

**ରଜଃ ତମଃ ପ୍ରକୃତୟଃ ସମଶୀଳା ଭଜନ୍ତି ବୈ ।**
**ପିତୃ ଭୂତ ପ୍ରଜେଶ-ଆଦୀନ୍ ଶ୍ରିୟା-ଐଶ୍ୱର୍ଯ୍ୟ ପ୍ରଜା-ଇପ୍ସବଃ ।୨୭।**

ଉତ୍ତର : ଚଟାପଟ୍ ଧନ,ସମ୍ପତ୍ତି,ସନ୍ତାନ ପ୍ରାପ୍ତି, ଶତ୍ରୁକ୍ଷୟ, ଆଧି,ବ୍ୟାଧି, ଆଦିର ଦୂରୀକରଣ ଲକ୍ଷ୍ୟରେ । ଯଦିଚ ଏ ସବୁ ସାଧକକୁ ସଂସାର ବୈରାଗ୍ୟ ପ୍ରାପ୍ତି ପାଇଁ ମାୟା ମହାରାଣୀ ପ୍ରେରଣ କରିଥାନ୍ତି । ସଦ୍‌ଗୁରୁ, ସାଧୁ ସଂସର୍ଗ ବିନା

ଲୋକେ , ରହସ୍ୟକୁ ଦୁର୍ଭାଗ୍ୟବଶତଃ ଭେଦ କରିପାରନ୍ତି ନାହିଁ । ସକାମ ପୂଜାରେ ଜୀବନ କାଟୁଥାନ୍ତି । ତ୍ରିତାପ, ପଞ୍ଚକ୍ଳେଶରେ ସଢ଼ି ତ୍ରାହି ତ୍ରାହି ରଡ଼ି ଛାଡ଼ନ୍ତି ।

ପ୍ରଶ୍ନ-୪୩ : ନିଷ୍କାମ ଭକ୍ତି କ'ଣ ବେଦ ଅଧ୍ୟୟନ, ଯଜ୍ଞ ଅନୁଷ୍ଠାନ, ଅଷ୍ଟାଙ୍ଗ ଯୋଗ ସାଧନ ଓ ଇଷ୍ଟାପୂର୍ତ୍ତ ଆଦି ପରୋପକାର କର୍ମରେ ମଧ୍ୟ ସମ୍ଭବ ହୋଇପାରେ ?

**ବାସୁଦେବ ପରା ବେଦା ବାସୁଦେବ ପରା ମଖାଃ ।**
**ବାସୁଦେବ ପରା ଯୋଗା ବାସୁଦେବ ପରାଃକ୍ରିୟାଃ ।୨୮।**

ଉତ୍ତର : ନିଶ୍ଚୟ ସମ୍ଭବ । ଯଦି ଏ ସବୁର ଉଦ୍ଦେଶ୍ୟ ଦେହ ସୁଖ ଲାଭ, ଭୋଗ ବିଳାସ ପ୍ରାପ୍ତି ନ ହୋଇ ବାସୁଦେବ କୃଷ୍ଣଙ୍କୁ ପ୍ରସନ୍ନ କରିବା ହୋଇଥାଏ ।

ପ୍ରଶ୍ନ-୪୪ : ଜ୍ଞାନ ଅର୍ଜନ, ତପ ଆଚରଣ, ଧର୍ମ ଅନୁଷ୍ଠାନ ଓ ଅନ୍ତିମ ଲକ୍ଷ୍ୟ (ମୁକ୍ତି) ପ୍ରାପ୍ତି କଥା ତେବେ ଶାସ୍ତ୍ରମାନଙ୍କରେ ବର୍ଣ୍ଣିତ ହେଲେ କ'ଣ ପାଇଁ ?

**ବାସୁଦେବ ପରଂ ଜ୍ଞାନଂ ବାସୁଦେବ ପରଂ ତପଃ ।**
**ବାସୁଦେବ ପରୋ ଧର୍ମୋ ବାସୁଦେବ ପରା ଗତିଃ ।୨୯।**

ଉତ୍ତର : ଏମାନେ ସମସ୍ତେ ଅଙ୍ଗୁଳି ନିର୍ଦ୍ଦେଶ କରନ୍ତି ଶ୍ରୀକୃଷ୍ଣଙ୍କୁ ପ୍ରସନ୍ନ କରି (ବାସୁଦେବ ପରା) ତାଙ୍କଠାରେ ଅଚଳା ନିଷ୍କାମ ଭକ୍ତି ପ୍ରାପ୍ତି ଲାଗି । ମଉଜ ମଜ୍‌ଲିସ୍ କରି ମୟୂର ସିଂହାସନ କୋହିନୂର ହୀରା ଖୋଜିବା ପାଇଁ ନୁହେଁ ।

ପ୍ରଶ୍ନ-୪୫ : ଭଗବାନ (ବିଶ୍ୱାତ୍ମା) ସ୍ୱୟଂ ସତ୍ତ୍ୱ, ରଜ,ତମ ଗୁଣରୁ ଭିନ୍ନ ଅଲୌକିକ ଅପ୍ରାକୃତ, ଦିବ୍ୟ ପୁଣି ଏକ । ତାଙ୍କର ବିସ୍ତାର ହୋଇ ସତ୍ତ୍ୱଗୁଣୀ, ରଜୋଗୁଣୀ ଓ ତମୋଗୁଣୀ ଦେବତା, ମାନବ, ପଶୁପକ୍ଷୀ, କୀଟ, ପତଙ୍ଗ, ତରୁ, ତୃଣ, ଗୁଳ୍ମ ସୃଷ୍ଟି ହୁଅନ୍ତି କିପରି ?

**ଯଥା ହି-ଅବହିତୋ ବହ୍ନିଃ ଦାରୁଷ୍ୱ-ଏକଃ ସ୍ୱଯୋନିଷୁ ।**
**ନାନା-ଇବ ଭାତି ବିଶ୍ୱାତ୍ମା ଭୂତେଷୁ ଚ ତଥା ପୁମାନ୍ ।୩୨।**

ଉତ୍ତର : ଅଗ୍ନି ତାର ଉତ୍ତାପ, ଆଲୋକ ଇତ୍ୟାଦି ଲୁଚାଇ କାଠ ମଧ୍ୟରେ ଯେପରି ଭାବରେ ଅବସ୍ଥାନ କରିଥାଏ । ତତ୍ତ୍ୱତଃ ଅଗ୍ନି ଏକ ଶକ୍ତି ହେଲେ ମଧ୍ୟ ଛୋଟ କାଠ ଖଣ୍ଡିକରେ ଛୋଟ ଭଳି ଦିଶେ । ବଡ଼ କାଠ ଖଣ୍ଡିକରେ ବଡ଼ ପୁଣି ବଙ୍କା ଟଙ୍କା କାଠରେ ବଙ୍କା ଟଙ୍କା ରୂପ ପରିଗ୍ରହ କରିଥାଏ । ଠିକ୍ ସେହିପରି ଦୃଶ୍ୟମାନ ସୃଷ୍ଟିରେ ଛତ୍ରେ ଛତ୍ରେ ପତ୍ରେ ପତ୍ରେ କେବଳ ଏକ ପରମାତ୍ମା ହିଁ

ବିଦ୍ୟମାନ । ଆମ ଦୃଷ୍ଟି ଦିବ୍ୟ ହେଲେ ସୃଷ୍ଟି ଆମକୁ ଦିବ୍ୟ ଦିଶିବ ।

ପ୍ରଶ୍ନ-୪୬ : ଭଗବାନ କାହିଁକି ଏତେ ପ୍ରକାରର ଭିନ୍ନ ଭିନ୍ନ ଜୀବ ଯୋନି ନିର୍ମାଣ କରନ୍ତି ?

**ଅସୌ ଗୁଣମୟୈଃ ଭାବୈଃ ଭୂତ ସୂକ୍ଷ୍ମ-ଇନ୍ଦ୍ରିୟ-ଆତ୍ମଭିଃ ।**
**ସ୍ୱନିର୍ମିତେଷୁ ନିବିଷ୍ଟୋ ଭୁଙ୍କ୍ତେ ଭୂତେଷୁ ତଦ୍‌ଗୁଣାନ୍ ।୩୩।**

ଉତ୍ତର : ଜୀବ ଭାବରେ ସେ ସୂକ୍ଷ୍ମ ଇନ୍ଦ୍ରିୟ, ମନ ବୁଦ୍ଧିଦ୍ୱାରା ଭୋକ୍ତା ବ୍ରହ୍ମ ରୂପ, ରସ, ଗନ୍ଧ, ଶବ୍ଦ-ସ୍ପର୍ଶ ଗୁଣ ଥିବା ପଞ୍ଚ ଭୂତ ରୂପେ ଭୋଗ୍ୟ ବ୍ରହ୍ମ ପୁଣି ଆତ୍ମା ରୂପରେ ସେ ସ୍ୱୟଂ ପ୍ରେରକ ବ୍ରହ୍ମ । ସେ ହିଁ ତିନି ତତ୍ତ୍ୱଙ୍କର ସମାହାର ବା ସମନ୍ୱୟ । ସେ ହିଁ ସ୍ରଷ୍ଟା ଓ ସୃଷ୍ଟି ଉଭୟ । ସେ ହିଁ ଅଭିନ୍ନ ନିମିତ୍ତ-ଉପାଦାନ କାରଣ ।

ପ୍ରଶ୍ନ-୪୭ : ସେ ସ୍ୱୟଂ ଭୋକ୍ତା ହୋଇଥିବାରୁ ଦେବତା (ବ୍ରହ୍ମା, ବିଷ୍ଣୁ, ଶଙ୍କର) ପଶୁ (ନୃସିଂହ, ବରାହ) ଜଳଚର (ମୀନ, କଚ୍ଛପ) କ୍ଷୁଦ୍ରାକୃତି ମାନବ (ବାମନ) ଆଦି ରୂପ ଧରି ଅଜନ୍ମା ହୋଇ ମଧ୍ୟ ଜନ୍ମ ଗ୍ରହଣ କରନ୍ତି କାହିଁକି ?

**ଭାବୟତି-ଏଷ ସତ୍ତ୍ୱେନ ଲୋକାନ୍ ବୈ ଲୋକଭାବନଃ ।**
**ଲୀଳା-ଅବତାର-ଅନୁରତୋ ଦେବ ତୀର୍ଯଙ୍ ନର-ଆଦିଷୁ ।୩୪।**

ଉତ୍ତର : ଦୁଷ୍ଟ ଦଳନ, ସନ୍ଥ ପାଳନ, ଧର୍ମ ସଂସ୍ଥାପନ କରି ଅଣ ଗୁଳାରେ ଚାଲୁଥିବା ସୃଷ୍ଟିର ଜୀବମାନଙ୍କୁ ଗୁଳାରେ ଚଲାଇ ସେମାନଙ୍କୁ ପୋଷଣ କୃପା କରିବାକୁ । ଆଦର୍ଶ ଜୀବନ ଯାପନ ସ୍ୱଧର୍ମ ପାଳନ ଆଦି ସତ୍ ଆଚରଣ (ମନୁ, ଋଷଭ, ପୃଥୁ, କପିଳ, ଶ୍ରୀରାମ, ଶ୍ରୀକୃଷ୍ଣ ରୂପରେ) ଶିକ୍ଷା ଦେବାକୁ । ଟିକିଏ ଲଗାମ ଛଡ଼ା ହେଲେ ଜୀବ ଉତ୍ପାତ କରି ବସେ । ପିତାମାତାଙ୍କ ସାମାନ୍ୟ ଅଣହେଳାରେ ସନ୍ତାନ ଚରସ, ଅଫିମ, ମଦ ଖାଇ ଉତ୍ପାତ ହେଲାଭଳି ଅବସ୍ଥାକୁ ସେ ସହ୍ୟ କରିବେ କିପରି ? ସେ ପରା ଆମର ପିତା, ମାତା, ଗୁରୁ, ବନ୍ଧୁ ଓ ପରମ ହିତୈଷୀ!!

# ଅଥ ୩ୟ ଅଧ୍ୟାୟଃ

## (ସକଳ ଅବତାରମାନଙ୍କର ଉତ୍ସ ସେଇ ଏକ ନାରାୟଣ)

### ସୂତ ଉବାଚ

ପ୍ରଶ୍ନ-୪୮ : ଏଇ ବର୍ତ୍ତମାନର ଦୃଶ୍ୟମାନ ସୃଷ୍ଟି ଯେତେବେଳେ ସ୍ଥୂଳ ରୂପରେ ନଥିଲା (ଆଦୌ) ଭଗବାନ୍ ନାରାୟଣ କି କି ଉପାଦାନରେ ସୃଷ୍ଟିର ଆଦିପୁରୁଷ ଆଦ୍ୟ ଅବତାର ବା ବିରାଟ ରୂପ ପରିଗ୍ରହ କଲେ (ଜଗୃହେ) ?

**ଜଗୃହେ ପୌରୁଷଂ ରୂପଂ ଭଗବାନ୍ ମହତ୍-ଆଦିଭିଃ ।**
**ସମ୍ଭୂତଂ ଷୋଡ଼ଶ କଳଂ ଆଦୌ ଲୋକ ସିସୃକ୍ଷୟା ।୧।**

ଉତ୍ତର : ସଂସାର ସୃଷ୍ଟି ଇଚ୍ଛାକରି (ଲୋକ ସିସୃକ୍ଷୟା) ମାୟାଙ୍କର କାଳଶକ୍ତି ଦ୍ୱାରା ମହତତ୍ତ୍ୱକୁ ଈକ୍ଷଣ କରି କ୍ଷୋଭିତ କଲେ । ଫଳରେ କାରଣ ଆକାରରେ, ଅଦୃଶ୍ୟ ଭାବରେ ସମଷ୍ଟି ପିଣ୍ଡରେ ଥିବା ୫ କର୍ମ ଇନ୍ଦ୍ରିୟ, ୫ ଜ୍ଞାନ ଇନ୍ଦ୍ରିୟ, ମନ ସହିତ ୫ ମହାଭୂତ ଏଇ ଷୋଳ ଉପାଦାନଙ୍କ ମଧ୍ୟରେ ସମନ୍ୱୟ ସ୍ଥାପିତ ହେଲା ।

ପ୍ରଶ୍ନ-୪୯ : କାରଣ ଜଳରେ (ଅୟସି) ଶାୟିତ ବିରାଟ ପୁରୁଷ ଯେତେବେଳେ ଯୋଗନିଦ୍ରାକୁ ବିସ୍ତାର (ବିତନ୍ୱତଃ) କଲେ ସେତେବେଳେ ପ୍ରଥମେ କିଏ ପ୍ରକଟ ହେଲେ ?

**ଯସ୍ୟ-ଅମ୍ଭସି ଶୟାନସ୍ୟ ଯୋଗନିଦ୍ରାଂ ବିତନ୍ୱତଃ ।**
**ନାଭି ହ୍ରଦ-ଅମ୍ବୁଜାତ୍ ଆସୀତ୍ ବ୍ରହ୍ମା ବିଶ୍ୱସୃଜାଂ ପତିଃ ।୨।**

ଉତ୍ତର : ତାଙ୍କ ନାଭି କମଳରୁ ଦୃଶ୍ୟମାନ ହେଲେ ଦକ୍ଷ, ରୁଚି ଆଦି ସକଳ ପ୍ରଜାପତି (ସନ୍ତାନ ବିସ୍ତାର କାରକ) ମାନଙ୍କର ପିତା ଚତୁର୍ମୁଖୀ ବ୍ରହ୍ମାଜୀ । ମହାତ୍ମାମାନେ ଯାହାଙ୍କୁ ଲୋକ ପିତାମହ କୁହନ୍ତି ।

ପ୍ରଶ୍ନ-୫୦ : ସୃଷ୍ଟିର ଭୂଃ, ଭୁବଃ ଆଦି ସାତ ସ୍ୱର୍ଗ ଓ ତଳ ଅତଳ, ବିତଳ ଆଦି ସାତ ପାତାଳ କେଉଁଠୁ ଆସିଲେ ?

**ଯସ୍ୟ-ଅବୟବ ସଂସ୍ଥାନୈଃ କଳ୍ପିତୋ ଲୋକ ବିସ୍ତରଃ ।**
**ତତ୍ ବୈ ଭଗବତୋ ରୂପଂ ବିଶୁଦ୍ଧଂ ସତ୍ତ୍ୱଂ-ଉର୍ଜିତମ୍ ।୩।**

ଉତ୍ତର : ବିରାଟ ପୁରୁଷଙ୍କ ବିଶୁଦ୍ଧ ସତ୍ତ୍ୱଗୁଣୀ ଶକ୍ତି ଯୁକ୍ତ ଅଙ୍ଗ ପ୍ରତ୍ୟଙ୍ଗରୁ ।

ପ୍ରଶ୍ନ-୫୧ : ଦେବ, ତୀର୍ଯ୍ୟଙ୍ ନର ଆକାର ରୂପ ଧରି ଅଂଶ ଭାବରେ ପୁଣି କେତେବେଳେ ଅଂଶର ଅଂଶ କଳା ଭାବରେ ସେ ଅବତାର ଗଣ କେଉଁଠାରୁ ପ୍ରକଟ ହୁଅନ୍ତି ?

**ଏତତ୍ ନାନା-ଅବତାରାଣାଂ ନିଧାନଂ ବୀଜଂ-ଅବ୍ୟୟମ୍ ।**
**ଯସ୍ୟ-ଅଂଶ-ଅଂଶେନ ସୃଜ୍ୟନ୍ତେ ଦେବ ତୀର୍ଯ୍ୟଙ୍ ନର-ଆଦୟଃ ।୫।**

ଉତ୍ତର : ଏହି ବିରାଟ ରୂପୀ ନାରାୟଣ ହିଁ ସକଳ ସ୍ୱାଂଶ ଓ ବିଭିନ୍ନାଂଶ ଅବତାରମାନଙ୍କର ଉତ୍ପତ୍ତିର ମୂଳ ଉତ୍ସ । ସୂର୍ଯ୍ୟଦେବ ଯେପରି କିରଣମାଳାଙ୍କର ଉତ୍ସ ଏବଂ ସମୁଦ୍ର ଜଳର ଉତ୍ସ ।

ପ୍ରଶ୍ନ-୫୨ : ମହାମାୟା ଶକ୍ତିଙ୍କର ଆବିର୍ଭାବ ପୂର୍ବରୁ କୌମାର ସର୍ଗ (ସୃଷ୍ଟିରେ) ଭଗବାନ (ଦେବଃ) ସନକ, ସନାତନ, ସନନ୍ଦନ ଓ ସନତ୍ କୁମାର ୪ ବ୍ରାହ୍ମଣ ବାଳକ ସର୍ବପ୍ରଥମେ ଅବତାର ଗ୍ରହଣ କରି କି ଶିକ୍ଷା ଦେଲେ ସୃଷ୍ଟିରେ ?

**ସଃ ଏବ ପ୍ରଥମଂ ଦେବଃ କୌମାରଂ ସର୍ଗଂ ଆଶ୍ରିତଃ ।**
**ଚଚାର ଦୁଃଚରଂ ବ୍ରହ୍ମା ବ୍ରହ୍ମଚର୍ଯ୍ୟଂ ଅଖଣ୍ଡିତମ୍ ।୬।**

ଉତ୍ତର : ସେଇ ୪ କୁମାର ଅତ୍ୟନ୍ତ କଠିନ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ ଦକ୍ଷ, ଭୃଗୁ,ରୁଚି,ଆଦି ପ୍ରଜାପତିମାନଙ୍କୁ ଶିଖାଇଥିଲେ ସୃଷ୍ଟିର ଆଦିକାଳରେ ।

ପ୍ରଶ୍ନ-୫୩ : ୨ୟ ଅବତାରରେ ଯଜ୍ଞ ବରାହ ରୂପରେ ଭଗବାନ କି କି ଲୀଳା ସବୁ କଲେ ?

**ଦ୍ୱିତୀୟଂ ତୁ ଭବାୟ-ଅସ୍ୟ ରସାତଳ ଗତାଂ ମହୀମ୍ ।**
**ଉଦ୍ଧରିଷ୍ୟନ୍ ଉପାଦତ୍ତ ଯଜ୍ଞେଶଃ ସୌକରଂ ବପୁଃ ।୭।**

ଉତ୍ତର : ଲୋକ କଲ୍ୟାଣ ପାଇଁ (ଭବାୟ-ଅସ୍ୟ) ପୂର୍ବେ ହୋଇଥିବା ପ୍ରଳୟ ବେଳେ କାରଣ ଜଳରେ ଅଦୃଶ୍ୟ ଏଇ ପୃଥିବୀକୁ ରସାତଳରୁ ଉଦ୍ଧାର କରି ସ୍ୱକକ୍ଷରେ ପିଲାଟିଏ ନଟୁ ଖେଳିବା ପରି ସ୍ଥାପନ କଲେ ।

ପ୍ରଶ୍ନ-୫୪ : ୩ୟ ଅବତାରରେ ଦେବର୍ଷି ନାରଦ ରୂପରେ ପ୍ରକଟ ହୋଇ

ତନ୍ତ୍ର ପୂଜା ପ୍ରଧାନ ଭାଗବତ ଧର୍ମ ପ୍ରଚାର କରିବାକୁ ଯାଇ ନାରଦ ପାଞ୍ଚ ରାତ୍ର,ନାରଦ ଭକ୍ତି ଦର୍ଶନ, ନାରଦ ପୁରାଣ, ନାରଦ ପରିବ୍ରାଜକ ଉପନିଷଦ ଆଦି କାହିଁକି ପ୍ରଣୟନ କଲେ ?

**ତୃତୀୟଂ ଋଷିସର୍ଗଂ ବୈ ଦେବ-ଋଷିତ୍ୱଂ-ଉପେତ୍ୟ ସଃ ।**
**ତନ୍ତ୍ରଂ ସାତ୍ୱତଂ-ଆଚଷ୍ଟ ନୈଷ୍କର୍ମ୍ୟଂ କର୍ମଣାଂ ଯତଃ ।୮।**

ଉତ୍ତର : ଲୋକେ ଦେହ ସୁଖ ସଂସାର ସୁଖ ଆଶାରେ ସକାମ କର୍ମ କରି ଜନ୍ମ-ମରଣ ଚକ୍ରରେ ଘୂରିବେ । ସେଥିରୁ ତାଙ୍କୁ ଉଦ୍ଧାର କରିବାକୁ ନୈଷ୍କର୍ମ୍ୟ କର୍ମ କୌଶଳ ଶିକ୍ଷା ଦେବାକୁ । କର୍ମ ହେବ କିନ୍ତୁ ବନ୍ଧନ ହେବନି । ଏଇତ ଗୀତାଙ୍କର ଯୋଗଃ କର୍ମସୁ କୌଶଳମ୍ ।

ପ୍ରଶ୍ନ-୫୫ : ନର-ନାରାୟଣ, କପିଳ, ଦତ୍ତାତ୍ରେୟ, ଯଜ୍ଞ,ଋଷଭଦେବ, ପୃଥୁ,ମତ୍ସ୍ୟ, କଚ୍ଛପ, ଧନ୍ୱନ୍ତରୀ, ମୋହିନୀ, ନରସିଂହ, ବାମନ, ପର୍ଶୁରାମ, ବ୍ୟାସ, ଶ୍ରୀରାମ, ବଳରାମ, ଶ୍ରୀକୃଷ୍ଣ ଏହିପରି କୋଡ଼ିଏଟି ଅବତାର ହୋଇସାରିଥିବା ନାମ କହି ପୁଣି କେଉଁ କେଉଁ ଅବତାର ଭବିଷ୍ୟତରେ ହେବେ ବୋଲି କହିଲେ ?

**ତତଃ କଲୌ ସଂପ୍ରବୃତ୍ତେ ସମ୍ମୋହାୟ ସୁରଦ୍ୱିଷାମ୍ ।**
**ବୁଦ୍ଧୋ ନାମ୍ନା-ଅଞ୍ଜନ ସୁତଃ କୀକଟେଷୁ ଭବିଷ୍ୟତି ।୨୪।**

ଉତ୍ତର : କଳିଯୁଗରେ ଲୋକେ ପରମେଶ୍ୱରଙ୍କୁ ତୃପ୍ତି କରିବାକୁ ଯଜ୍ଞ ନକରି ପଶୁପକ୍ଷୀ ବଳିରେ ମାତିବେ । ସେମାନଙ୍କ ଦେହ ଖାଇ ହିଂସ୍ର ହୋଇ, ଧର୍ମ ପଥରୁ ବିଚ୍ୟୁତ ହେବେ । ଦେବୀ ଦେବତାଙ୍କ ପୂଜାପାଠ ବିରୋଧି (ସୁର ଦ୍ୱିଷାମ୍) ହେବେ । ପବିତ୍ର ବେଦ ଧର୍ମର ପତନ ହେବ । ଆଧୁନିକ ବିହାର ନିକଟସ୍ଥ ନେପାଳର କପିଳବାସ୍ତୁ/ କୀକଟ ରାଜ୍ୟରେ ତାଙ୍କର ବୁଦ୍ଧ ଅବତାର ହେବ । ସେ ହେବେ ଜୀବେ ଦୟା କରୁଣାର ପ୍ରତିମୂର୍ତ୍ତି ।

ପ୍ରଶ୍ନ-୫୬ : କଳିଯୁଗ ଶେଷରେ ସତ୍ୟଯୁଗ ଆରମ୍ଭ ପୂର୍ବ ଯୁଗ ସଂନ୍ଧ୍ୟାବେଳେ ପୁଣି କେଉଁ ଯୁଗାବତାର ହେବ ଭଗବାନଙ୍କର ?

**ଅଥ-ଅସୌ ଯୁଗସଂଧାୟାଂ ଦସ୍ୟୁ ପ୍ରାୟେଷୁ ରାଜସୁ ।**
**ଜନିତା ବିଷ୍ଣୁ ଯଶସୋ ନାମ୍ନା କଲ୍କିଃ ଜଗତ୍‌ପତିଃ ।୨୫।**

ଉତ୍ତର : ରାଜାମାନେ ସନ୍ତାନ ଦୃଷ୍ଟିରେ ପ୍ରଜାପାଳନ କରିବେନି । ଦସ୍ୟୁ

ପ୍ରାୟ ପ୍ରଜାମାନଙ୍କର ଧନକୁ ଟିକସ ଆକାରରେ ଜବରଦସ୍ତ କର ବସାଇ ଲୁଟିନେବେ । ନିଜେ ରାଜନେତା ବୋଲାଇ ବିଳାସ ବ୍ୟସନରେ ମାତିବେ । ଜଣେ ବିଷ୍ଣୁ ଭକ୍ତ ବିଶ୍ୱାବସୁ କୁଟୀରରେ ଦାରୁବ୍ରହ୍ମ ରୂପରେ ବିଷ୍ଣୁଙ୍କର ଅବତାର ହେବ । ନାମ ହେବ ଜଗତ୍‌ପତି, ଜଗତ୍‌ନାଥ ବା ରାଧାକାନ୍ତ ପୁଣି କଲ୍‌କୀ ।

ପ୍ରଶ୍ନ-୫୭: ଭଗବାନଙ୍କ ଇମିତି କେତେ ଅବତାର ହୋଇପାରିବ ?

**ଅବତାର ହି-ଅସଂଖ୍ୟେୟା ହରେଃ ସତ୍ତ୍ୱନିଧେଃ ଦ୍ୱିଜାଃ ।**
**ଯଥା ବିଦାସିନଃ କୁଲ୍ୟାଃ ସରସଃ ସ୍ୟୁଃ ସହସ୍ରଶଃ ।୨୬।**

ଉତ୍ତର : ହେ ଶୌନକାଦି ଋଷିଗଣ, ଶହେ କି ହଜାରେ ନୁହେଁ ଅସଂଖ୍ୟ ଅବତାର ହୋଇପାରିବେ ସେ ଠିକ୍ ଯେମିତି ଗୋଟିଏ ବିଶାଳ ସରୋବର ଜଳରୁ ଅଗଣିତ ଛୋଟ ଛୋଟ ନଦୀ,ନାଳ ବାହାରି ପାରନ୍ତି ।

ପ୍ରଶ୍ନ-୫୮ : ଏ ଯୁଗ ଅବତାର କିପରି ଜୀବ ଅନ୍ତଃକରଣରେ ନିଜର କଳା ସ୍ଥାପନ କରି କାହା କାହା ଦ୍ୱାରା ଗୋଟିଏ ଯୁଗର ସୃଷ୍ଟି ପରିଚାଳନା କରନ୍ତି ?

**ଋଷୟୋ ମନବୋ ଦେବାଃ ମନୁପୁତ୍ରା ମହା-ଓଜସଃ ।**
**କଳାଃ ସର୍ବେ ହରେଃ ଏବ ସପ୍ରଜାପତୟଃ ସ୍ମୃତାଃ ।୨୭।**

ଉତ୍ତର : କ୍ରତୁ, ପୁଲହ, ପୁଲସ୍ତ୍ୟ ଆଦି ସପ୍ତଋଷି, ସ୍ୱାୟମ୍ଭୁବ ସ୍ୱାରୋଚିଷ ଆଦି ଚତୁର୍ଦ୍ଦଶ ମନୁ, ଇନ୍ଦ୍ର, ଅଗ୍ନି, ବରୁଣ, କୁବେର ଆଦି ୩୩ କୋଟି ଦେବୀ ଦେବତା, ଉତ୍ତାନ ପାଦ, ଧ୍ରୁବ ଆଦି ମନୁପୁତ୍ର, ପୌତ୍ର, ପ୍ରପୌତ୍ରଗଣ ଓ ସାଧୁ,ସନ୍ଥ ବୈଷ୍ଣବ (ମହା-ଓଜସଃ) ଆଦିଙ୍କ ଦେହରେ ବିଷ୍ଣୁ କଳା/ତେଜ/ଶକ୍ତି ସ୍ଥାପନ କରି । ଯୁଗ ପରେ ଯୁଗ ହୋଇ ଏ କାଳଚକ୍ର ଗଡ଼ି ଚାଲିବ ।

ପ୍ରଶ୍ନ-୫୯ : ଏମାନେ ସମସ୍ତେ ବିଷ୍ଣୁଙ୍କର ଅଂଶ କିମ୍ବା ଅଂଶର ଅଂଶ, ଅନ୍ୟନାମରେ ସ୍ୱାଂଶ ବା ବିଭିନ୍ନାଂଶ ଅବତାର କିନ୍ତୁ ଶ୍ରୀକୃଷ୍ଣ କେବଳ ସ୍ୱୟଂ ଷୋଳ କଳା ଅବତାରୀ ପୁରୁଷ, ପୁରୁଷୋତ୍ତମ ବା ପରମସତ୍ୟ । ଏପରି ସୁନିୟନ୍ତ୍ରିତ ସୁବ୍ୟବସ୍ଥିତ ଧର୍ମ ଶାସ୍ତ୍ର ଶୃଙ୍ଖଳିତ ସୃଷ୍ଟିରେ ଭଗବାନଙ୍କର ଯୁଗାବତାର ହୁଏ କାହିଁକି?

**ଏତେ ଚ-ଅଂଶ କଳାଃ ପୁଂସଃ କୃଷ୍ଣଃ ତୁ ଭଗବାନ୍ ସ୍ୱୟମ୍ ।**
**ଇନ୍ଦ୍ର-ଅରି ବ୍ୟାକୁଳଂ ଲୋକଂ ମୃଡ଼ୟନ୍ତି ଯୁଗେ ଯୁଗେ ।୨୮।**

ଉତ୍ତର : ଯଦ୍ୟପି ଯୁଗ ବା କାଳ ତ ଏକ ନିତ୍ୟ ପିରବର୍ତ୍ତନଶୀଳ ପ୍ରକ୍ରିୟା ।

ସୃଷ୍ଟିରେ କାଳ ପ୍ରଭାବରେ ସତ୍ତ୍ୱ, ରଜ, ତମୋ, ଗୁଣମାନଙ୍କର ହ୍ରାସ ବୃଦ୍ଧି ହେଉଥାଏ ।

ବେଳେବେଳେ ରଜୋ ତମୋ ଗୁଣଙ୍କର ମିଳିତ ଆକ୍ରମଣରେ ସତ୍ତ୍ୱଗୁଣ ମଧ୍ୟ କବଳିତ ହୁଏ । ମାନବମାନେ ଭୋଗମୁଖୀ ହେଲେ ଦେବତାମାନେ ଯଜ୍ଞଭାଗ ନପାଇ ତ୍ରାହି ତ୍ରାହି ରଡ଼ି ଛାଡ଼ନ୍ତି । ଭଗବାନ ରକ୍ଷା କରିବାକୁ କେତେବେଳେ ବୈକୁଣ୍ଠ, କେତେବେଳେ ମହାବୈକୁଣ୍ଠ ଓ ପୁଣି କେବେ କେବେ ଗୋଲୋକ ଧାମରୁ ମଧ୍ୟ ଧାଇଁ ଆସନ୍ତି ତାଙ୍କ ଭକ୍ତମାନଙ୍କୁ ରକ୍ଷା କରିବାକୁ (ମୃଡୟନ୍ତି) ।

ପ୍ରଶ୍ନ-୬୦ : ଭଗବାନଙ୍କର, ଅବତାର ଲୀଳା କଥାକୁ କାହିଁକି ରହସ୍ୟମୟ ଗୋପନୀୟ କୁହାଯାଏ ?

**ଜନ୍ମଗୁହ୍ୟଂ ଭଗବତୋ ଯଃ ଏତତ୍ ପ୍ରୟତୋ ନରଃ ।**
**ସାୟଂ ପ୍ରାତଃ ଗୃଣନ୍ ଭକ୍ତ୍ୟା ଦୁଃଖ ଗ୍ରାମାତ୍ ବିମୁଚ୍ୟତେ ।୨୯।**

ଉତ୍ତର : ପୂର୍ବ ଜନ୍ମ ଅର୍ଜିତ ପୁଣ୍ୟ ଫଳରୁ କୌଣସି ଭାଗ୍ୟଶାଳୀ ସାଧକ ଯତ୍ନ ସହକାରେ ଭକ୍ତି ପୂର୍ବକ ଏହାକୁ ସକାଳେ ସଂଧ୍ୟାରେ ପଠନ, ପାଠନ କରିପାରିଲେ ସକଳ ଦୁଃଖ ଶୋକ ମୋହରୁ ସଂପୂର୍ଣ୍ଣ ମୁକ୍ତ ହୋଇପାରେ ବୋଲି । ଅନ୍ୟମାନଙ୍କ ପାଇଁ ଏ ସହଜ ସରଳ ମାର୍ଗ ମଧ୍ୟ ସର୍ବଥା ବନ୍ଦ । ସେମାନେ ଜ୍ଞାନ, ପ୍ରଂଶସା, ଫୁଲ ମାଳ, ସିଦ୍ଧି ପାଗଳ । ଭଗବାନ ପାଗଳ ହେବାରେ ସେମାନଙ୍କ ଅରୁଚି ହିଁ ସେମାନଙ୍କ ପାଇଁ ଭକ୍ତିମାର୍ଗରେ ପ୍ରଗତିର ପ୍ରଧାନ ପ୍ରତିବନ୍ଧକ ।

ପ୍ରଶ୍ନ-୬୧ : ବିନା ଭକ୍ତିରେ ମୁକ୍ତିକାମୀ ଜ୍ଞାନୀ, ସିଦ୍ଧିକାମୀ ଯୋଗୀ ସ୍ୱର୍ଗକାମୀ କର୍ମୀ ଏ ଅବତାର ରହସ୍ୟକୁ କାହିଁକି ବୁଝିପାରେନା ବିଚରା ?

**ଏତତ୍ ରୂପଂ ଭଗବତୋ ହି-ଅରୂପସ୍ୟ ଚିତ୍-ଆତ୍ମନଃ ।**
**ମାୟା ଗୁଣୈଃ ବିରଚିତଂ ମହତ୍ ଆଦିଭିଃ ଆତ୍ମନି ।୩୦।**

ଉତ୍ତର : ସେ ଅଜନ୍ମା ହୋଇ ମଧ୍ୟ ଭକ୍ତକୁ ଆନନ୍ଦ ଦେବାକୁ ପ୍ରକଟ ହୁଅନ୍ତି । ଜ୍ଞାନୀ ପାଇଁ ଅରୂପ ହୋଇ ମଧ୍ୟ ଭକ୍ତ ଅନୁରୋଧରେ ରୂପ ପରିଗ୍ରହ କରନ୍ତି । କିନ୍ତୁ ତାଙ୍କ ଦେହ ମନ, ବୁଦ୍ଧି ଆତ୍ମା ସବୁ ତ୍ରିଗୁଣ ରହିତ ସତ୍-ଚିତ୍-ଆନନ୍ଦମୟ ଅପ୍ରାକୃତ,ଦିବ୍ୟ । ଅଭକ୍ତି ସାଧକ (ଜ୍ଞାନୀ, ଯୋଗୀ କର୍ମୀ) ମାୟା ଆବୁଆଳରେ ରହିଯାଉଥିବାରୁ ସେ ଭଗବାନଙ୍କ ରୂପ, ବିଗ୍ରହ, ଲୀଳାକୁ ନିଜ ମାୟିକ ମନ, ବୁଦ୍ଧିରେ ମାପି ହଇରାଣ ହୁଏ ବିଚରା ।

ପ୍ରଶ୍ନ-୬୨ : ଏହି ଅବତାର କଥାଟି ଦୁର୍ବୋଧ ମନେ ହେଉଛି । ବୁଝିବା ପାଇଁ କିଛି ସରଳ ଉଦାହରଣଟିଏ ଅଛି କି ?

**ଯଥା ନଭସି ମେଘ-ଓଘୋ ରେଣୁଃ ବା ପାର୍ଥିବୋଽନିଳେ ।**
**ଏବଂ ଦ୍ରଷ୍ଟରି ଦୃଶ୍ୟତ୍ୱଂ ଆରୋପିତଂ ଅବୁଦ୍ଧିଭିଃ ।୩୧।**

ଉତ୍ତର : ହଁ ଅଛି । ଠିକ୍ ଯେମିତି ଆକାଶ (ନଭସି) ରଙ୍ଗ ହୀନ । ଅଦୃଶ୍ୟ ପବନ (ଅନିଳ) ଧୂଳି କଣା (ରେଣୁଃ) ଉଡ଼ାଇ ନେଲେ କିଛି ସମୟ ପାଇଁ ସେ ମେଘ ସମୂହ (ଓଘୋ) ରୂପରେ ଧୂଆଁଳିଆ, ମାଟିଆ, ଲାଳ, ଧୂଷର ଆଦି ରଙ୍ଗ ଦିଶେ । କେହି କେହି ଆକାଶକୁ ନୀଳ, ଧୂଷର, ଲାଲ ଆକାଶ କହନ୍ତି (ଆରୋପିତଂ) । ସେମାନେ ନିଶ୍ଚୟ ନିର୍ବୁଦ୍ଧିଆ (ଅବୁଦ୍ଧିଭିଃ) । ଅତଏବ ଆକାଶ ଭିନ୍ନ ଭିନ୍ନ ଅନେକ ରଙ୍ଗ ଧରୁଥିଲେ ମଧ୍ୟ ତାର ନିଜ ରଙ୍ଗ ବଜାୟ ରଖିବାରେ କୌଣସି ହାନୀ ହୁଏନା ।

ପ୍ରଶ୍ନ-୬୩ : ଅବତାର ରହସ୍ୟକୁ ବେଦରେ ଖୋଲି ଖାଲି ବର୍ଣ୍ଣନା କରାଯାଇଛି କି ?

**ଏବଂ ଜନ୍ମାନି କର୍ମାଣି ହି-ଅକର୍ତ୍ତୁଃ ଅଜନସ୍ୟ ଚ ।**
**ବର୍ଣ୍ଣୟନ୍ତି ସ୍ମ କବୟୋ ବେଦଗୁହ୍ୟାନି ହୃତ୍‌ପତେଃ ।୩୫।**

ଉତ୍ତର : ନା । ଗୁପ୍ତ ରଖାଯାଇଛି । ପ୍ରତିଟି ଜୀବର ହୃଦୟେଶ୍ୱର (ହୃତ୍ ପତେଃ) ଙ୍କୁ ବେଦ୍ ବିତ୍ ଜ୍ଞାନୀମାନେ (କବୟୋ) କୁହନ୍ତି ସେ ଅଜନ୍ମା, କର୍ମଫଳ ମୁକ୍ତ, ଅକର୍ତ୍ତା ଅରୂପ, ଅନାମ । ଅଥଚ ଭକ୍ତ ପାଇଁ ସେ ସର୍ବରୂପ, ସର୍ବନାମ ଓ ସର୍ବୋଚ୍ଚ କର୍ତ୍ତା ମଧ୍ୟ ।

ପ୍ରଶ୍ନ-୬୪: ୪ ବେଦ, ବେଦାନ୍ତ ଆଦି ଷଟ୍ ଦର୍ଶନ ଶାସ୍ତ୍ର, ଦୁଇ ଇତିହାସ (ମହାଭାରତ,ରାମାୟଣ) ଥାଉ ଥାଉ ବେଦବ୍ୟାସଜୀ (ଭଗବାନ ଋଷିଃ) ଏହି ଶ୍ରୀମଦ୍ଭାଗବତ ନାମକ ଗ୍ରନ୍ଥକୁ କାହିଁକି ନିର୍ମାଣ କଲେ (ଚକାର) ?

**ଇଦଂ ଭାଗବତଂ ନାମ ପୁରାଣଂ ବ୍ରହ୍ମ ସମ୍ମିତମ୍ ।**
**ଉତ୍ତମ ଶ୍ଲୋକ ଚରିତଂ ଚକାର ଭଗବାନ୍ ଋଷିଃ ।୪୦।**

ଉତ୍ତର : ଭଗବାନଙ୍କ (ଉତ୍ତମ ଶ୍ଲୋକ ଚରିତଂ) ଜନ୍ମ, କର୍ମ, ଅବତାର ଲୀଳା କଥା ଖୋଲି କହିବାକୁ । ନଚେତ ଜଣେ ବେଦ ଅନଧିକାରୀ ଭକ୍ତ କଳିଯୁଗରେ

ଏ ବ୍ରହ୍ମଜ୍ଞାନକୁ ବୁଝନ୍ତା କିପରି ? ଏହି ମହାପୁରାଣ ବେଦ (ବ୍ରହ୍ମ) ର ବ୍ୟାଖ୍ୟା (ସମ୍ମିତମ୍) ବା ବିଶ୍ଳେଷଣ ବା ଗୁପ୍ତ ରହସ୍ୟକୁ ଖୋଲି କହିବା ବାଲା ।

ପ୍ରଶ୍ନ-୬୫ : ବ୍ୟାସଦେବ ନିଜ ପୁତ୍ର ଶୁକଦେବଙ୍କୁ ଯେ ଜନ୍ମରୁ ପରମହଂସ ସନ୍ନ୍ୟାସୀ ପୁଣି ଶ୍ରେଷ୍ଠ (ବରଂ) ଆତ୍ମତତ୍ତ୍ୱ (ଆତ୍ମବତାଂ) ବିତ୍ କ'ଣ ପାଇଁ ଏ ପରମହଂସ ସଂହିତା ଭାଗବତକୁ (ଇଦଂ) ପଢ଼ାଇଲେ (ଗ୍ରାହୟାମାସ) ?

**ନିଃଶ୍ରେୟସାୟ ଲୋକସ୍ୟ ଧନ୍ୟଂ ସ୍ୱସ୍ତ୍ୟୟନଂ ମହତ୍ ।**
**ତତ୍ଇଦଂ ଗ୍ରାହୟାମାସ ସୁତଂ ଆତ୍ମବତାଂ ବରମ୍ ।୪୧।**

ଉତ୍ତର : ଆଗତ ପ୍ରାୟ କଳିଯୁଗରେ ଭୋଗବିଳାସ ପ୍ରେମୀ ଲୋକମାନଙ୍କ ପରମ କଲ୍ୟାଣ ଲାଗି (ନିଃଶ୍ରେୟସାୟ) । ତାଙ୍କ ପ୍ରଣୀତ ବେଦାନ୍ତ, ସୂତ୍ର, ମହାଭାରତ, ୧୮ ପୁରାଣ ଆଦି ସବୁ କେବଳ ଆଂଶିକ ସଫଳ ପ୍ରୟାସ । ଏ ଭାଗବତ ପ୍ରଣୟନ ତାଙ୍କର ସଂପୂର୍ଣ୍ଣ ସଫଳ ପ୍ରୟାସ ହେତୁ ପ୍ରଶଂସନୀୟ (ଧନ୍ୟଂ) । ଏହା ଏକ ଅନବଦ୍ୟ, ଦିବ୍ୟ, ଚିନ୍ମୟ ସୃଷ୍ଟି ଯାହା ସାଧକ ହୃଦୟକୁ ପରମ ଆନନ୍ଦପ୍ଲୁତ (ସ୍ୱସ୍ତ୍ୟୟନଂ) କରିପାରେ । ଏହା ୫ଲକ୍ଷଣ ଯୁକ୍ତ ଖାଲି ପୁରାଣ ନୁହେଁ । ବରଂ ୧୦ ଲକ୍ଷଣ ଯୁକ୍ତ ମହାପୁରାଣ ଅଟେ ।

ପ୍ରଶ୍ନ-୬୬ : ସେହି ଶୁକଦେବ ପରମହଂସ ନିଜେ ପଢ଼ିସାରିବା ପରେ ସର୍ବପ୍ରଥମେ କାହାକୁ ସପ୍ତାହ ପାରାୟଣ ଆକାରରେ ଶୁଣାଇଥିଲେ ?

**ସର୍ବବେଦ ଇତିହାସାନାଂ ସାରଂ ସାରଂ ସମୁଦ୍ଧୃତମ୍ ।**
**ସ ତୁ ସଂଶ୍ରାବୟାମାସ ମହାରାଜଂ ପରୀକ୍ଷିତମ୍ ।୪୨।**

ଉତ୍ତର : ହସ୍ତିନାପୁର ସିଂହାସନ ଆସୀନ ତତ୍କାଳୀନ ମହାରାଜ ପରୀକ୍ଷିତଙ୍କୁ । କାରଣ ୪ ବେଦ, ୧୮ ପୁରାଣ ଓ ଦୁଇ ଇତିହାସ (ରାମାୟଣ, ମହାଭାରତ) ର ସାର ସଂଗ୍ରହ ହେଉଛି ଏହି ଶ୍ରୀମଦ୍ ଭାଗବତମ୍ ଗ୍ରନ୍ଥ ।

ପ୍ରଶ୍ନ-୬୭ : ଶ୍ରୀକୃଷ୍ଣ ନିଜ ଲୀଳା ସମ୍ବରଣ କରିସାରି ଧର୍ମ-ଜ୍ଞାନ-ବୈରାଗ୍ୟ-ତ୍ୟାଗ ତପସ୍ୟା ସହିତ ସ୍ୱଧାମ ଗୋଲୋକକୁ ବାହୁଡ଼ି ଯାଇଥିଲେ । ପରୀକ୍ଷିତ ମହାରାଜ କେଉଁ ଅବସ୍ଥାରେ କେଉଁଠି ଏହା ଶ୍ରବଣ କରିଥିଲେ ?

**ପ୍ରାୟୋପବିଷ୍ଟ ଗଙ୍ଗାୟାଂ ପରୀତଂ ପରମ-ଋଷିଭିଃ ।**
**କୃଷ୍ଣେ ସ୍ୱଧାମ-ଉପଗତେ ଧର୍ମ ଜ୍ଞାନ-ଆଦିଭିଃ ସହ ।୪୩।**

ଉତ୍ତର : ପବିତ୍ର ଗଙ୍ଗାନଦୀକୂଳରେ । ରାଜା ବ୍ରହ୍ମଶାପ ଗ୍ରସ୍ତ । ସିଂହାସନ

ତ୍ୟାଗ କରି ପୁତ୍ରଙ୍କୁ ରାଜ୍ୟଭାର ଦେଇ ସାରିଥାନ୍ତି । କେବଳ ତକ୍ଷକ ସର୍ପ ଦଂଶନକୁ ଅପେକ୍ଷା । ହାତରେ ମାତ୍ର ସାତ ଦିନ ସମୟ । ସାରା ଦେଶ ଏହି ଦେଶାନ୍ତର ରାଜାଙ୍କ ଜୀବନ ରକ୍ଷା ଲାଗି ବ୍ୟାକୁଳ । ଖବର ପାଇ ରାଜାଙ୍କୁ ଘେରି ବସିଲେ ବଶିଷ୍ଠ, ପରାଶର, ବ୍ୟାସ, ନାରଦ, ବିଶ୍ୱାମିତ୍ରାଦି ମୁନି, ଋଷି, ସାଧୁ ମଣ୍ଡଳୀ । ସାତ ଦିନ ମଧ୍ୟରେ ଅମରତ୍ୱ କିଏ ଦେଇପାରିବ ତାଙ୍କ ହାତରେ । ପରୀକ୍ଷିତ କିନ୍ତୁ ନଛୋଡ଼ ବନ୍ଧା । ସେଇ ଗୋଟିଏ ପ୍ରଶ୍ନ ମୁନି-ଋଷି ମଣ୍ଡଳୀକୁ । ଆସନ୍ନ ମୃତ୍ୟୁ ମାନବର କର୍ତ୍ତବ୍ୟ କିସ ? ସତେ ଯେମିତି ଏଇ ସୁଯୋଗକୁ ଅପେକ୍ଷା କରିଥିଲେ ଶୁକଦେବ ପରମହଂସ । ସିଧାସଳଖ ଆକାଶସ୍ଥିତ ନିର୍ଗୁଣ ନିରାକାର ଅବସ୍ଥାରୁ ସଗୁଣ ସାକାର ଦେହ ଧରି ସଭା ମଧ୍ୟରେ ପ୍ରକଟ ହେଲେ । ତାଙ୍କ ହୃଦୟ କମଳରେ ସେ ଧାରଣ କରିଥାନ୍ତି ଏଇ ଚିନ୍ମୟ କୃଷ୍ଣକଥା (ଶ୍ରୀମଦ୍ଭାଗବତ) ।

ପ୍ରଶ୍ନ-୬୮ : ସେତେବେଳକୁ ପୃଥିବୀରେ କଳିଯୁଗ ପ୍ରବେଶ କରିସାରିଥାଏ । ଭୋଗ ବିଳାସରେ ମାତି ସମସ୍ତେ ଦିଗହରା (ନଷ୍ଟଦୃଶାଂ) କହିବାକୁ ଗଲେ ଚକ୍ଷୁଷ୍ମାନ ହୋଇ ମଧ୍ୟ ଅନ୍ଧ କିପରି ସେମାନେ ଆଲୋକର ସନ୍ଧାନ ପାଇଲେ ?

**କଳୌ ନଷ୍ଟ ଦୃଶାଂ ଏଷ ପୁରାଣ-ଅର୍କୋଽଧୁନା-ଉଦିତ ।**
**ତତ୍ର କୀର୍ତ୍ତୟତୋ ବିପ୍ରା ବିପ୍ରର୍ଷେଃ ଭୂରିତେଜସଃ ।୪୪।**

ଉତ୍ତର : ଏହି ମହାପୁରାଣ ରୂପୀ ସୂର୍ଯ୍ୟଦେବ ଉଦୟ ହେବାରୁ । ଅମିତ ଶକ୍ତିଶାଳୀ (ଭୂରି ତେଜସେ) ବିପ୍ର (ବେଦ ଅଧ୍ୟୟନକାରୀ) ପୁଣି ଋଷି (ବିପ୍ରର୍ଷେଃ) ଶ୍ରୀଶୁକଦେବଜୀ ସେହି ସ୍ଥାନରେ (ତତ୍ର) କୀର୍ତ୍ତନ କରି ଗ୍ରନ୍ଥର ଶୁଭ ଉନ୍ମୋଚନ କଲେ ।

ପ୍ରଶ୍ନ-୬୯ : ହେ ସୂତ ଗୋସ୍ୱାମୀ ଆପଣ କିପରି ଏହା ଶ୍ରବଣ କଲେ ?

**ଅହଂ ଚ-ଅଧିଗମଂ ତତ୍ର ନିବିଷ୍ଟଃ ତଦନୁଗ୍ରହାତ୍ ।**
**ସୋଽହଂ ବଃ ଶ୍ରାବୟିଷ୍ୟାମି ଯଥା-ଅଧୀତଂ ଯଥାମତି ।୪୫।**

ଉତ୍ତର : ସୂତଜୀ କହିଲେ, "ସେଇ ଶୁକଦେବ ପରମହଂସ ଗୁରୁଦେବଙ୍କ ଅଶେଷ କୃପା । ମୋର ପରମ ସୌଭାଗ୍ୟ । ମୁଁ ମଧ୍ୟ ସେହି ସଭାମଣ୍ଡଳୀରେ ଥିଲି । ନିବିଷ୍ଟ ଚିତ୍ତ ହୋଇ ଶ୍ରବଣ କରିଥିଲି ଭାଗବତ କଥା । ମୋର ସ୍ୱଚ୍ଛ ବୁଦ୍ଧିରେ (ଯଥା ମତିଃ) ମୁଁ ଯେତିକି ଅଧ୍ୟୟନ କରିଛି, ବୁଝିଛି ତାହାହିଁ ଆପଣମାନଙ୍କୁ ଏବେ ଶୁଣାଇବି । ସାବଧାନ ହୋଇ ଶ୍ରବଣ କରନ୍ତୁ ।"

# ୧ : ରଜୋଗୁଣୀ ଶ୍ରୋତା ପ୍ରକରଣ ସାର

## ଅଧ୍ୟାୟ ୧ମ-୩ୟ

ଶ୍ରୀମଦ୍ଭାଗବତ କେବଳ ଏକ ଗ୍ରନ୍ଥ ନୁହନ୍ତି । ଏହା ଏକ ମହାଗ୍ରନ୍ଥ । ମହାପୁରୁଷ ବେଦବ୍ୟାସଜୀଙ୍କର ମଙ୍ଗଳାଚରଣ ଶ୍ଳୋକରେ ଏହାର ଶୁଭାରମ୍ଭ । ଯାହାଙ୍କର (ଗଣେଶ, ସରସ୍ୱତୀ, ଶିବ, ଶ୍ରୀରାମ, ଶ୍ରୀକୃଷ୍ଣ ଇତ୍ୟାଦି) ଆଚରଣ ମଙ୍ଗଳ ଜନକ ତାଙ୍କର ସ୍ତବ, ସ୍ତୁତି, ବନ୍ଦନା, ପ୍ରାର୍ଥନା କରିବା ଉଚିତ । ଶାର୍ଦ୍ଦୁଳ ବିକ୍ରୀଡ଼ିତ ଛନ୍ଦରେ ପ୍ରଥମ ଶ୍ଳୋକଟି ପରିବେଷିତ । ମନୁଷ୍ୟର ହିଂସ୍ର ପଶୁ ପାପ ପ୍ରବୃତ୍ତିକୁ ଶାର୍ଦ୍ଦୁଳ ଭଳି ଏହା ଧ୍ୱଂସ କରିବାକୁ ଉଦ୍ଦିଷ୍ଟ।

ସବୁ ଦେବୀ ଦେବତା ଅବଶ୍ୟ ସତ୍ୟ । ଶ୍ରୀକୃଷ୍ଣ କିନ୍ତୁ ସତ୍ୟଙ୍କର ସତ୍ୟ ପରମ ସତ୍ୟ। ତେଣୁ ଭାଗବତରେ ସେ ବ୍ରହ୍ମ, ପରମାତ୍ମା ହୋଇ ମଧ୍ୟ ସ୍ୱୟଂ ଅସମୋର୍ଦ୍ଧ୍ୱ ଭଗବାନ । ସେ ଏକ ହେଲେ ମଧ୍ୟ ତାଙ୍କର ଅନେକ ନାମ । ଅନେକ ରୂପ । ଅନେକ ଲୀଳା ମଧ୍ୟ ତାଙ୍କର । ସାଧକ ପୂଜନ, ବନ୍ଦନ, ସ୍ତୁତି ଯେ କୌଣସି ଦେବତାଙ୍କର କରିପାରନ୍ତି । ଧ୍ୟାନ କିନ୍ତୁ ଜଣଙ୍କର କରିବା ଉଚିତ । ଜ୍ଞାନୀଙ୍କୁ ଏଥିରେ ଏକ ଚେତାବନୀ ମଧ୍ୟ ଦିଆଯାଇଛି । ସାଧକ ବ୍ରହ୍ମ (ସ୍ଥିର ଜ୍ୟୋତି)ର ଧ୍ୟାନ ନକରି ବରଂ ଚେତନ ପରମାତ୍ମାଙ୍କର ଧ୍ୟାନ କରିବା ତା ପାଇଁ ଅଧିକ ଲାଭପ୍ରଦ ।

ଭାଗବତଙ୍କର ଆରମ୍ଭ ଧ୍ୟାନ ବା ଜ୍ଞାନରୁ । ସମାପ୍ତି କିନ୍ତୁ ଭକ୍ତିରେ । ସୁତରାଂ ଭାଗବତ ଏକାଧାରରେ ଯେ ଯାହାର ଜ୍ଞାନ ପରକ ଓ ଭକ୍ତି ପରକ ମଧ୍ୟ । ମାର୍ଗ ବା ସାଧନକୁ ଅଲଗା ଭାବନ୍ତୁ କିନ୍ତୁ ଧ୍ୟେୟ ସେଇ ଏକ ପରମ ସତ୍ୟ । ନିରନ୍ତର ଈଶ୍ୱରଙ୍କ ଚିନ୍ମୟ ରୂପ ଧ୍ୟାନରେ ସାଧକର ମନ, ବୁଦ୍ଧି ଚିନ୍ମୟ ହେବାରେ ଲାଗନ୍ତି । ଈଶ୍ୱରଙ୍କର ଚିନ୍ମୟ ଶକ୍ତି ମଧ୍ୟ ଜୀବକୁ କ୍ରମେ କ୍ରମେ ମିଳୁଥାଏ । ତାଙ୍କର ନାମ, ରୂପ, ଲୀଳା, ଗୁଣ, ଧାମ, ସନ୍ଥ ସବୁ ଚିନ୍ମୟ । ଜୀବର ଯାହା କର୍ମ ଈଶ୍ୱରଙ୍କର ତାହା ଲୀଳା । ଏ ସୃଷ୍ଟି ତାଙ୍କର ଲୀଳା । ପାଳନ ତାଙ୍କର ଲୀଳା । ସଂହାର ମଧ୍ୟ

ତାଙ୍କର ଲୀଳା । ଗାନ୍ଧାରୀଙ୍କ ଶାପରେ ମଧ୍ୟ କୃଷ୍ଣ ଆନନ୍ଦିତ । ସର୍ପ ଶଯ୍ୟାରେ ବିଷ୍ଣୁ ଓ ଶ୍ମଶାନ ବାସରେ ଶିବଜୀ ଉଭୟେ ଆନନ୍ଦିତ । ବେଦବ୍ୟାସଜୀ ସେଥିପାଇଁ କୌଣସି ନିର୍ଦ୍ଦିଷ୍ଟ ରୂପ ଧ୍ୟାନ ଲାଗି ଆମକୁ କହିନାହାନ୍ତି । ନିଜ ମନ ନିର୍ମଳ ଲାଗି ସତ୍ୟ ସ୍ୱରୂପକୁ ଧ୍ୟାନ କର ବୋଲି କହିଛନ୍ତି । ନଚେତ ଭାଗବତ ସାଂପ୍ରଦାୟିକ ହୋଇଯାଇଥାଆନ୍ତା । ଦୁର୍ଜ୍ଞେୟ ବେଦବର୍ଣ୍ଣିତ, ବୈଦିକ ଧର୍ମର ଚରମ, ସର୍ବଜନ ସୁଲଭ ପରିପ୍ରକାଶ, ବ୍ୟାଖ୍ୟା ଏହି ଭାଗବତ । ବଙ୍କା ଟଙ୍କା ସକଳ ନଦୀ ସମୁଦ୍ରରେ ମିଶନ୍ତି । ନିଜକୁ ହରାଇ ବିଶ୍ୱପ୍ରାଣ ହୁଅନ୍ତି । ଆତ୍ମାକୁ ହରାଇ ପରମାତ୍ମାଙ୍କ ରୂପ ପରିଗ୍ରହ କରନ୍ତି । ସେହିଭଳି ସବୁ ଧର୍ମ, ମତ, ପଥ ଏହି ଭାଗବତ ଧର୍ମରେ ନିଜକୁ ମିଶାଇ କୃତ୍ୟ କୃତ୍ୟ ହୁଅନ୍ତି ।

ଧର୍ମ, ଅର୍ଥ, କାମ ଓ ମୋକ୍ଷ ଲାଗି ଭକ୍ତି କରିବା ସାଧକକୁ ସଂସାର ଭୋଗ ପ୍ରିୟ ଲାଗେ । ପରମାତ୍ମା ଲାଗନ୍ତି ନାହିଁ । ଭଗବାନଙ୍କୁ ଧନ ମାଗିଲେ ଧନ ଅବଶ୍ୟ ମିଳିବ କିନ୍ତୁ ଭଗବାନ ମିଳିବେ ନାହିଁ । କିଛି ମାଗି ବସିଲେ ପ୍ରେମର ଧାରାରେ ଭଟ୍ଟା ପଡ଼େ । ଶୁଦ୍ଧ ପ୍ରେମ ସର୍ବଦା ଲେନା ଲେନା ନୁହେଁ । ଲେନା ଦେନା ବି ନୁହେଁ । ଏହା କେବଳ ଦେନା ଦେନା । ଗୋପୀମାନେ ତନ, ମନ, ଧନ ସବୁ ଦେଇ ପକାଇଥିଲେ ଗୋବିନ୍ଦଙ୍କୁ । ସେହି ନ୍ୟାୟରେ ଜୀବ ତାର ଜୀବତ୍ୱ ଭୁଲି ଈଶ୍ୱରଙ୍କ ସମ୍ମୁଖ ହେବାକୁ ବାହାରିଲେ ଈଶ୍ୱର ମଧ୍ୟ ତାଙ୍କ ଈଶରତ୍ୱ ଭୁଲି ଯାଆନ୍ତି । ଆଗେଇ ଆସନ୍ତି ଭକ୍ତକୁ ଭେଟିବାକୁ । ଧ୍ରୁବଙ୍କ ପାଖକୁ ଶ୍ରୀହରି, ଭକ୍ତ ପୁଣ୍ଡଳିକ ପାଖକୁ ଦ୍ୱାରକାଧୀଶ, ଶବରୀ ପାଖକୁ ଶ୍ରୀରାମ ଓ କୁବ୍‌ଜା ପାଖକୁ କୃଷ୍ଣ ଦୌଡ଼ି ଆସିବା ଭଳି।

ମହାଯୋଗୀରାଜ ଚାଙ୍ଗଦେବ ବା ତୈଲଙ୍ଗ ସ୍ୱାମୀ ୧୪୦୦ବର୍ଷ ବଞ୍ଚିଥିଲେ । ଯୋଗ ସାଧନା ବଳରେ କାୟାକଳ୍ପ ସିଦ୍ଧି ପ୍ରାପ୍ତ ହୋଇଥିଲେ । ଗଙ୍ଗା ଜଳରେ ସ୍ରୋତର ପ୍ରତିକୂଳରେ ବାରାଣାସୀ ଠାରେ ସେ ଲୋକଙ୍କୁ ଓଲଟ ପହଁରିବା ଚମତ୍କାର ଦେଖାନ୍ତି । ଉଲଗ୍ନ ହୋଇ ସହରରେ ବୁଲୁଥାନ୍ତି । କାଶୀ ବିଶ୍ୱନାଥ ଶିବ ଲିଙ୍ଗ ଉପରେ ପରିସ୍ରା କରି ଲୋକଙ୍କୁ ଡ଼ରାନ୍ତି । ମୃତ୍ୟୁ ଦେବତାଙ୍କୁ ସେ ଜୀବନରେ ୧୪ଥର ଫେରାଇ ଦେଇଥିଲେ କିନ୍ତୁ ମାୟା କବଳରୁ ଫିଟି ପାରିନଥିଲେ ସେ ଯାଏଁ । ଦିନେ ସନ୍ଥ ଜ୍ଞାନଦେବଙ୍କ ସତ୍‌ସଙ୍ଗ ଲାଭ କଲେ । ନୀରସ ହୃଦୟରେ ସରସ ଭକ୍ତିର ସଞ୍ଚାର ହେଲା । ଜୀବନ କୃତାର୍ଥ ହେଲା । ଭକ୍ତି ପ୍ରାପ୍ତ ହୋଇ

ଅବିଳମ୍ବେ ଦେହ ଛାଡ଼ି ଦେଲେ । ତାହା ପୁଣି ମହା ଆନନ୍ଦରେ ।

ଜଗତକୁ ଶିକ୍ଷା ମିଳିଲା ତୈଲଙ୍ଗ ସ୍ୱାମୀଙ୍କ ଠାରୁ ଯେ ହଠ ଯୋଗ ମନକୁ ଏକାଗ୍ର କରିପାରେ । ନିର୍ବିକାର କରିପାରେ । ହୃଦୟକୁ ରସାଳ କି ବିଶାଳ କରିପାରେ ନା। ସୁତରାଂ ଯୋଗୀ /ଜ୍ଞାନୀଙ୍କର ପ୍ରେମ ଦୃଷ୍ଟି ଭକ୍ତି ହୀନ ହେଲେ ସୀମିତ, ସଙ୍କୁଚିତ ହୋଇଯାଏ । ଭକ୍ତିର ବୀଜ ବପନ ହୋଇପାରେ ନା । ଭକ୍ତ ପାଖରେ ଥିବା ୪ଟି ରୁଟିରୁ ସେ ପୋଡ଼ା ରୁଟି ଦୁଇଟି ନିଜ ପାଇଁ ରଖେ । ଭଲ ଦୁଇଟିକୁ ଅନ୍ୟକୁ ଦିଏ । ତା ପ୍ରେମ ଦୃଷ୍ଟିରେ ଭଗବାନ ସେ ରୁଟି ଦୁଇଟିକୁ ଖାଇବେ ପରା । ଅନ୍ୟ ପକ୍ଷରେ ଜ୍ଞାନୀ ଲୋକଟିଏ ଅହଂ ବ୍ରହ୍ମାସ୍ମି ଭାବନାରେ ଭଲ ଦୁଇଟି ରୁଟିକୁ ନିଜ ପାଇଁ ରଖି ନିଏ । ଅନ୍ୟକୁ ବଢ଼ାଇ ଦିଏ ପୋଡ଼ା ରୁଟି ଦୁଇଟି । ଏଇତ ଜ୍ଞାନ-ଭକ୍ତି ମାର୍ଗର ପାର୍ଥକ୍ୟ ।

ସ୍ୱାଦ ଭୋଜନରେ ନ ଥାଏ । ଥାଏ ମନୁଷ୍ୟର କ୍ଷୁଧାରେ, ଆତୁରତାରେ। ଭଗବତ ପ୍ରାପ୍ତି, ସତ୍‌ସଙ୍ଗ ପ୍ରାପ୍ତି ମଧ୍ୟ ଆଧ୍ୟାତ୍ମିକ କ୍ଷୁଧାରୁ ହୁଏ । ସେ କ୍ଷୁଧା ନଥିଲେ ସାଧୁ ସନ୍ଥ ମିଳିଲେ ମଧ୍ୟ କିଛି ଉପକାର ପାଇ ହୁଏନା ସେମାନଙ୍କ ଠାରୁ । ନବଧା ଭକ୍ତି ମଧ୍ୟରେ ଶ୍ରବଣ ଭକ୍ତି ପ୍ରଥମ । ରକ୍ମିଣୀଙ୍କର କୃଷ୍ଣ ନାମ, ରୂପ, ଗୁଣ, ଲୀଳା ମାହାତ୍ମ୍ୟ ଶୁଣି ଚିତ୍ତନନ୍ଦୟ ହେଲା । ମନରେ ପ୍ରେମ କରି ବସିଲେ ଠାକୁରଙ୍କୁ । ହରିକଥା ଶ୍ରବଣର ଅଧିକାର ଆସେ ତିନି କଥା ଥିଲେ । ଜିଜ୍ଞାସା, ଶ୍ରଦ୍ଧା ଓ ଅନସୂୟାଭାବ(ଗୁଣରେ ଦୋଷ ନ ଦେଖିବା) ନଚେତ କଥା ଶ୍ରବଣ ବେକାର ଯାଏ । ସାତ କାଣ୍ଡ ରାମାୟଣ ଶୁଣି ସେ ପଚାରିବ ରାକ୍ଷସ କିଏ । ରାମ ନା ରାବଣ?

ସାଧୁ ସଙ୍ଗରୁ ହରିକଥା ଶ୍ରବଣ ଇଛା ଜାଗ୍ରତ ହୁଏ । ନୈମିଷାରଣ୍ୟରେ ଶୌନକ ଆଦି ୮୮,୦୦୦ମୁନି ଋଷି ଯଜ୍ଞ କରୁଥିଲେ ଜୀବନକୁ ସୁଖମୟ କରିବାକୁ । ସେମାନେ ସମସ୍ତେ କର୍ମାଧିକାରୀ। ସ୍ୱଭାବରେ ରଜୋଗୁଣୀ । ତଥାପି ଆତ୍ମ କଲ୍ୟାଣ ଇଚ୍ଛୁକ ସାଧକ ସେମାନେ । କର୍ମ କାଣ୍ଡରେ ବିରକ୍ତି ଆସିବାରୁ ଭଗବାନ ସ୍ୱତଃ ତାଙ୍କ ପାଖକୁ ପଠାଇ ଦେଇଛନ୍ତି ଜଣେ ସତ୍ତ୍ୱଗୁଣୀ ଭାଗବତ ପ୍ରବଚକ ଉଗ୍ରଶ୍ରବା ସୂତ ମୁନିଙ୍କୁ । ଫଳରେ ଭାଗବତ ପ୍ରବଚନ ପାରାୟଣ ସମ୍ଭବ ହୋଇଛି । ଭବିଷ୍ୟତ ପୀଢ଼ି ପାଇଁ ମାର୍ଗଦର୍ଶନ କରିଛନ୍ତି ସେମାନେ ।

ପ୍ରବଚନ ଆରମ୍ଭରେ ଭାଗବତଙ୍କର ପ୍ରଚାର ପ୍ରସାରର ଶ୍ରୀ ଗଣେଶ କରିଛନ୍ତି ସୂତ ମୁନି ଭଗବାନଙ୍କ ବାଇଶ ଅବତାରଙ୍କ ମାହାତ୍ମ୍ୟ ଗାନ କରି । ପ୍ରଥମ ଅବତାର ସନକାଦି ମୁନିମାନଙ୍କର ଜଗତକୁ ବ୍ରହ୍ମଚର୍ଯ୍ୟ ଶିକ୍ଷା ଦେବାକୁ । ୨ୟ, ୩ୟ, ୪ର୍ଥ ଅବତାର ଯଥାକ୍ରମେ ବରାହ ରୂପରେ ସନ୍ତୋଷ, ନାରଦ ରୂପରେ ଭକ୍ତି ଓ ନରନାରାୟଣ ରୂପରେ ତପସ୍ୟା ଶିକ୍ଷା ଦେବାକୁ। କପିଳ ଅବତାରରେ ଜ୍ଞାନ-ବୈରାଗ୍ୟ ଦେଇ ଦତ୍ତାତ୍ରେୟ ଅବତାରରେ ଗୁଣାତୀତ ହେବା ଉପାୟ ଶିକ୍ଷା ଦେଇଛନ୍ତି । ଭଗବାନଙ୍କର ପ୍ରତ୍ୟେକଟି ଅବତାର ମନୁଷ୍ୟ ସମ୍ମୁଖରେ କିଛି ନା କିଛି ଆଦର୍ଶ ପ୍ରକଟ କରାଇବା ପାଇଁ ହୋଇଛି । ସେତେବେଳକୁ ଦ୍ୱାପର ଯୁଗ ଶେଷ ହେଉଥାଏ । ଆଗକୁ କଳିଯୁଗ ଆସୁଥାଏ । ସେ ବିଷୟରେ ସୂତ ଗୋସ୍ୱାମୀ ଭଗବାନଙ୍କର ଶେଷ ଦୁଇ ଅବତାର ବୁଦ୍ଧ ଓ କଲ୍‌କୀ ରୂପ ଭାବରେ ଭବିଷ୍ୟତରେ ହେବ ବୋଲି କହି ନିମ୍ନାଧିକାରୀ ଶ୍ରୋତା ବକ୍ତାଙ୍କର ପ୍ରସଙ୍ଗର ଉପସଂହାର କରିଛନ୍ତି ।

ଜ୍ଞାନୀମାନଙ୍କ ମତରେ ପରମାତ୍ମାଙ୍କର ଅବତାର ହେବା ଅସମ୍ଭବ । ଭକ୍ତ ମତରେ ତେବେ ତ ପରମାତ୍ମା ସର୍ବ ସମର୍ଥ ନୁହନ୍ତି । କହନ୍ତି  ଆମ ପ୍ରେମମୟ ଭଗବାନ କିନ୍ତୁ ଅବତାର ନେବାକୁ ବାଧ । ନଚେତ ପ୍ରେମ ମାର୍ଗର ପ୍ରଚାର ପ୍ରସାର ଅସମ୍ଭବ  ପଦବାଚ୍ୟ । ବିନା ଭକ୍ତିରେ ମାୟାସନୀ ରସ, ରସାଳ, ବିଶାଳ ଓ ତରଙ୍ଗାୟିତ ହେବ କେମିତି ? ଏଇତ ଭାଗବତଙ୍କ ଜ୍ଞାନ, ବୈରାଗ୍ୟ, ଭକ୍ତିର ସମନ୍ୱୟାତ୍ମକ ତ୍ରିବେଣୀ । ଅତଏବ ଶୌନକ ଆଦି ୮୮,୦୦୦ମୁନି ଋଷି ରଜୋଗୁଣୀ ଶ୍ରୋତା ପଦବାଚ୍ୟ।

ପରବର୍ତ୍ତୀ ପ୍ରକରଣରେ ପୁଣି ତିନି ଅଧ୍ୟାୟରେ ସତ୍ୱଗୁଣୀ ଶ୍ରୋତାଙ୍କ କଥା ଆଲୋଚିତ ହେବ ।

# ପ୍ରକରଣ-୨

## (ସତ୍ତ୍ୱଗୁଣୀ ଶ୍ରୋତା ଅଧ୍ୟାୟ ୪ର୍ଥ-୬ଷ୍ଠ)

## ମଧ୍ୟମ ଅଧିକାରୀ ବକ୍ତା-ଶ୍ରୋତା (ଜ୍ଞାନସିଦ୍ଧ ଅଧିକାରୀ ପ୍ରସଙ୍ଗ)

## ଅଥ ୪ର୍ଥ ଅଧ୍ୟାୟଃ

### (ବ୍ୟାସମୁନିଙ୍କ ଜ୍ଞାନ ବିଷାଦ ଓ ଦେବର୍ଷି ନାରଦଙ୍କ ପ୍ରାକଟ୍ୟ)

ଜ୍ଞାନ କାଣ୍ଡ ଶେଷରେ ବିଷାଦ, ବୈରାଗ୍ୟ, ଅସନ୍ତୋଷ ଉପସ୍ଥିତ ହେଲେ ଭକ୍ତି ଜିଜ୍ଞାସା ଦରକାର ପଡ଼େ । ଭକ୍ତିଦେବୀ କେବଳ ଏହାକୁ ପ୍ରଶମନ କରିପାରନ୍ତି । ସାଧନାର ମୂଳରୁ ଜ୍ଞାନ ସାଧକମାନେ ମୁଖ୍ୟ ସ୍ଥାନ ଦିଅନ୍ତି ଜ୍ଞାନକୁ । ଭକ୍ତି ସେମାନଙ୍କ ଲାଗି ଗୌଣ ସାଧନ ଅଟେ । ସୁତରାଂ ଜ୍ଞାନ ସାଧକ ବ୍ୟାସଦେବ ସତ୍ତ୍ୱଗୁଣୀ ଶ୍ରୋତା ଭୂମିକାରେ ଓ ନିର୍ଗୁଣୀ ଭକ୍ତି ସାଧକ (ନାରାୟଣ ଭକ୍ତ) ନାରଦଜୀ ଏଠାରେ ବକ୍ତା ଭୂମିକାରେ ଅବତୀର୍ଣ୍ଣ । ପରବର୍ତ୍ତୀ ୩ ଅଧ୍ୟାୟରେ ଏହି ପ୍ରକରଣ ବିଶେଷ ଭାବରେ ଆଲୋଚିତ ହେବ ।

ପ୍ରଶ୍ନ-୭୦ : ନୈମିଷାରଣ୍ୟରେ ହଜାରେ ବର୍ଷ ବ୍ୟାପୀ ଯଜ୍ଞ କରିବାକୁ ସଂକଳ୍ପ ନେଇଥିଲେ ଶୌନକାଦି ୮୮,୦୦୦ ମୁନି । ସେମାନଙ୍କ କୁଳପତି ବା ଜ୍ଞାନବୃଦ୍ଧ ମୁଖ୍ୟ ଶ୍ରୋତା ଥିଲେ ଶୌନକଜୀ । ସେ ସ୍ୱୟଂ ବେଦଜ୍ଞ (ବହ୍ୱୃଚଃ) ଥିଲେ ମଧ୍ୟ ସୂତ ଗୋସ୍ୱାମୀଙ୍କୁ କାହିଁକି ବକ୍ତା ହିସାବରେ ବସାଇ ତାଙ୍କର ପ୍ରଶଂସା କଲେ ?

**ବ୍ୟାସ ଉବାଚ**

**ଇତି ବ୍ରୁବାଣଂ ସଂସ୍ତୂୟ ମୁନୀନାଂ ଦୀର୍ଘ ସତ୍ରିଣାମ୍ ।**
**ବୃଦ୍ଧଃ କୁଳପତିଃ ସୂତଂ ବହ୍ୱୃ-ଋଚଃ ଶୌନକୋଽବ୍ରବୀତ୍ ।୧।**

ଉତ୍ତର : କାରଣ ଶୁକ-ପରୀକ୍ଷିତ ଭାଗବତ ପ୍ରବଚନ ସମୟରେ ସେ ସତ୍‌ସଙ୍ଗ ବେଳେ ସୂତ ମୁନି ସେଠାରେ ଉପସ୍ଥିତ ରହି ଶ୍ରୀମଦ୍‌ଭାଗବତ ଶ୍ରବଣର

ସୌଭାଗ୍ୟ ଲାଭ କରିଥିଲେ । ସେଥିପାଇଁ ଶୌନକଜୀ ସୂତଙ୍କର ଭୂରି ଭୂରି ପ୍ରଶଂସା (ସଂସ୍ତୂୟ) କରିଥିଲେ ।

**ଶୌନକ ଉବାଚ**

ପ୍ରଶ୍ନ-୭୧ : ପରମ ଆନନ୍ଦରେ ଆତ୍ମହରା ହେଲେ ଶୌନକ । ତାଙ୍କ ଯଜ୍ଞାନୁଷ୍ଠାନ ସଫଳ ହୋଇଛି । ସେ ଶ୍ରୀମଭାଗବତ ଶ୍ରବଣର ଦୁର୍ଲ୍ଲଭ ସୁଯୋଗ ପାଇଛନ୍ତି । ବାକ୍ ଗଦ୍‌ଗଦ୍ ହୋଇ ବ୍ୟାସ ଆସନରେ ଉପବିଷ୍ଟ ବକ୍ତା ଶିରୋମଣି ସୂତ ଗୋସ୍ୱାମୀଙ୍କୁ ସେ କି ଅନୁରୋଧ କଲେ ?

**ସୂତ ସୂତ ମହାଭାଗ ବଦ ନୋ ବଦତାଂ ବର ।**
**କଥା ଭାଗବତୀଂ ପୁଣ୍ୟାଂ ଯତ୍ ଆହ ଭଗବାନ୍ ଶୁକଃ ।୨।**

ଉତ୍ତର : ସେଇ ପରମ କଲ୍ୟାଣକାରୀ ଭାଗବତ କଥା ଶୁଣାଇବାକୁ ।

ପ୍ରଶ୍ନ-୭୨ : କେଉଁ ଯୁଗରେ, କେଉଁ ସ୍ଥାନରେ କ'ଣ ପାଇଁ ଓ କାହା ପ୍ରେରଣାରେ ବ୍ୟାସଦେବ (କୃଷ୍ଣ ଦ୍ୱୈପାୟନ ମୁନି) ଏହାକୁ ନିର୍ମାଣ କଲେ ?

**କସ୍ମିନ୍ ଯୁଗେ ପ୍ରବୃତ୍ତା-ଇୟଂ ସ୍ଥାନେ ବା କେନ ହେତୁନା ।**
**କୁତଃ ସଂଚୋଦିତଃ କୃଷ୍ଣଃ କୃତବାନ୍ ସଂହିତାଂ ମୁନିଃ ।୩।**

ଉତ୍ତର : ଏହା ଏକ ପରମହଂସ ସଂହିତା । ଗୃହତ୍ୟାଗୀ ସନ୍ନ୍ୟାସୀ, ବାନପ୍ରସ୍ଥୀମାନଙ୍କର ସକଳ ସଂସାର ଆସକ୍ତିକୁ ସମ୍ୟକ୍ ଭାବରେ ହନନ (ହାଣି ପକାଉଥିବା) କରୁଥିବାରୁ ଏହାର ନାମ (ସଂହିତା) ଏପରି ହୋଇଛି ।

ପ୍ରଶ୍ନ-୭୩ : ପ୍ରକଟ କାଳରେ ତାଙ୍କ ପୁତ୍ର ଶୁକଦେବଙ୍କ ଦେହରେ କି କି ବିଶେଷ ଲକ୍ଷଣ ପ୍ରକାଶ ପାଉଥିଲା ?

**ତସ୍ୟ ପୁତ୍ରୋ ମହାଯୋଗୀ ସମଦୃକ୍ ନିର୍ବିକଳ୍ପକଃ ।**
**ଏକାନ୍ତମତିଃ ଉନ୍ନିଦ୍ରୋ ଗୂଢ଼ୋ ମୂଢ଼ ଇବ-ଇୟତେ ।୪।**

ଉତ୍ତର : ସକଳ ସିଦ୍ଧି ପ୍ରାପ୍ତ ଯୋଗୀ, ବ୍ରାହ୍ମଣ-ଚାଣ୍ଡାଳରେ ସମଦର୍ଶୀ,ନିର୍ବିକଳ୍ପ ସମାଧିରୁ ଉଠିଥିବା (ଉନ୍ନିଦ୍ରୋ), କେବଳ ବ୍ରହ୍ମଙ୍କଠାରେ ମନ ବୁଦ୍ଧିକୁ ସମର୍ପି ସାରିଥିବା, ସଂସାର ଆସକ୍ତିରୁ ପୂର୍ଣ୍ଣ ବିରକ୍ତ ବା ସଦା ଜାଗ୍ରତ, ସଂସାରୀ ଲୋକଙ୍କୁ ଲୁଚିକରି ବୁଲୁଥିବା ସର୍ବୋପରି ଜଡ଼ ବା ମୂର୍ଖ ଭଳି ସଂସାରୀ ଲୋକଙ୍କୁ ପ୍ରତୀତ ହେଉଥିବା ଇତ୍ୟାଦି ଅନେକ ଲକ୍ଷଣ ।

ପ୍ରଶ୍ନ-୭୪: ସେହି ବିରକ୍ତ ଶିରୋମଣି ଶୁକଦେବଙ୍କୀ ଗୃହସ୍ଥାଶ୍ରମୀ ମାନଙ୍କ ଗୃହକୁ ତୀର୍ଥରେ ପରିଣତ କରିବାକୁ ଭିକ୍ଷା ମାଗିବାକୁ ଯାଉଥିବା ବେଳେ କେତେ ସମୟ ଅପେକ୍ଷା କରୁଥିଲେ ?

**ସ ଗୋଦୋହନ ମାତ୍ରଂ ହି ଗୃହେଷୁ ଗୃହମେଧିନାମ୍ ।**
**ଅବେକ୍ଷତେ ମହାଭାଗଃ ତୀର୍ଥୀକୁର୍ବନ୍ ତତ୍ ଆଶ୍ରମମ୍ ।୮।**

ଉତ୍ତର : କେବଳ ଆଠ ମିନିଟ୍ । ଗୋଟିଏ ଗାଈ ଦୁହିଁବାକୁ ଯେତିକି ସମୟ ଲାଗେ ।

ପ୍ରଶ୍ନ-୭୫ : ଶୁକଦେବଙ୍କ ବ୍ୟତୀତ ଆଉ କାହା ବିଷୟରେ ଶ୍ରବଣ କରିବାକୁ ସେମାନେ ଆଗ୍ରହ ପ୍ରକାଶ କଲେ ।

**ଅଭିମନ୍ୟୁ ସୁତଂ ସୂତ ପ୍ରାହୁଃ ଭାଗବତ-ଉତ୍ତମମ୍ ।**
**ତସ୍ୟ ଜନ୍ମ ମହା-ଆଶ୍ଚର୍ଯ୍ୟଂ କର୍ମାଣି ଚ ଗୃଣୀହି ନଃ ।୯।**

ଉତ୍ତର : ପାଣ୍ଡବ ବଂଶର ଏକମାତ୍ର ଦାୟାଦ ଅଭିମନ୍ୟୁଙ୍କ ପୁତ୍ର ପରୀକ୍ଷିତ ଜଣେ ମହାଭାଗବତ (ଶ୍ରେଷ୍ଠ ଭଗବତ୍ ଭକ୍ତ) ଥିଲେ । ତାଙ୍କର ଜନ୍ମ ଚରିତ, ମାତା ଗର୍ଭରେ ଥିବା ବେଳେ ଅଶ୍ୱତ୍ଥାମାଙ୍କ ବ୍ରହ୍ମାସ୍ତ୍ରରେ ଦଗ୍ଧ ହେବା, କୃଷ୍ଣ କୃପାରୁ ପୁଣି ଶରୀର ଧାରଣ କରିବା, ତାଙ୍କ ରାଜ୍ୟ ଶାସନ ପ୍ରଣାଳୀ, କଳିଙ୍କ ସହିତ ତାଙ୍କର କଥୋପକଥନ, କଳିଯୁଗରେ କେବଳ ପାଞ୍ଚଟି ସ୍ଥାନରେ ରହିବାକୁ ନିର୍ଦ୍ଦେଶ ଓ ତାଙ୍କୁ ଜୀବନରେ ନ ମାରି ସୀମିତ ଦଣ୍ଡଦେବା କଥାର ମହାନାୟକ ପରୀକ୍ଷିତଙ୍କ ବିଷୟରେ ମଧ୍ୟ ।

ପ୍ରଶ୍ନ-୭୬ : ସାମାନ୍ୟ ଭୁଲଟିଏ କରି ପାଣ୍ଡବ କୁଳର ମୁକୁଟମଣି ରାଜ ଚକ୍ରବର୍ତ୍ତୀ ସମ୍ରାଟ୍ ପରୀକ୍ଷିତ ବ୍ରହ୍ମଶାପ ଗ୍ରସ୍ତ ହୋଇ କ'ଣ କଲେ ?

**ସ ସମ୍ରାଟ୍ କସ୍ୟ ବା ହେତୋଃ ପାଣ୍ଡୂନାଂ ମାନବର୍ଦ୍ଧନଃ ।**
**ପ୍ରାୟ-ଉପବିଷ୍ଟୋ ଗଙ୍ଗାୟାଂ ଅନାଦୃତ୍ୟ-ଅଧିରାଟ୍ ଶ୍ରିୟମ୍ ।୧୦।**

ଉତ୍ତର : ଗଙ୍ଗାକୂଳରେ ଅନଶନ ବ୍ରତରେ ବସିଲେ । ସେ ରାଜ ଚକ୍ରବର୍ତ୍ତୀ ପଦ ପଦବୀର ସୁଲଭ ବିଳାସ ବ୍ୟସନ ମୋହକୁ ତ୍ୟାଗ କଲେ ବ୍ରହ୍ମଶାପ ଜନିତ ମୃତ୍ୟୁଭୟ ପରିସ୍ଥିତିର ଚାପରେ ପଡ଼ି । ମୃତ୍ୟୁର କେଡ଼େ କରାମତି । ୬୬ ବର୍ଷ ବିଳାସୀ ଜୀବନର ଅନ୍ତ କରିପାରିଲା ଏହି ବ୍ରହ୍ମଶାପର ଭୟ । ଧନ୍ୟ ସେଇ ବ୍ରହ୍ମଶାପ !!

ପ୍ରଶ୍ନ-୭୭ : ଶ୍ରୀହରିଙ୍କ କଳା ନେଇ ଭଗବାନଙ୍କର ଜ୍ଞାନ ଅବତାର ବ୍ୟାସଦେବ ପିତା ମହାଯୋଗୀ ପରାଶରଙ୍କ ଔରଷରେ ବସୁକନ୍ୟା ସତ୍ୟବତୀ ବା କୈବର୍ତ୍ତ କନ୍ୟା ମତ୍ସ୍ୟଗନ୍ଧା ଗର୍ଭରେ କେତେବେଳେ ଜନ୍ମ ଗ୍ରହଣ କଲେ ?

ସୂତ ଉବାଚ

**ଦ୍ୱାପରେ ସମନୁପ୍ରାପ୍ତେ ତୃତୀୟେ ଯୁଗପର୍ଯ୍ୟୟେ ।**
**ଜାତଃ ପରାଶରାତ୍ ଯୋଗୀ ବାସବ୍ୟାଂ କଳୟା ହରେଃ ।୧୪।**

ଉତ୍ତର : ଚଳିତ ପଦ୍ମ କଳ୍ପ ଅନ୍ତର୍ଗତ ୭ମ ମନ୍ୱନ୍ତର କାଳରେ ୨୮ ତମ ଚତୁର୍ଯ୍ୟୁଗୀର ୩ୟ ପର୍ଯ୍ୟାୟରେ ଉପସ୍ଥିତ ଦ୍ୱାପର ଯୁଗରେ ।

ପ୍ରଶ୍ନ-୭୮ : କି ପରିସ୍ଥିତିରେ ଆତ୍ମାରାମ ଯୋଗୀ, ମହାଜ୍ଞାନୀ ବ୍ୟାସଦେବଙ୍କ ମନରେ ବିଷାଦ ବା ଅସନ୍ତୋଷ ଜାତ ହେଲା ?

**ସ କଦାଚିତ୍ ସରସ୍ୱତ୍ୟା ଉପସ୍ପୃଶ୍ୟ ଜଳଂ ଶୁଚିଃ ।**
**ବିବିକ୍ତ ଏକ ଆସୀନ ଉଦିତେ ରବି ମଣ୍ଡଳେ ।୧୫।**

ଉତ୍ତର : ସ୍ଥାନ ଭାରତରେ ଅବସ୍ଥିତ ସରସ୍ୱତୀ ନଦୀର କୂଳ । ସମୟ ସୂର୍ଯ୍ୟଙ୍କ ଉଦୟ ବେଳା ବ୍ରାହ୍ମ ମୂହୁର୍ତ୍ତ । ମୁନି ନିରୋଳାରେ ପବିତ୍ର ଜଳ ଆଚମନ କରି (ବିବିକ୍ତ ଏକ) ଆସନରେ ବସି ଧ୍ୟାନ ମଗ୍ନ । ଜ୍ଞାନର ପାଚିଲା ଫଳ ବିଷାଦ, ତୀବ୍ର ସଂସାର ବୈରାଗ୍ୟ ।

ପ୍ରଶ୍ନ-୭୯ : ବ୍ୟାସଦେବ ତ୍ରିକାଳଜ୍ଞ (ପର-ଅବରଜ୍ଞଃ) ଋଷି ତାଙ୍କ ଦିବ୍ୟ ଦୃଷ୍ଟି ଶକ୍ତିବଳରେ କ'ଣ ଦେଖିଲେ ସେତେବେଳେ ?

**ପର-ଅବରଜ୍ଞଃ ସ ଋଷିଃ କାଳେନ-ଅବ୍ୟକ୍ତରଂହସା ।**
**ଯୁଗ ଧର୍ମ ବ୍ୟତିକରଂ ପ୍ରାପ୍ତଂ ଭୁବି ଯୁଗେ ଯୁଗେ ।୧୬।**

ଉତ୍ତର : ଆସୁଥିବା ଘୋର କଳିଯୁଗରେ ଲୋକେ ବର୍ଣ୍ଣ ଧର୍ମ-ଆଶ୍ରମ ଧର୍ମ ଇତ୍ୟାଦିକୁ ହତାଦର କରିବେ ।ଲୋକମାନେ ଧର୍ମ ଅଭିମୁଖୀ ନ ହୋଇ ବରଂ ସହଜିଆ, ବିଳାସୀ ଅଧର୍ମ ମାର୍ଗରେ ଜୀବନ ବିତାଇବାକୁ ପସନ୍ଦ କରିବେ । ଧର୍ମ-ଅଧର୍ମ, କର୍ତ୍ତବ୍ୟ-ଅକର୍ତ୍ତବ୍ୟ, ପାପ-ପୁଣ୍ୟ ଓ ଭଲ-ମନ୍ଦ ଜାଣି ମଧ୍ୟ ପାପ କରି ବସିବେ । ପାପ କରିବାରେ ଆନନ୍ଦ ପାଇବେ ।

ପ୍ରଶ୍ନ-୮୦ : ସେତେବେଳେ ଲୋକମାନଙ୍କ ଠାରେ କି କି ଅଶୁଭ ଲକ୍ଷଣ ସବୁ ପ୍ରକାଶ ପାଇବ ?

**ଭୌତିକାନାଂ ଚ ଭାବାନାଂ ଶକ୍ତି ହ୍ରାସଂ ଚ ତତ୍‌କୃତମ୍ ।**
**ଅଶ୍ରଦ୍ଦଧାନାନ୍ ନିଃସତ୍ତ୍ୱାନ୍ ଦୁର୍ମେଧାନ୍ ହ୍ରସିତ-ଆୟୁଷଃ ।୧୭।**

ଉତ୍ତର : ସେମାନେ ଭୋଗବିଳାସରେ ମାତି ଭୌତିକବାଦୀ ବୋଲାଇବେ । ସେମାନଙ୍କ ଇନ୍ଦ୍ରିୟ ଶକ୍ତି କ୍ଷୀଣ ହେବ । ସେମାନେ ଭଗବାନଙ୍କଠାରେ ଶ୍ରଦ୍ଧା ବିଶ୍ୱାସ ହରାଇ ବସିବେ । ରଜୋ ତମୋ ଗୁଣ ଚାପରେ ପଡ଼ି ସତ୍ତ୍ୱଗୁଣୀ ଜ୍ଞାନ, ତ୍ୟାଗ, ବୈରାଗ୍ୟ ଭକ୍ତିରୁ ଦୂରେଇ ଯିବେ । ପ୍ରାୟ ସମସ୍ତେ ମନ୍ଦ (ଅଳ୍ପ) ବୁଦ୍ଧିଆ ହେବେ । ଅନାଚାରୀ, ଦୁରାଚାରୀ, ପାପାଚାରୀ, ଭ୍ରଷ୍ଟାଚାରୀ ହୋଇ ଶତାୟୁଷ ନହୋଇ ଅଳ୍ପାୟୁଷ ହୋଇଯିବେ ।

ପ୍ରଶ୍ନ-୮୧ : ବ୍ୟାସଦେବ (ମୁନିଃ) ତାଙ୍କ ଦିବ୍ୟ ଦୃଷ୍ଟିରେ ଭବିଷ୍ୟତ କଳିଯୁଗୀ ଲୋକଙ୍କର ଦୁଃଖ ଜାଣିପାରିଲେ । ବେଦ ବିହିତ ବର୍ଣ୍ଣାଶ୍ରମ ଧର୍ମ ଲୁପ୍ତ ହୋଇଯିବ । ଲୋକେ ନିଜେ ଦୁର୍ଭାଗ୍ୟ /ପତନ/ପାପ ପ୍ରବୃତ୍ତିକୁ ଡ଼ାକି ଆଣିବେ । ଜଲ୍‌ଦି ନର୍କକୁ ଟିକେଟ କାଟିବାକୁ ଠେଲା ପେଲା ହେବେ । ସୁତରାଂ ଲହୁଣି କୋମଳ ହୃଦୟବାନ ମୁନିଶ୍ରେଷ୍ଠ କ'ଣ ଉପାୟ କଲେ ?

**ଦୁର୍ଭଗାନ୍ ଚ ଜନାନ୍ ବୀକ୍ଷ୍ୟ ମୁନିଃ ଦିବ୍ୟେନ ଚକ୍ଷୁଷା ।**
**ସର୍ବ ବର୍ଣ୍ଣ-ଆଶ୍ରମାଣାଂ ଯତ୍ ଦଧ୍ୟୌ ହିତଂ-ଅମୋଘଦୃକ୍ ।୧୮।**

ଉତ୍ତର : ଭଗବାନଙ୍କର ଜ୍ଞାନ ଅବତାର ବ୍ୟାସଦେବ ୪ବର୍ଣ୍ଣ ଓ ୪ ଆଶ୍ରମ ଲୋକଙ୍କ ହିତ ଉପାୟ ଉଦ୍ଭାବନ ଲାଗି ଧ୍ୟାନରେ ବସିଗଲେ । ହତଭାଗ୍ୟ ଲୋକଙ୍କୁ ଦିବ୍ୟଦୃଷ୍ଟି ଦେବା ତାଙ୍କର ଲକ୍ଷ୍ୟ ରହିଲା ।

ପ୍ରଶ୍ନ-୮୨ : ଯୋଗ ଧ୍ୟାନ ବଳରେ ସେ କ'ଣ ଦେଖିଲେ ?

**ଚାତୁର୍ହୋତ୍ରଂ କର୍ମ ଶୁଦ୍ଧଂ ପ୍ରଜାନାଂ ବୀକ୍ଷ ବୈଦିକମ୍ ।**
**ବ୍ୟଦଧାତ୍ ଯଜ୍ଞ ସନ୍ତତ୍ୟୈଃ ବେଦଂ ଏକଂ ଚତୁର୍ବିଧମ୍ ।୧୯।**

ଉତ୍ତର : ସେତେବେଳକୁ ବେଦ ଗୋଟିଏ ଥିଲା । ବେଦ ବିହିତ ଯଜ୍ଞ କଲେ ମାନବର ଚିତ୍ତ ଶୁଦ୍ଧ ହୁଏ । ସାଥେ ସାଥେ ଜଗତର ବାୟୁମଣ୍ଡଳ-ପ୍ରକୃତିର ପବିତ୍ରତା,ଶୁଦ୍ଧତା ପ୍ରତିଷ୍ଠିତ ହୁଏ । ଧର୍ମ-ଅର୍ଥ-କାମ-ମୋକ୍ଷ ଏହି ୪ ଲକ୍ଷ୍ୟ ପ୍ରାପ୍ତି

ପାଇଁ ଯଥା କ୍ରମେ ଋକ-ଯଜୁଃ-ସାମ-ଅଥର୍ବ ବେଦ ଆକାରରେ ବାଣ୍ଟି ଭିନ୍ନ ଭିନ୍ନ ନାମରେ ୪ ବେଦ ପ୍ରଣୟନ କଲେ । ସେଥିପାଇଁ ତାଙ୍କ ନାମ ବ୍ୟାସ ରଖାଗଲା । (ବ୍ୟାସ ରେଖା ଏକ ଅଖଣ୍ଡ ବୃତ୍ତକୁ ଭାଗ ଭାଗ କରିଥାଏ ।)

ପ୍ରଶ୍ନ-୮୩ : ଲୋକେ ଋକ୍ ବେଦକୁ ଜ୍ଞାନକାଣ୍ଡ, ଯଜୁଃବେଦକୁ କର୍ମକାଣ୍ଡ, ସାମ୍ ବେଦକୁ ଉପାସନା କାଣ୍ଡ ଓ ଅଥର୍ବ ବେଦକୁ ମୋକ୍ଷ ଶାସ୍ତ୍ର କହିଲେ । ତେବେ ଦୁଇ ଇତିହାସ (ରାମାୟଣ, ମହାଭାରତ) ପୁଣି ଅଷ୍ଟାଦଶ ପୁରାଣଙ୍କୁ କ'ଣ କୁହାଗଲା ?

**ଋକ୍-ଯଜୁଃ-ସାମ-ଅଥର୍ବ-ଆଖ୍ୟା ବେଦାଃ ଚତ୍ୱାର ଉଦ୍ଧୃତାଃ ।**
**ଇତିହାସ ପୁରାଣଂ ଚ ପଞ୍ଚମୋ ବେଦ ଉଚ୍ୟତେ ।୨୦।**

ଉତ୍ତର : ୫ମ ବେଦର ମର୍ଯ୍ୟାଦା ପାଇଲେ ସେମାନେ ।

ପ୍ରଶ୍ନ-୮୪ : ଏମାନଙ୍କ ମଧ୍ୟରୁ ୧ମ ୩ ବେଦକୁ ବ୍ୟାସଦେବ କାହାକୁ କାହାକୁ ପଢ଼ାଇଲେ?

**ତତ୍ର ଋକ୍ ବେଦଧରଃ ପୈଲଃ ସାମଗୋ ଜୈମିନିଃ କବିଃ ।**
**ବୈଶମ୍ପାୟନ ଏବ-ଏକୋ ନିଷ୍ଣାତୋ ଯଜୁଷାଂ ଉତ୍ ।୨୧।**

ଉତ୍ତର : କୁହାଯାଏ (ଉତ) ଋକ୍‌ବେଦରେ ପୈଲ, ସାମ୍‌ବେଦରେ ଜୈମିନି ଓ ଯଜୁର୍ବେଦରେ ବୈଶମ୍ପାୟନ ଏଇ ତିନି ବ୍ୟାସ ଶିଷ୍ୟ ଧୁରନ୍ଧର (ନିଷ୍ଣାତୋ) ହେଲେ ।

ପ୍ରଶ୍ନ-୮୫ : ଅନ୍ୟ କେଉଁ କେଉଁ ମହାନ୍ ବ୍ୟାସ ଶିଷ୍ୟମାନେ ଅନ୍ୟାନ୍ୟ ଶାସ୍ତ୍ରରେ ପ୍ରବୀଣ ହେଲେ ?

**ଅଥର୍ବ ଅଙ୍ଗିରସାଂ ଆସୀତ୍ ସୁମନ୍ତୁଃ ଦାରୁଣୋ ମୁନିଃ ।**
**ଇତିହାସ ପୁରାଣାନାଂ ପିତା ମେ ରୋମହର୍ଷଣଃ ।୨୨।**

ଉତ୍ତର : ଅଥର୍ବ ବେଦରେ ଅଙ୍ଗିରସ, ବରୁଣ ନନ୍ଦନ ସୁମନ୍ତୁ ମୁନି ଓ ଇତିହାସ ପୁରାଣରେ ପ୍ରବୀଣ ହେଲେ ମୋର ପିତା ରୋମହର୍ଷଣ । ରାମାୟଣ-ମହାଭାରତ ଓ ଅଷ୍ଟାଦଶ ପୁରାଣ ସତ୍‌ସଙ୍ଗରେ ପାରାୟଣ-ପ୍ରବଚନ କରି ଶ୍ରୋତାମାନଙ୍କ ରୋମକୁ ହର୍ଷ/ଆନନ୍ଦ ଦ୍ୱାରା ଠିଆ ଠିଆ କରେଇପାରୁଥିବାରୁ ଶ୍ରୋତାମାନେ ତାଙ୍କୁ ଶ୍ରଦ୍ଧାରେ ରୋମହର୍ଷଣ ବୋଲି ଡ଼ାକୁଥିଲେ ।

ପ୍ରଶ୍ନ-୮୬ : ଏହି ପାଞ୍ଚ ଋଷିଙ୍କ ଠାରୁ ଶିଷ୍ୟ ପ୍ରଶିଷ୍ୟ କ୍ରମେ ଅନେକ / ଅସଂଖ୍ୟ ଗୁରୁ ପରମ୍ପରାରେ ବେଦର ଅନେକ ଶାଖା ପ୍ରଣୀତ ହେଲା । ବ୍ୟାସଦେବ ଦେଖିଲେ-ସ୍ତ୍ରୀ, ଶୂଦ୍ର, ପତିତ ବ୍ରାହ୍ମଣମାନଙ୍କ ପକ୍ଷେ ବେଦର ତାତ୍ପର୍ଯ୍ୟ/ଅସଲି ଅର୍ଥ ବୁଝିବା ଅସମ୍ଭବ । ଅତଏବ ଏଭଳି ଶାସ୍ତ୍ର ଅପାଠୁଆ ଲୋକଙ୍କର (ମୂଢ଼ାନାଂ) କର୍ମବନ୍ଧନରୁ ମୁକ୍ତି ଲାଗି କେଉଁ କଲ୍ୟାଣକର ଗ୍ରନ୍ଥ ପ୍ରଣୟନ କରିଥିଲେ ?

**ସ୍ତ୍ରୀ ଶୂଦ୍ର ଦ୍ୱିଜ ବନ୍ଧୁନାଂ ତ୍ରୟୀ ନ ଶ୍ରୁତିଗୋଚରା ।**
**କର୍ମଶ୍ରେୟସି ମୂଢ଼ାନାଂ ଶ୍ରେୟ ଏବଂ ଭବେତ୍ ଇହ ।।**
**ଇତି ଭାରତଂ ଆଖ୍ୟାନଂ କୃପୟା ମୁନିନା କୃତମ୍ ।୨୫।**

ଉତ୍ତର : ୧ ଲକ୍ଷ ଶ୍ଳୋକ ବିଶିଷ୍ଟ ୪ଲକ୍ଷ୍ୟ (ଧର୍ମ-ଅର୍ଥ-କାମ-ମୋକ୍ଷ) ସାଧନକାରୀ ୧୮ ପର୍ବ ବାଲା ଉପନିଷଦର ସାର ଗୀତା ଧାରଣକାରୀ ପୃଥିବୀର ଦୀର୍ଘତମ ଗ୍ରନ୍ଥ ମହାଭାରତ ।

ପ୍ରଶ୍ନ-୮୭ : ହେ ଶୌନକାଦି ମୁନିଗଣ, ମହାଭାରତ, ଅଷ୍ଟାଦଶ ପୁରାଣ, ଅଧ୍ୟାତ୍ମ ରାମାୟଣ, ପତଞ୍ଜଳି ଯୋଗ ସୂତ୍ରର ଭାଷ୍ୟ, ବେଦାନ୍ତ ସୂତ୍ର ଇତ୍ୟାଦି ଲୋକ କଲ୍ୟାଣକର ଗ୍ରନ୍ଥ ପ୍ରଣୟନରେ କ'ଣ ବ୍ୟାସମୁନିଙ୍କର ନିଜ, ଇନ୍ଦ୍ରିୟ, ମନ, ବୁଦ୍ଧି ଓ ଆତ୍ମାକୁ ଶାନ୍ତି ମିଳିଲା ?

**ଏବଂ ପ୍ରବୃତ୍ତସ୍ୟ ସଦା ଭୂତାନାଂ ଶ୍ରେୟସି ଦ୍ୱିଜାଃ ।**
**ସର୍ବ-ଆତ୍ମକେନ-ଅପି ଯଦା ନ-ଅତୁଷ୍ୟତ୍ ହୃଦୟଂ ତତଃ ।୨୬।**

ଉତ୍ତର : ନା କଦାପି ମିଳିଲାନି । ବରଂ ତାଙ୍କ ଜ୍ଞାନ ସମୁଦ୍ରରେ ବିଷାଦ ଅସନ୍ତୋଷର ଉତ୍ତାଳ ତରଙ୍ଗମାଳା ଉପୁଜିଲା ସ୍ୱୟଂ ଭଗବାନଙ୍କର ଜ୍ଞାନ ଅବତାର ହୋଇ ତାଙ୍କ କର୍ମ କିଛି ଅସଂପୂର୍ଣ୍ଣ ରହିଗଲା ବୋଲି ।

ପ୍ରଶ୍ନ-୮୮ : ମନରେ ଏଭଳି ଅସନ୍ତୋଷ ବିଷାଦ ଆସିବାରୁ ହରିନାମ ମନ୍ତ୍ର ଉଚ୍ଚାରଣ କରି କାୟ ମନୋ ବାକ୍ୟରେ ସେ ଶୁଚି ହେଲେ । ସରସ୍ୱତୀ ନଦୀ କୂଳରେ ଗଭୀର ଧ୍ୟାନରେ ବୁଡ଼ିଗଲେ । ଶେଷରେ ସେ ବିଷାଦର କି କାରଣ ଖୋଜି ପାଇଲେ ?

**କିଂ ବା ଭାଗବତ ଧର୍ମା ନ ପ୍ରାୟେଣ ନିରୂପିତାଃ ।**
**ପ୍ରିୟାଃ ପରମହଂସାନାଂ ତେ ଏବ ହି-ଅଚ୍ୟୁତପ୍ରିୟାଃ ।୩୧।**

ଉତ୍ତର : ହଁ ହଁ ମନେ ପଡ଼ିଲା ଏଥର । ଧର୍ମ ଶାସ୍ତ୍ର, ଅର୍ଥଶାସ୍ତ୍ର, କାମ ଶାସ୍ତ୍ର ଓ ମୋକ୍ଷ ଶାସ୍ତ୍ର ସିନା ବ୍ୟାଖ୍ୟା କଲି । ହେଲେ ଶ୍ରୀହରିଙ୍କୁ ପ୍ରସନ୍ନ କରୁଥବା ମୋକ୍ଷକୁ ତୁଚ୍ଛ ଭାବୁଥିବା ପ୍ରେମ ଖୋଜୁଥିବା ଜଡ଼ ଭରତ ଋଷଭ, କପିଳ, ସନକାଦିକ ଆତ୍ମାରାମ ଜ୍ଞାନୀ ପରମହଂସ ଓ ନାରଦ, ହନୁମାନ, ବ୍ରଜ ଗୋପିକାଙ୍କ ଭଳି ଆପ୍ତ କାମ ଭକ୍ତ ପରମହଂସଙ୍କ ପ୍ରିୟ ପ୍ରେମଶାସ୍ତ୍ର କାହିଁ ? ଯେଉଁ ଗ୍ରନ୍ଥ ଭାଗବତ ଶ୍ରବଣ, କୀର୍ତ୍ତନ, ମନନ (ସ୍ମରଣ) କରି ଭକ୍ତ ହୁଏ ଭକ୍ତ ଭାଗବତ।

ପ୍ରଶ୍ନ-୮୯: ଏଭଳି ବିଷଣ୍ଣ ଅବସ୍ଥାରେ ବ୍ୟାସଜୀ (କୃଷ୍ଣସ୍ୟ) କ'ଣ ସନ୍ଦର୍ଶନ କଲେ?

**ତସ୍ୟ-ଏବଂ ଖିଳଂ ଆତ୍ମାନଂ ମନ୍ୟ ମାନସ୍ୟ ଖିଦ୍ୟତଃ ।**
**କୃଷ୍ଣସ୍ୟ ନାରଦୋଽଭ୍ୟଗାତ୍ ଆଶ୍ରମଂ ପ୍ରାକ୍ ଉଦାହୃତମ୍ ।୩୨।**

ଉତ୍ତର : ତାଙ୍କ ଆଶ୍ରମରେ ସ୍ୱୟଂ ଦେବର୍ଷି ନାରଦ ପ୍ରକଟ ହେଲେଣି । ନାରଦଜୀ ଭଗବାନଙ୍କର ଭକ୍ତ ଅବତାର । (ପୂର୍ବେ ୩ୟ ଅଧ୍ୟାୟ ୮ମ ଶ୍ଳୋକରେ ସେ ୨୨ ଅବତାର ମଧ୍ୟରୁ ୩ୟ ଅବତାର ଭାବରେ ଗଣାଯାଇଛନ୍ତି ।)

# ଅଥ ୫ମ ଅଧ୍ୟାୟଃ

## (ବ୍ୟାସଦେବଙ୍କୁ ନାରଦଜୀଙ୍କ ଭାଗବତ ଜ୍ଞାନ ପ୍ରଦାନ)

### ସୂତ ଉବାଚ

ପ୍ରଶ୍ନ-୯୦ : ବ୍ୟାସଜୀ ଆସନରୁ ଉଠି ଭଗବନାଙ୍କର କଥା ଶ୍ରବଣ ରସିକ (ବୃହତ୍ ଶ୍ରବା) ଦେବର୍ଷିଙ୍କୁ ଉପଯୁକ୍ତ ପାଦ୍ୟ ଆସନ ଆଦି ଦେଲେ । ପ୍ରେମ ଗଦ୍‌ଗଦ୍ କଣ୍ଠରେ ଅଭିବାଦନ କଲେ । ବ୍ୟାସଜୀ ଆସନ ଗ୍ରହଣ କରନ୍ତେ ଦେବର୍ଷି ନାରଦ ହସ୍ତରେ ବୀଣା ଧରି ଈଷତ୍ ହସି କ'ଣ କହିଲେ ?

**ଅଥ ତଂ ସୁଖଂ ଆସୀନ ଉପାସୀନଂ ବୃହତ୍ ଶ୍ରବାଃ ।**
**ଦେବର୍ଷିଃ ପ୍ରାହ ବିପ୍ରର୍ଷିଂ ବୀଣାପାଣିଃ ସ୍ମୟନ୍ ଇବ ।୧।**

ଉତ୍ତର : ବ୍ୟାସଜୀଙ୍କ ପାରମାର୍ଥିକ କୁଶଳ-ମଙ୍ଗଳ ପଚାରି ବସିଲେ ।

**ନାରଦ ଉବାଚ**

ପ୍ରଶ୍ନ-୯୧ : ନାରଦଜୀ ଦେଖିସାରିଲେଣି ପରାଶର ପୁତ୍ର ବ୍ୟାସଜୀଙ୍କ ବିଷାଦଭରା ମୁଖ ମଣ୍ଡଳ ମଳିନ । ଅତ୍ୟନ୍ତ ସାବଧାନତା ସହିତ ସେ କିପରି ଶବ୍ଦରେ ବେଦବ୍ୟାସଙ୍କର ଦୁଃଖର କାରଣ ଜିଜ୍ଞାସା କଲେ ?

**ପାରାଶର୍ଯ୍ୟ ମହାଭାଗ ଭବତଃ କଚ୍ଚିତ୍ ଆତ୍ମନା ।**
**ପରିତୁଷ୍ୟତି ଶାରୀର ଆତ୍ମା ମାନସ ଏବ ବା ।୨।**

ଉତ୍ତର : କହିଲେ, ''ହେ ପରାଶର ପୁତ୍ର ମହାନୁଭବ ଯୋଗୀରାଜ, ଆପଣଙ୍କ ଶରୀର, ମନ ଓ ଆତ୍ମା ସୁସ୍ଥ ତ ?''

ପ୍ରଶ୍ନ-୯୨ : ନାରଦଜୀ ପୁଣି ଆଶ୍ୱାସନା ବାଣୀ ଶୁଣାଇଲେ । ଆପଣଙ୍କ ଆତ୍ମା ପ୍ରସନ୍ନ ହେବା କଥା ତ । ଆପଣ ଧର୍ମ-ଅର୍ଥ-କାମ-ମୋକ୍ଷ ଲକ୍ଷ୍ୟ ପ୍ରାପକ (ସର୍ବାର୍ଥ ପରିବୃଂହିତଂ) ବିଶାଳ ସଂହିତା ମହାଭାରତ ରଚନା କରିସାରିଛନ୍ତି । ଏସବୁ କହିସାରି ପୁଣିଥରେ ନାରଦଜୀ ଦୁଃଖର କାରଣ କ'ଣ ବୋଲି ପ୍ରଶ୍ନ କଲେ ?

**ଜିଜ୍ଞାସିତଂ ସୁସମ୍ପନ୍ନଂ ଅପି ତେ ମହତ୍ ଅଦ୍ଭୁତମ୍ ।**
**କୃତବାନ୍ ଭାରତଂ ଯଃ ତ୍ୱଂ ସର୍ବ-ଅର୍ଥ ପରିବୃଂହିତମ୍ ।୩।**

ଉତ୍ତର : ଆପଣଙ୍କର ଜ୍ଞାନ ଅବତାରରେ କଳିଯୁଗ ପାଇଁ ଉଦ୍ଦିଷ୍ଟ ଲୋକ କଲ୍ୟାଣକାରୀ ଜିଜ୍ଞାସା, ଶାସ୍ତ୍ର ପ୍ରଣୟନ ପୂର୍ଣ୍ଣ ହେଲା ତ ?

ପ୍ରଶ୍ନ-୯୩ : ସନାତନ ବ୍ରହ୍ମ ତତ୍ତ୍ୱ ଉପରେ ଆପଣ ଗମ୍ଭୀର ମନନ ଧ୍ୟାନ ଓ ଅନୁଶୀଳନ କରିଛନ୍ତି । ସେ ସବୁକୁ ଅନୁଭବ ମଧ୍ୟ କରିଛନ୍ତି ବୋଲି କହି ନାରଦଜୀ ପୁଣି କି ପ୍ରଶ୍ନ କରିବସିଲେ ବେଦବ୍ୟାସ ମହାଶୟଙ୍କୁ ?

**ଜିଜ୍ଞାସିତଂ ଅଧୀତଂ ଚ ବ୍ରହ୍ମ ଯତ୍ ତତ୍ ସନାତନମ୍ ।**
**ତଥାପି ଶୋଚସି-ଆତ୍ମନଂ ଅକୃତ-ଅର୍ଥ ଇବ ପ୍ରଭୋ ।୪।**

ଉତ୍ତର: ନାରଦଜୀ କହିଲେ, ''ହେ ପ୍ରଭୋ (ବ୍ୟାସଜୀ)-ତଥାପି ଆପଣଙ୍କ ମନରେ ଅସନ୍ତୋଷ !! କେଉଁ ଲକ୍ଷ୍ୟ ଆପଣଙ୍କର ଅସଂପୂର୍ଣ୍ଣ (ଅକୃତ-ଅର୍ଥ) ରହିଗଲା କି ?''

ବ୍ୟାସ ଉବାଚ

ପ୍ରଶ୍ନ-୯୪ : ବ୍ୟାସଦେବ ଉତ୍ତରରେ ସବୁ କଥା ମାନିଗଲେ । ମହାଭାରତ, ୧୮ ପୁରାଣ ଆଦି ସବୁ ଗ୍ରନ୍ଥସେ ଅବଶ୍ୟ ରଚନା କଲେ । ତଥାପି ତାଙ୍କ ମନରେ ଜଳୁଛି ଅସନ୍ତୋଷ-ଅଗ୍ନି । ଶେଷରେ ନାରଦଜୀଙ୍କୁ ଅଗାଧ ଜ୍ଞାନ ସାଗର, ବେଦଗର୍ଭ ବ୍ରହ୍ମାଜୀଙ୍କ ସୁଯୋଗ୍ୟ ମାନସ ପୁତ୍ର କହି କ'ଣ ଜିଜ୍ଞାସା କଲେ ସେ ?

**ଅସ୍ତିଏବ ମେ ସର୍ବଂ ଇଦଂ ତ୍ୱୟା-ଉକ୍ତଂ**
**ତଥାପି ନ-ଆତ୍ମା ପରିତୁଷ୍ୟତେ ମେ ।**
**ତତ୍ ମୂଳଂ ଅବ୍ୟକ୍ତଂ ଅଗାଧ ବୋଧଂ**
**ପୃଚ୍ଛାମହେ ତ୍ୱାଂ-ଆତ୍ମଭବ-ଆତ୍ମଭୂତମ୍ ।୫।**

ଉତ୍ତର : ନିଜ ମନ ଅସନ୍ତୋଷର କାରଣ ନାରଦଙ୍କୁ ଜିଜ୍ଞାସା କଲେ ।

ପ୍ରଶ୍ନ-୯୫ : ବ୍ୟାସଜୀ ସଙ୍ଗେ ସଙ୍ଗେ ଅକୁଣ୍ଠିତ ଚିତ୍ତରେ ନାରଦଜୀଙ୍କ ଗୁଣଗାନ କରିବାରେ ଲାଗିଲେ । ସେ ବିଷ୍ଣୁ ମାୟାରୁ ଅତୀତ ପୁରୁଷ । ସୂର୍ଯ୍ୟଦେବଙ୍କ ଭଳି ଜ୍ଞାନ ଆଲୋକ, ବ୍ରହ୍ମ ତେଜରେ ଯୁକ୍ତ ମଧ୍ୟ । ଜୀବର ଗଭୀର ମନ ପ୍ରଦେଶରେ ବିଦ୍ୟମାନ ରହସ୍ୟର ଜ୍ଞାତା ନାରଦଜୀ । ଅତଏବ ବ୍ୟାସଦେବଙ୍କ ମନ ଅସନ୍ତୋଷର କାରଣ ତାଙ୍କୁ ନିଶ୍ଚୟ ଜଣାଥିବ ବୋଲି କହିବାରୁ ନାରଦଜୀ ଉତ୍ତରରେ କ'ଣ କହିଲେ ?

ନାରଦ ଉବାଚ

**ଭବତା-ଅନୁଦିତ ପ୍ରାୟଂ ଯଶୋ ଭଗବତୋଽମଳମ୍ ।**
**ଯେନ-ଏବ-ଅସୌ ନ ତୁଷ୍ୟେତ ମନ୍ୟେ ତତ୍ ଦର୍ଶନଂ ଖିଳମ୍ ।୮।**

ଉତ୍ତର : ହେ ବ୍ୟାସଦେବ, ଭଗବାନଙ୍କ ପବିତ୍ର ଯଶ କଥା ମହିମା ଯେଉଁ ଶାସ୍ତ୍ରରେ ବର୍ଣ୍ଣିତ ହୋଇନି ସେ ପୁଣି କେଉଁ ଶାସ୍ତ୍ରରେ ଲେଖା ? ତାକୁ ଲେଖି, ପଢ଼ି ବା ଶ୍ରବଣ କରି ଲେଖିବା ଲୋକ, ପାଠକ ବା ଶ୍ରୋତା କେଉଁ ଚିତ୍ତ ପ୍ରସନ୍ନତା ଲାଭ କରିପାରିବ ? ଅର୍ଥାତ୍ ଆଦୌ ପାଇବ ନାହିଁ ।

ପ୍ରଶ୍ନ-୯୬ : ଏଥରକ ବ୍ୟାସଦେବଙ୍କର ଜ୍ଞାନ ସାଧନାରେ କ'ଣ ଅପୂର୍ଣ୍ଣ ରହିବା କଥା ନାରଦଜୀ ସିଧାସଳଖ ପ୍ରକାଶ କଲେ ?

**ଯଥା ଧର୍ମ-ଆଦୟଃ ଚ-ଅର୍ଥା ମୁନିବର୍ଯ୍ୟ-ଅନୁକୀର୍ତ୍ତିତାଃ ।**
**ନ ତଥା ବାସୁଦେବସ୍ୟ ମହିମା ହି-ଅନୁବର୍ଣ୍ଣିତଃ ।୯।**

ଉତ୍ତର : ମହାଭାରତ ଗ୍ରନ୍ଥରେ ୪ ପୁରୁଷାର୍ଥ ପ୍ରାପ୍ତିର ଉପାୟ ସିନା ବର୍ଣ୍ଣନା କଲେ ଆପଣ । ୫ମ ପୁରୁଷାର୍ଥ ପ୍ରେମ ପ୍ରାପ୍ତି ପାଇଁ ଉଦ୍ଦିଷ୍ଟ ବାସୁଦେବ ଶ୍ରୀକୃଷ୍ଣଙ୍କ ମହିମା ପ୍ରଖ୍ୟାପକ ଭକ୍ତି ବା ଭାଗବତ କଥା ତ ଲେଖି ନାହାନ୍ତି ଏ ପର୍ଯ୍ୟନ୍ତ !!!

ପ୍ରଶ୍ନ-୯୭ : ଯେଉଁ କାବ୍ୟରେ ରସ-ଭାବ-ଅଳଙ୍କାର ପୂରି ରହିଛି ମାତ୍ର ଜଗତ୍ ପବିତ୍ର କାରକ କୃଷ୍ଣ ଯଶ ଗାଥା ବର୍ଣ୍ଣନ ନାହିଁ ତାହା ଆଦୌ ପବିତ୍ର ନୁହେଁ । ବରଂ ସେ ସବୁ କାଉଙ୍କୁ ପଚାସଢ଼ା ଖାଦ୍ୟ ଫିଙ୍ଗିବା ସ୍ଥାନ (ବୟସ ତୀର୍ଥ) ଅଟେ । ଭକ୍ତ ବା ହଂସମାନେ ସେ ସ୍ଥାନକୁ ପସନ୍ଦ କରିନଥାନ୍ତି । ତେବେ ହରି କଥା ଗ୍ରନ୍ଥ କି ପ୍ରକାର ହେବା କଥା ଓ ହେବା କଥା ନୁହେଁ ବୋଲି ନାରଦଜୀ ଟିପ୍‌ପଣୀ କଲେ ?

**ନ ଯତ୍ ବଚଃ ଚିତ୍ରପଦଂ ହରେଃ ଯଶୋ**
**ଜଗତ୍ ପବିତ୍ରଂ ପ୍ରଗୃଣୀତ କର୍ହିଚିତ୍ ।**
**ତତ୍ ବାୟସଂ ତୀର୍ଥଂ ଉଶନ୍ତି ମାନସା**
**ନ ଯତ୍ର ହଂସା ନିରମନ୍ତି ଉଶିକ୍ କ୍ଷୟାଃ ।୧୦।**

ଉତ୍ତର : ତାହା ତ ମାନସରୋବରରେ କମନୀୟ କମଳବନରେ ବିହାର କରୁଥିବା ହଂସମାନଙ୍କ ପ୍ରିୟସ୍ଥାନ ନୁହେଁ । ସେଭଳି ହରି କଥା ବିହୀନ ଗ୍ରନ୍ଥରେ ଭଗବାନଙ୍କର ଅତି ପ୍ରିୟ ପରମହଂସ ଭକ୍ତମାନେ ଆଦୌ ରମଣ କରିନଥାନ୍ତି ।

ପ୍ରଶ୍ନ-୯୮ : ସତ୍ ପୁରୁଷମାନେ କିଭଳି ସଦ୍‌ଗ୍ରନ୍ଥରେ ପ୍ରସନ୍ନ ରହନ୍ତି ?

**ତତ୍ ବାକ୍ ବିସର୍ଗୋ ଜନତା-ଅଘ-ବିପ୍ଳବୋ**
**ଯସ୍ମିନ୍ ପ୍ରତି ଶ୍ଳୋକଂ-ଅବଦ୍ଧ ବତି-ଅପି ।**
**ନାମାନି-ଅନନ୍ତସ୍ୟ ଯଶୋଽଙ୍କିତାନି ଯତ୍**
**ଶୃଣ୍ୱନ୍ତି ଗାୟନ୍ତି ଗୃଣ୍ୱନ୍ତି ସାଧବଃ ।୧୧।**

ଉତ୍ତର : ବିପରୀତ ପକ୍ଷେ ତାହା ଅଳଂକାର ଶୂନ୍ୟ ବ୍ୟାକରଣ ଦୋଷଯୁକ୍ତ ଗ୍ରନ୍ଥ/କାବ୍ୟ ହୋଇପାରେ । କିନ୍ତୁ ଯଦି ସେଥିରେ ଶ୍ରୀହରିଙ୍କ ନାମ-ଗୁଣ-ଲୀଳା ମାହାତ୍ମ୍ୟ ବର୍ଣ୍ଣନା ଥାଏ ତେବେ ତାହା ଶ୍ରବଣ, କୀର୍ତ୍ତନ,ସ୍ମରଣ କାରୀଙ୍କର ସକଳ

ପାପନାଶ କରିପାରେ । ତାହା ସାଧୁ ବୈଷ୍ଣବଙ୍କର ଅତ୍ୟନ୍ତ ଆଦରଣୀୟ ଗ୍ରନ୍ଥ ।

ପ୍ରଶ୍ନ-୯୯ : ଯେଉଁ କର୍ମ, ଜ୍ଞାନ, ଯୋଗ ଶ୍ରୀହରିଙ୍କୁ ପ୍ରସନ୍ନ କରିବାକୁ ଉଦ୍ଦିଷ୍ଟ ନୁହେଁ ସେସବୁ ନିଷ୍କାମ ହେଲେ ମଧ୍ୟ ଈଶ୍ୱରାର୍ପିତ ହେଉ ନଥିବାରୁ ବ୍ୟର୍ଥ ଅଟନ୍ତି । ଏପରି ଅବସ୍ଥାରେ ସକାମ କର୍ମ (ଦେହ,ଗୃହ,ସ୍ୱର୍ଗ,ମାନ, ପ୍ରତିଷ୍ଠା ସିଦ୍ଧି ଉଦ୍ଦେଶ୍ୟରେ କରାଯାଉଥିବା କର୍ମ, ଜ୍ଞାନ, ଯୋଗ, ଭକ୍ତିର ସ୍ଥାନ କେଉଁଠି ବୋଲି ନାରଦଜୀ ଓଲଟ ପ୍ରଶ୍ନ କଲେ ?

**ନୈଷ୍କର୍ମ୍ୟଂ ଅପି-ଅଚ୍ୟୁତ ଭାବ ବର୍ଜିତଂ**

**ନ ଶୋଭତେ ଜ୍ଞାନଂ ଅଳଂ ନିରଞ୍ଜନମ୍ ।**

**କୁତଃ ପୁନଃ ଶଶ୍ୱତ୍ ଅଭଦ୍ରଂ ନ ଚ-ଅର୍ପିତଂ**

**କର୍ମ ଯତ୍ ଅପି-ଅକାରଣମ୍ ।୧୨।**

ଉତ୍ତର : ଭକ୍ତପାଇଁ ନିଷ୍କାମ, କର୍ମ-ଜ୍ଞାନ-ଯୋଗ ସବୁ ଭକ୍ତି, ହୀନ ହେଲେ ଅତ୍ୟନ୍ତ ଅଶୋଭନୀୟ ଅତଏବ ବର୍ଜନୀୟ ବା ଅକରଣୀୟ ମାତ୍ର । ସୁତରାଂ ସେ ସବୁର ଫଳ ପରମାତ୍ମାଙ୍କୁ ପ୍ରସନ୍ନ କରିବାକୁ ଉଦ୍ଦିଷ୍ଟ ହେବା ଦରକାର । ଭକ୍ତି ଯୁକ୍ତ ହେଲେ ସକାମ-ନିଷ୍କାମ ଉଭୟ କର୍ମ-ଜ୍ଞାନ-ଯୋଗ ସାଧନା ସବୁ ବନ୍ଦନୀୟ ହୁଅନ୍ତି ।

ପ୍ରଶ୍ନ-୧୦୦: ଶେଷରେ ନାରଦଜୀ ବ୍ୟାସଦେବଙ୍କୁ ମହାନୁଭବ, ଦିବ୍ୟ ଦୃଷ୍ଟି ସମ୍ପନ୍ନ ହରିକଥା ଶ୍ରବଣେଚ୍ଛୁ, ସତ୍ୟ ପରାୟଣ ଓ ବ୍ରତଧାରୀ ବୋଲି ପ୍ରଶଂସା କରି କି ଆଦେଶ ଦେଲେ?

**ଅଥୋ ମହାଭାଗ ଭବାନ୍ ଅମୋଘଦୃକ୍**

**ଶୁଚିଶ୍ରବାଃ ସତ୍ୟରତୋ ଧୃତବ୍ରତଃ ।**

**ଉରୁକ୍ରମସ୍ୟ-ଖିଳ-ବନ୍ଧମୁକ୍ତୟେ**

**ସମାଧିନା-ଅନୁସ୍ମର ତତ୍ ବିଚେଷ୍ଟିତମ୍ ।୧୩।**

ଉତ୍ତର : ବାମନ ଅବତାରଧାରୀ (ଉରୁକ୍ରମସ୍ୟ) ଶ୍ରୀକୃଷ୍ଣଙ୍କର ଲୀଳା କଥା ଧ୍ୟାନରେ ସ୍ମରଣ କରିବାକୁ କହିଲେ । କାରଣ କେବଳ ସେଇ ଭାଗବତ ଲୀଳା କଥା (ବିଚେଷ୍ଟିତମ୍) ଶ୍ରବଣ, କୀର୍ତ୍ତନ ସ୍ମରଣ ବା ମନନ ଭଗବାନଙ୍କ ଦୂରତ୍ୟୟା ମାୟା ବନ୍ଧନରୁ ମୁକ୍ତ କରିପାରିବ ।

ପ୍ରଶ୍ନ-୧୦୧ : କଳିଯୁଗରେ ଲୋକେ ପ୍ରାୟତଃ ଭୋଗବିଳାସୀ ହେବେ । ଧର୍ମ-ମୋକ୍ଷ ଉଭୟ ଲକ୍ଷ୍ୟ ପ୍ରାପ୍ତି ଅତ୍ୟନ୍ତ କଷ୍ଟକର ଭାବି ତାର ସାଧନ ପାଇଁ ଆଦୌ ଆଗ୍ରହ କରିବେ ନାହିଁ । ଧର୍ମ ନାମରେ ପଶୁପକ୍ଷୀ ହତ୍ୟାକରି ଖାଇବା ପାଇଁ ନାମକୁ ମାତ୍ର ଯଜ୍ଞ ବା ପୂଜନ କରିବା ବାହାନା କରି ଘୃଣ୍ୟ(ଜୁଗୁପ୍‌ସିତଂ) ପଶୁହତ୍ୟା କରିବେ । ମୋକ୍ଷ ରୂପୀ ଲକ୍ଷ୍ୟ ସଂପୂର୍ଣ୍ଣ ଭୁଲିଯିବେ (ମହାନ୍ ବ୍ୟତିକ୍ରମଃ)। ସୁତରାଂ କେଉଁ ଲକ୍ଷ୍ୟ ପୂର୍ତ୍ତି ପାଇଁ ଲାଗିବେ ସେମାନେ ?

**ଜୁଗୁପ୍‌ସିତଂ ଧର୍ମକୃତେଽନୁଶାସତଃ**

**ସ୍ୱଭାବ ରକ୍ତସ୍ୟ ମହାନ୍ ବ୍ୟତିକ୍ରମଃ ।**

**ଯତ୍ ବାକ୍ୟତୋ ଧର୍ମ ଇତି-ଇତରଃ ସ୍ଥିତୋ**

**ନ ମନ୍ୟତେ ତସ୍ୟ ନିବାରଣଂ ଜନଃ ।୧୫।**

ଉତ୍ତର : ଅଧର୍ମକୁ ଧର୍ମ ଭାବିବେ (ଧର୍ମଃ ଇତି ଇତରଃ ସ୍ଥିତୋ) । ଅଧର୍ମ ମାର୍ଗରେ ସହଜରେ, ଅନ୍ୟକୁ ଠକି, ଡ଼ରାଇ ଅର୍ଥ ଉପାର୍ଜନ କରିବାକୁ ବରଂ ପସନ୍ଦ କରିବେ । ମୋକ୍ଷ କାମନା ପୂରଣ କରିବାକୁ ଅନାଗ୍ରହୀ ହୋଇ ବିଳାସ, ବ୍ୟସନ ଭୋଗ କାମନା ପୂରଣରେ ଲାଗିବେ । ସେଥିରୁ ସେମାନଙ୍କ ମନକୁ ହଟାଇବା ଅସମ୍ଭବ ହୋଇପଡ଼ିବ ଶାସକ, ସାଧୁ, ବୈଷ୍ଣବଙ୍କ ପକ୍ଷେ (ନ ମନ୍ୟତେ ତସ୍ୟ ନିବାରଣଂଜନଃ) ।

ପ୍ରଶ୍ନ-୧୦୨ : ଏଥରକ ନାରଦଜୀ ସ୍ୱଧର୍ମ-ପାଳନ ଓ ସଂସାରୀ କାମନାଶୂନ୍ୟ ଭକ୍ତି ମଧ୍ୟରେ ତୁଳନା କଲେ । କହିଲେ-ଯଦି ଜଣେ ସ୍ୱଧର୍ମ ପାଳନ କରୁକରୁ ଭକ୍ତିମାର୍ଗ ପ୍ରତି ଅନୁରକ୍ତ ହୋଇ ସ୍ୱଧର୍ମ ତ୍ୟାଗ କରି ଭକ୍ତିକରିବାରେ ଲାଗେ, ଭକ୍ତି ପରିପକ୍ୱ ନ ହେଉଣୁ ତାର ଭୁଲଭଟକା ଯୋଗୁଁ ପତନ ହୋଇଯାଏ ତଥାପି ଭଗବାନ ସ୍ୱୟଂ ତାର ଉଦ୍ଧାର କରିଥାନ୍ତି । ଅପର ପକ୍ଷରେ ଜଣେ ହରିଭଜନ ନ କରି କେବଳ ସ୍ୱଧର୍ମପାଳନ କରେ ତେବେ ତାକୁ କି ଫଳ ମିଳେ ?

**ତ୍ୟକ୍ତ୍ୱା ସ୍ୱଧର୍ମଂ ଚରଣାମ୍ବୁଜଂ ହରେଃ**

**ଭଜନ୍ ଅପକ୍ୱୋଽଥ ପତେତ୍ ତତୋ ଯଦି ।**

**ଯତ୍ର କ୍ୱୋ ବା-ଅଭଦ୍ରଂ ଅଭୂତ୍ ଅମୁଷ୍ୟ କିଂ**

**କୋ ବା-ଅର୍ଥ ଆପ୍ତୋଽଭଜତାଂ ସ୍ୱଧର୍ମତଃ ।୧୭।**

ଉତ୍ତର : ସ୍ୱଧର୍ମ ପାଳନରେ ତ୍ରୁଟି ହେଲେ ଦଣ୍ଡ ଭୋଗିବାକୁ ପଡ଼େ ବିଚରାକୁ । କେହି ପିଠିରେ ପଡ଼ନ୍ତି ନାହିଁ । କିନ୍ତୁ ସକାମ କର୍ମ ହେଉ ପଛକେ ସାଧକ ଭକ୍ତି କରୁଥିଲେ ସାଧୁ ବୈଷ୍ଣବଙ୍କ କୃପାରୁ କ୍ରମେ ସେ ନିଷ୍କାମ ହୋଇପାରେ । ତ୍ରୁଟି ବିଚ୍ୟୁତ ହେବା କଥାର ସୂଚନା ଦେଇ ସେମାନେ ତାକୁ ସଦା ସତର୍କ କରାଇ ଦେଇଥାଆନ୍ତି । ସେ କଲ୍ୟାଣ ମାର୍ଗରେ ଦୌଡ଼ୁଥାଏ।

ପ୍ରଶ୍ନ-୧୦୩ : ମନୁଷ୍ୟର ତପ, ବ୍ରତ, ଯଜ୍ଞ, ଦାନ, ବେଦାଧ୍ୟୟନ ଆଦି ସ୍ୱଧର୍ମ ପାଳନର ଏକ ମାତ୍ର ଲକ୍ଷ୍ୟ ପୁଣ୍ୟକୀର୍ତ୍ତି ଭଗବାନଙ୍କ ନାମ-ରୂପ-ଲୀଳା-ଗୁଣ ଗାନ କରି ତାଙ୍କୁ ପ୍ରସନ୍ନ କରିବା । ଅନ୍ୟ ବାକ୍ୟରେ ସଂସାରରୂପୀ ଶ୍ରୀହରି ବିଷ୍ଣୁଙ୍କ ସେବା କରିବା । ଏ କଥାଟିକୁ ପ୍ରାଞ୍ଜଳ ଭାବରେ ବୁଝାଇବାକୁ ନିଜ ପୂର୍ବ ଜନ୍ମର ସାଧନ ଓ ଫଳ ପ୍ରାପ୍ତି ବିଷୟ ଉଦାହରଣଟିଏ ଉପସ୍ଥାପନ କରି ନାରଦଜୀ କ'ଣ କହିଲେ ?

**ଅହଂ ପୁରା-ଅତୀତ ଭବେଽଭବଂ ମୁନେ**
**ଦାସ୍ୟାଃ ତୁ କସ୍ୟାଶ୍ଚନ ବେଦବାଦିନାମ୍ ।**
**ନିରୂପିତୋ ବାଳକ ଏବ ଯୋଗିନାଂ**
**ଶୁଶ୍ରୂଷଣେ ପ୍ରାବୃଷି ନିର୍ବିବିକ୍ଷତାମ୍ ।୨୩।**

ଉତ୍ତର : ହେ ବ୍ୟାସମୁନି ଶୁଣନ୍ତୁ- ପୂର୍ବ କଳ୍ପରେ ଜଣେ ଦାସୀ କେତେକ ବୈଦିକ ବ୍ରାହ୍ମଣଙ୍କର ସେବିକା କାମ କରୁଥିଲେ । ମୁଁ ସେହି ଦାସୀଙ୍କ ପୁତ୍ର ଥିଲି । ବ୍ରାହ୍ମଣ, ବୈଷ୍ଣବ, ସାଧୁସନ୍ନ୍ୟାସୀମାନେ ବର୍ଷାଋତୁ ସମୟରେ କୌଣସି ଏକ ସ୍ଥାନରେ ଅସ୍ଥାୟୀ ଡ଼େରା ପକାଇ ରହନ୍ତି ।ଯାହାକୁ ଚାତୁର୍ମାସ୍ୟ ରହଣି କୁହାଯାଏ । ପିଲାଦିନେ ମା' ସହିତ ମୁଁ ଥରେ ସେମାନଙ୍କ ସେବାରେ ନିଯୁକ୍ତ ଥିଲି ।

ପ୍ରଶ୍ନ-୧୦୪ : ସେମାନେ ନିତି ହରିକଥା କୀର୍ତ୍ତନ, ହରିଗୁଣ ଗାନ, ପୂଜନ, ଅର୍ଚ୍ଚନ ଆଦି ସତ୍‌ସଙ୍ଗରେ ମଗ୍ନ ରହନ୍ତି । ସେମାନଙ୍କ ସେବା ସୁଯୋଗରୁ ବୈଷ୍ଣବ ସତ୍‌ସଙ୍ଗର ଫଳ ସ୍ୱରୂପ ହରି କଥାରେ ମୋର ରତି ଜାତ ହେଲା । ଅଲକ୍ଷ୍ୟରେ ଭକ୍ତି ମହାରାଣୀ ମୋ ହୃଦୟ ସିଂହାସନରେ ଆସନ ଜମେଇ ବସିଗଲେ । ତାପରେ ମୋର କି ଅବସ୍ଥା ହେଲା ଜାଣିଛ ମୁନିଶ୍ରେଷ୍ଠ?

**ତସ୍ୟ-ଏବଂ ମେଽନୁରକ୍ତସ୍ୟ ପ୍ରଶ୍ରିତସ୍ୟ ହତ-ଏନସଃ ।**
**ଶ୍ରଦ୍ଦଧାନସ୍ୟ ବାଳସ୍ୟ ଦାନ୍ତସ୍ୟ-ଅନୁଚରସ୍ୟ ଚ ।୨୯।**

ଉତ୍ତର : ମୁଁ ସେମାନଙ୍କଠାରେ ଅତ୍ୟନ୍ତ ଅନୁରାଗୀ ହୋଇଗଲି । ଶ୍ରଦ୍ଧାରେ ବୈଷ୍ଣବ ସେବା କରନ୍ତେ ମୋର ସକଳ ସଂଚିତ, କ୍ରିୟମାଣ ପାପ ନଷ୍ଟ ହୋଇଗଲା (ହତ-ଏନସଃ) । ମୋର ଇନ୍ଦ୍ରିୟମାନେ ଆଉ ଦୁଷ୍ଟାମି ନକରି ଆପେ ଆପେ ସଂଯମୀ ହୋଇଗଲେ । ହୃଦୟ ଅବିଚଳ ଶ୍ରଦ୍ଧାରେ ଭରିଗଲା । ମୁଁ କାୟ ମନୋବାକ୍ୟରେ ସେମାନଙ୍କ ଆଜ୍ଞାବହ ଦାସାନୁଦାସ ହୋଇଗଲି ।

ପ୍ରଶ୍ନ-୧୦୫ : ସେଇ ଦୀନବତ୍ସଳ ସାଧୁମାନେ ଚାତୁର୍ମାସ୍ୟ ପରେ ଗାଁ ଛାଡ଼ି ଗଲାବେଳେ ମୋତେ କ'ଣ ଦେଇଗଲେ ଜାଣିଛ-ମହାମୁନେ ?

**ଜ୍ଞାନଂ ଗୁହ୍ୟତମଂ ଯତ୍‌ତତ୍ ସାକ୍ଷାତ୍ ଭଗବତା-ଉଦିତମ୍ ।**
**ଅନ୍ୱବୋଚନ୍ ଗମିଷ୍ୟନ୍ତଃ କୃପୟା ଦୀନବତ୍ସଳାଃ ।୩୦।**

ଉତ୍ତର : ଯେଉଁ ଗୁହ୍ୟାତିଗୁହ୍ୟ ପରମ ଦିବ୍ୟଜ୍ଞାନ ସ୍ୱୟଂ ଭଗବାନ କେବଳ ତାଙ୍କର ଏକାନ୍ତ ଅନୁଗତ ନିଷ୍କାମ ଭକ୍ତ ମାନଙ୍କୁ ଦେଇଥାନ୍ତି ସେ ସବୁକୁ ସେଇ ସନ୍ଥମାନେ ଅଜାଡ଼ି ଦେଲେ ମୋ ବକ୍ଷ ଅଞ୍ଚଳରେ ।

ପ୍ରଶ୍ନ-୧୦୬ : ସେହି ଅତ୍ୟନ୍ତ ଗୁପ୍ତତମ ଜ୍ଞାନପ୍ରାପ୍ତି ପରେ ମୋର ଅବସ୍ଥା କ'ଣ ହେଲା ଜାଣିଛ-ଋଷି ଶ୍ରେଷ୍ଠ ?

**ଯେନ-ଏବ-ଅହଂ ଭଗବତୋ ବାସୁଦେବସ୍ୟ ବେଧସଃ ।**
**ମାୟା-ଅନୁଭାବଂ ଅବିଦଂ ଯେନ ଗଚ୍ଛନ୍ତି ତତ୍ ପଦମ୍ ।୩୧।**

ଉତ୍ତର : ବିଶ୍ୱସ୍ରଷ୍ଟା (ବେଧସଃ) ବାସୁଦେବ ଶ୍ରୀକୃଷ୍ଣଙ୍କ ସେଇ ଦୁର୍ଲ୍ଲଙ୍ଘ୍ୟ ମାୟା ପ୍ରଭାବରୁ ମୁକ୍ତ ହୋଇପାରିଲି ମୁଁ । ଯେଉଁ ମାୟାରୁ ମୁକ୍ତ ହେଲେ ଭକ୍ତ ସଂସାର ବୈରାଗୀ ହୋଇ ତାଙ୍କ ଚରଣ କମଳ ସେବା ସୁଯୋଗ ପ୍ରାପ୍ତ ହୋଇଥାଏ ।

ପପ୍ରଶ୍ନ-୧୦୭ : ସ୍ୱୟଂ ବ୍ୟାସଦେବ ପରା ଜ୍ଞାନର ଅବତାର ଥିଲେ । ତାଙ୍କୁ ନାରଦଜୀ କି ଭକ୍ତି ମନ୍ତ୍ର ସିଦ୍ଧ କରିବାକୁ ଆଦେଶ ଦେଲେ ?

**ଓଁ ନମୋ ଭଗବତେ ତୁଭ୍ୟଂ ବାସୁଦେବାୟ ଧୀମହି ।**
**ପ୍ରଦ୍ୟୁମ୍ନାୟ-ଅନିରୁଦ୍ଧାୟ ନମଃ ସଂକର୍ଷଣାୟ ଚ ।୩୭।**

ଉତ୍ତର : ହେ ଚତୁର୍ବ୍ୟୂହରୂପୀ ବାସୁଦେବ-ସଂକର୍ଷଣ-ପ୍ରଦ୍ୟୁମ୍ନ-ଅନିରୁଦ୍ଧ (ଚିତ୍ତ-ଅହଂକାର-ବୁଦ୍ଧି-ମନ) ଆପଣଙ୍କୁ ନମସ୍କାର । ଏହି ମନ୍ତ୍ରଜପର ସାଧନ

ବିଧି ଶିଖାଇଦେଲେ ନିଜ ପ୍ରୌଢ଼ ଶିଷ୍ୟ ବ୍ୟାସଦେବଙ୍କୁ ।

ପ୍ରଶ୍ନ-୧୦୮ : ବ୍ୟାସମୁନିଙ୍କୁ ତାଙ୍କ ବ୍ରହ୍ମଜ୍ଞାନର ଅନେକ ପ୍ରଶଂସା କରି ତାଙ୍କୁ ଦୁର୍ଲ୍ଲଭ ହରିଭକ୍ତି ଅର୍ଜନ ଲାଗି କି ଆଦେଶ ଦେଲେ ନାରଦ ମୁନି?

**ତ୍ୱଂ ଅପି ଅଦଭ୍ରଶ୍ରୁତ ବିଶ୍ରୁତଂ ବିଭୋଃ**
**ସମାପ୍ୟତେ ଯେନ ବିଦାଂ ବୁଭୁତ୍ସିତମ୍।**
**ପ୍ରାଖ୍ୟାହି ଦୁଃଖୈଃ ମୁହୁଃ ଅର୍ଦ୍ଦିତ-ଆତ୍ମନାଂ**
**ସଂକ୍ଲେଶ ନିର୍ବାଣଂ ଉଶନ୍ତି ନ-ଅନ୍ୟଥା ।୪୦।**

ଉତ୍ତର : ହେ ଜ୍ଞାନାବତାର (ବିଭୋଃ), ଆପଣ ଅଖଣ୍ଡ ବ୍ରହ୍ମ ଜ୍ଞାନର (ଅଦଭ୍ର ଶ୍ରୁତ ବିଶ୍ରୁତଂ) ଅଧିକାରୀ ଅବଶ୍ୟ । ଏହ ମନ୍ତ୍ର ସିଦ୍ଧ ହେଲେ ଆପଣ ଯାହା ହରି ଲୀଳା ନିଜ ସମ୍ମୁଖର ଦର୍ଶନ କରିବେ ତାକୁ ଗଣେଶଜୀଙ୍କୁ ଡ଼ାକି ଲେଖାନ୍ତୁ । ସେଇ ଲେଖା କୁ ଅଧ୍ୟୟନ କରି ଜ୍ଞାନୀମାନଙ୍କ ଜାଣିବା ଇଚ୍ଛା ଏବଂ ଭକ୍ତମାନଙ୍କର ପ୍ରେମ ସ୍ୱରୂପ ବୁଝିବାର ଇଚ୍ଛା (ବୁଭୁତ୍ସିତମ୍) ସଂପୂର୍ଣ୍ଣ ହେବ । ଏହାକୁ କେବଳ ଶ୍ରବଣ କୀର୍ତ୍ତନ କରି କଳିଯୁଗର ଦୁଃଖରେ ଆର୍ତ୍ତନାଦ କରୁଥିବା ଜ୍ଞାନମାର୍ଗୀ ଓ ଭକ୍ତି ମାର୍ଗୀ ଲୋକଙ୍କର ତ୍ରିତାପ ନାଶ ହେବ । ଏତଦ୍ ବ୍ୟତୀତ କଳିଯୁଗରେ ପାପ ତାପ ନାଶର ଅନ୍ୟ ସହଜ ସରଳ ସୁଲଭ ଉପାୟ ଆଉ ନାହିଁ ।

**ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ବୟାସିକ୍ୟାଂ ଅଷ୍ଟାଦଶ ସାହସ୍ର୍ୟାଂ**
**ପାରମହଂସ୍ୟାଂ ସଂହିତାୟାଂ ପ୍ରଥମସ୍କନ୍ଧେ ପଞ୍ଚମୋଽଧ୍ୟାୟଃ ।**
**|| ହରିଃ ଓଁ ତତ୍ସତ୍ ||**
**ଶ୍ରୀକୃଷ୍ଣାର୍ପଣଂ ଅସ୍ତୁ ।**

ତୃତୀୟ ନକ୍ଷତ୍ର-କୃତ୍ତିକା

# ଅଥ ୬ଷ୍ଠ ଅଧ୍ୟାୟଃ

## (ବ୍ୟାସ ନାରଦ ସମ୍ବାଦଃ ଭାଗବତ ଗ୍ରନ୍ଥ ନିର୍ମାଣ ଉପଦେଶ)

ପ୍ରଶ୍ନ-୧ ଦେବର୍ଷି ନାରଦଙ୍କ ଶ୍ରୀମୁଖରୁ ତାଙ୍କ ପୂର୍ବ ଜନ୍ମ କଥା ଶୁଣି (ନିଶମ୍ୟ) ସତ୍ୟବତୀ ନନ୍ଦନ ବ୍ୟାସଜୀ ପୁଣି କେଉଁ ପ୍ରଶ୍ନ ପଚାରି ବସିଲେ ?

ସୂତ ଉବାଚ

**ଏବଂ ନିଶମ୍ୟ ଭଗବାନ୍ ଦେବର୍ଷେଃ ଜନ୍ମ କର୍ମ ଚ ।**
**ଭୂୟଃ ପପ୍ରଚ୍ଛ ତଂ ବ୍ରହ୍ମନ୍ ବ୍ୟାସଃ ସତ୍ୟବତୀ ସୁତଃ ॥୧॥**

ଉତ୍ତରଃ ନାରଦଙ୍କ ପିଲାଦିନର ଭକ୍ତି ସାଧନା ବିଷୟରେ ଜିଜ୍ଞାସା ହେଲା ।

ବ୍ୟାସ ଉବାଚ

ପ୍ରଶ୍ନ-୨ : ଚାତୁର୍ମାସ୍ୟ ସାରି (ବିପ୍ର ବସିତେ) ମହାତ୍ମା ମାନେ (ଭିକ୍ଷୁଭିଃ) ନାରଦଜୀଙ୍କୁ ଭକ୍ତି ମାର୍ଗର ଉପଦେଶ ଦେଇ ପ୍ରସ୍ଥାନ କଲେ । ବ୍ୟାସଦେବଙ୍କ ପ୍ରଶ୍ନ-"ହେ ନାରଦଜୀ, ଆପଣ ତ ପିଲାଲୋକ (ବୟସି ଆଦ୍ୟେ) ସେତେବେଳେ ଆପଣ କିପରି ତାଙ୍କର ଆଦେଶ ପାଳନ କଲେ ?"

**ଭିକ୍ଷୁଭିଃ ବିପ୍ରବସିତେ ବିଜ୍ଞାନ-ଆଦେଷ୍ଟୃଭିଃ ତବ ।**
**ବର୍ତ୍ତମାନୋ ବୟସି-ଆଦ୍ୟେ ତତଃ କିଂ ଅକରୋତ୍ ଭବାନ୍ ॥୨॥**

ଉତ୍ତରଃଆପଣ (ଭବାନ୍) କି ପ୍ରକାର ଭକ୍ତି ସାଧନ କଲେ?

ପ୍ରଶ୍ନ-୩ :ହେ ସ୍ୱାୟମ୍ଭୂବ (ବ୍ରହ୍ମାଜୀ) ଙ୍କ ସୁଯୋଗ୍ୟ ସନ୍ତାନ ନାରଦଜୀ, ଆପଣଙ୍କର ଜୀବନ ଯାପନ ପ୍ରଣାଳୀ,ଦେହ ତ୍ୟାଗ ବିଧି ଓ ପୁଣି ନାରଦ ରୂପରେ ପୁନର୍ଜନ୍ମର ସବୁ କଥା ମନେ ରହିବା ବଡ଼ କୌତୁହଳ ପ୍ରଦ । କାଳ ସାଧାରଣତଃ ଜୀବମାନଙ୍କର ପୂର୍ବ ଜନ୍ମର ସ୍ମୃତି ରଖାଇ ଦିଏନା । ଗୋଟିଏ ଜନ୍ମର କଥା ନୁହେଁ, ଆପଣ ଅନ୍ୟ କଳ୍ପ ଓ ଅନ୍ୟ ଜନ୍ମର କଥା କହୁଛନ୍ତି କେମିତି ?

**ପ୍ରାକ୍-କଳ୍ପ ବିଷୟାନ୍ ଏତାଂ ସ୍ମୃତିଂ ତେ ମୁନି ସତ୍ତମ ।**
**ନ ହି-ଏଷ ବ୍ୟବଧାତ୍ କାଳ ଏଷ ସର୍ବ ନିରାକୃତିଃ ||୪||**

ଉତ୍ତର:କେବଳ ଅନ୍ୟ ଜନ୍ମର ନୁହେଁ ମୁନିଶ୍ରେଷ୍ଠ (ମୁନି ସତ୍ତମ) । ଅନ୍ୟ ଏକ କଳ୍ପର କଥା ମୁଁ କହୁଛି । ମନେରଖ, ଏହା ଭଗବଦ୍ ଭକ୍ତି ପ୍ରସଙ୍ଗ ବା ସ୍ମୃତି । ସୁତରାଂ କାଳ ଏହାକୁ ନଷ୍ଟ କରନ୍ତା (ନିରାକୃତିଃ) କେମିତି?

**ନାରଦ ଉବାଚ**

ପ୍ରଶ୍ନ-୪ ନାରଦଜୀ ତାଙ୍କ ପୂର୍ବ ଜନ୍ମର କାହାଣୀ ବର୍ଣ୍ଣନା କରି ତାଙ୍କ ମା' ଙ୍କୁ ଦାସୀ (କିଂକରୀ) ମୂର୍ଖ (ମୁଢ଼ା) ବୋଲି କାହିଁକି କହିଲେ?

**ଏକ-ଆତ୍ମଜା ମେ ଜନନୀ ଯୋଷିତ୍ ମୂଢ଼ା ଚ କିଂକରୀ ।**
**ମୟି-ଆତ୍ମଜେଽନନ୍ୟ ଗତୌ ଚକ୍ରେ ସ୍ନେହ-ଅନୁବନ୍ଧନମ୍ ||୬||**

ଉତ୍ତର:ଅବଶ୍ୟ ମୁଁ ତାଙ୍କର ଏକ ମାତ୍ର ସନ୍ତାନ ଥିଲି । ସେ ଏକେ ତ ନାରୀ ସେଥିରେ ପୁଣି ଅନ୍ୟର ଦାସୀ ଥିଲେ । ସେ ମୋତେ ଆବଶ୍ୟକତା ଠାରୁ ଅଧିକ ସ୍ନେହ କରି ମୋତେ ହିଁ ମନରେ ଏକାନ୍ତ ସ୍ଥାନ ଦିଅନ୍ତେ ଭଗବାନଙ୍କ ପାଇଁ ତାଙ୍କ ମନରେ ସ୍ଥାନ ନଥିଲା ବୋଲି ସେ ମୂଢ଼ା ।

ପ୍ରଶ୍ନ-୫ ମୋ ମାତା ସର୍ବଦା ମୋର ଯୋଗ-କ୍ଷେମ ଚିନ୍ତନ କରୁଥିଲେ । ସେ ପରାଧୀନା(ଅସ୍ୱତନ୍ତ୍ରା) ଦାସୀ ଥିଲେ । ମୋ ପାଇଁ ବାସ୍ତବରେ ନିଜର କିଛି ସଂସାରୀ ଅଭାବର ପୂରଣ କରିପାରୁ ନଥିଲେ । ଏକଥା ବୁଝାଇବାକୁ ଯାଇ ନାରଦଜୀ କେଉଁ ଉଦାହରଣଟିଏ ଦେଲେ ?

**ସା-ଅସ୍ୱତନ୍ତ୍ରା ନ କଳ୍ପ-ଆସୀତ୍ ଯୋଗ କ୍ଷେମଂ ମମ-ଇଚ୍ଛତୀ ।**
**ଈଶସ୍ୟ ହି ବଶେ ଲୋକୋ ଯୋଷା ଦାରୁମୟୀ ଯଥା ||୭||**

ଉତ୍ତର:କଣ୍ଢେଇ ନାଚ ଉଦାହରଣ ଦେଲେ । ନଚେଇବା ଲୋକ ହାତରେ କାଠ କଣ୍ଢେଇ ଯେପରି ନାଚେ,ଈଶ୍ୱରଙ୍କ ହାତରେ ଆମେ ସବୁ ଜୀବ ସେମିତି ନାଚିଥାଉ । ସେ ତ ଅସଲି ଯୋଗ କ୍ଷେମ ବହନ କରିବା ବାଲା । ଏଥିରେ ଅସମର୍ଥ ମାତା-ପିତା କିଏ କିପରି ବା ସନ୍ତାନକୁ ସାହାଯ୍ୟ କରିପାରନ୍ତେ !!

ପ୍ରଶ୍ନ -୬ ଏକଥା କ'ଣ ନାରଦଜୀଙ୍କୁ ସେବେ ଜଣା ନ ଥିଲା କି ?

**ଅହଂ ଚ ତଦ୍ ବ୍ରହ୍ମକୁଳେ ଉଷିବାନ୍ ତଦ୍ ଉପେକ୍ଷୟା?**
**ଦିକ୍ ଦେଶ କାଳ-ଅବ୍ୟୁତ୍ପନ୍ନୋ ବାଳକଃ ପଞ୍ଚ ହାୟନଃ ||୮||**

ଉତ୍ତର:ନା ଆଦୌ ଜଣା ନଥିଲା । ମାତ୍ର ପାଞ୍ଚ ବର୍ଷର ବାଳକ ସେ । ଦିଗ, ଦେଶ, କାଳ, ପୁରୁଷାର୍ଥ ପ୍ରାରବ୍ଧ କଥା ସେ ବୁଝନ୍ତେ କିପରି (ଅବ୍ୟୁତ୍ପନ୍ନଃ)? ତାଙ୍କର ତ ବାଳକ ବୁଦ୍ଧି ।

ପ୍ରଶ୍ନ-୭ ଦିନକର କଥା ନାରଦଜୀଙ୍କ ମାତା ରାତିରେ (ନିଶି) ଗାଈ ଦୁହିଁବାକୁ ଯାଉଥାନ୍ତି । ବାଟରେ ସାପ ଉପରେ ଅଜାଣତରେ ଗୋଡ଼ ପଡ଼ିଗଲା । ସର୍ପ ଦଂଶନରେ ପ୍ରାଣଗଲା ମାତାଙ୍କର । ଏଥିରେ ସାପର ଦୋଷ ହେବ କି ?

**ଏକଦା ନିର୍ଗତାଂ ଗେହାଦ୍ ଦୁହନ୍ତୀଂ ନିଶି ଗାଂ ପଥି ।**
**ସର୍ପୋଽଦଶତ୍ ପଦା ସ୍ପୃଷ୍ଟଃ କୃପଣାଂ କାଳ ଚୋଦିତଃ ।।୯।।**

ଉତ୍ତର:ସାପର ଦୋଷ ଆଦୌ ହେବନି । ଏହା କେବଳ ମା'ଙ୍କର ପ୍ରାରବ୍ଧ । ସାପ ତ କାଳର ପ୍ରେରଣାରେ (କାଳ ଚୋଦିତଃ) ଦଂଶନ କରେ । ମା ଅବିଦ୍ୟା ଦୋଷ (କୃପଣାଂ) ହେତୁ ବ୍ରହ୍ମ-ମାୟା-ଜୀବ,ଜନ୍ମ-ମୃତ୍ୟୁ ରହସ୍ୟ ଜାଣିପାରି ନଥିଲେ । ଦୋଷ ମା'ଙ୍କର ନିଜର ।

ପ୍ରଶ୍ନ-୮: ମାତା ମରଣ ମୋମଙ୍ଗଳ, ସୁଦୟା କଲେ ଆଦିମୂଳ ।ଭକ୍ତ ବାଞ୍ଛା କଳ୍ପତରୁ ସର୍ବଦା ଭକ୍ତର ମଙ୍ଗଳ ହିଁ ଇଚ୍ଛା(ଶଂ ଈପ୍ସିତଃ) କରିଥାନ୍ତି । ନାରଦଜୀ ମାତାଙ୍କ ମରଣ କୁ ନିଜପାଇଁ ଭଗବାନଙ୍କ କୃପା ମାନିଲେ । ନିଜ ମାତାଙ୍କ ଦେହାନ୍ତ ପରେ କ'ଣ କଲେ ନାରଦଜୀ ?

**ତଦା ତଦ୍ ଅହଂ ଈଶସ୍ୟ ଭକ୍ତାନାଂ ଶଂ ଅଭୀପ୍ସତଃ ।**
**ଅନୁଗ୍ରହଂ ମନ୍ୟମାନଃ ପ୍ରାତିଷ୍ଠଂ ଦିଶଂ ଉତ୍ତରାମ୍ ।।୧୦।।**

ଉତ୍ତର:ଦେବତାତ୍ମା ହିମାଳୟ ବଦ୍ରିନାଥ ଧାମ ପହଞ୍ଚିବା ଲକ୍ଷ୍ୟରେ ଚାଲିଲେ ଉତ୍ତର ଦିଗକୁ । ଏକମାତ୍ର ଉଦ୍ଦେଶ୍ୟ ବ୍ରହ୍ମ ଜିଜ୍ଞାସା ।

ପ୍ରଶ୍ନ-୯ ଗଲାବେଳେ ବାଟରେ ନାରଦଜୀ କ'ଣ ସବୁ ଦେଖିଲେ?

**ସ୍ଫୀତାନ୍ ଜନପଦାନ୍ ତତ୍ର ପୁର ଗ୍ରାମ ବ୍ରଜ ଆକରାନ୍**
**ଖେଟ ଖର୍ବଟ ବାଟୀଃ ଚ ବନାନି-ଉପବନାନି ଚ ।।୧୧।।**

ଉତ୍ତର:ଧନ ସଂପତ୍ତି ପୂର୍ଣ୍ଣ ସମୃଦ୍ଧ ଦେଶ, ନଗର, ଗ୍ରାମ, ଗୋପାଳନ ବସ୍ତି (ବ୍ରଜ), ଖଣି, ନଦୀ, ପର୍ବତ, ବଣ-ଜଙ୍ଗଲ ଓ ପୁଷ୍ପବାଟିକା (ବାଟୀ) ଇତ୍ୟାଦି ।

ପ୍ରଶ୍ନ-୧୦: ନାରଦଜୀ ବାଟରେ ହିଂସ୍ର ଜନ୍ତୁ ଥିବା ଘନ ଜଙ୍ଗଲ ମଧ୍ୟ

ଦେଖିଲେ । ଭୟ ଲାଗୁଥାଏ ଅବଶ୍ୟ ତାଙ୍କୁ । କେଉଁଠି ଅଟକୁ ନଥାନ୍ତି । କ୍ଷୁଧା ତୃଷାରେ ଆତୁର ନାରଦ କଲେ କ'ଣ? ଖାଇଲେ କିସ ? ପିଇଲେ କିସ ?

**ପରିଶ୍ରାନ୍ତ-ଇନ୍ଦ୍ରିୟ-ଆତ୍ମା-ଅହଂ ତୃଟ୍ ପରୀତୋ ବୁଭୁକ୍ଷିତଃ ।**
**ସ୍ନାତ୍ୱା ପିତ୍ୱା ହ୍ରଦେ ନଦ୍ୟା ଉପସ୍ପୃଷ୍ଟୋ ଗତଶ୍ରମଃ ॥୧୫॥**

ଉତ୍ତର:ଚାଲି ଚାଲି ନାରଦଜୀଙ୍କ ହସ୍ତ ପଦ ଆଦି ଶିଥିଳ (ପରିଶ୍ରାନ୍ତଂ) ହୋଇପଡ଼ିଲେ, ନଦୀ କିମ୍ବା ହ୍ରଦ ଦେଖିଲେ ସେ ଅଟକି ଯାନ୍ତି । ଜଳରେ ସ୍ନାନ, ପାନ, ଆଚମନ କରି ଫଳ, ମୂଳ, କନ୍ଦମୂଳ ଆଦି ଖାଇ କ୍ଷୁଧା-ତୃଷାରୁ (ବୁଭକ୍ଷିତଃ) ରକ୍ଷା ପାଆନ୍ତି । ଇନ୍ଦ୍ରିୟମାନଙ୍କ ଥକାନ୍ ଦୂର ହୋଇଯାଏ । ପୁଣି ବାଟ ଚାଲନ୍ତି ସେ । ଲକ୍ଷ୍ୟ କେବଳ ବ୍ରହ୍ମ ପ୍ରାପ୍ତି । ବିରାମର ପ୍ରଶ୍ନ କାହିଁ ?

ପ୍ରଶ୍ନ-୧୧: ଯାଉ ଯାଉ ନିର୍ଜନ (ନିର୍ମନୁଜେ) ଅରଣ୍ୟରେ ଦେଖିଲେ ଅଶ୍ୱତଥ୍ ବୃକ୍ଷଟିଏ । ମନେ ପଡ଼ିଲା ମହାତ୍ମାଙ୍କ ଉପଦିଷ୍ଟ ଭକ୍ତି ସାଧନ କଥା । ନାରଦଜୀ ଏବେ କଲେ କ'ଣ ?

**ତସ୍ମିନ୍ ନିର୍ମନୁଜେଽରଣ୍ୟେ ପିପ୍ପଳ-ଉପସ୍ଥ ଆଶ୍ରିତଃ ।**
**ଆତ୍ମନା-ଆତ୍ମାନଂ ଆତ୍ମସ୍ଥଂ ଯଥା ଶ୍ରୁତଂ ଅଚିନ୍ତୟମ୍ ॥୧୬॥**

ଉତ୍ତର:ହୃଦୟ କମଳରେ ସ୍ଥିତ(ଆତ୍ମସ୍ଥ) ନିଜ ମନ ଦ୍ୱାରା (ଆତ୍ମନା) ପରମାତ୍ମା ବା ଓଁଙ୍କ ତେଜ ତତ୍ତ୍ୱକୁ (ଆତ୍ମାନଂ) ଚିନ୍ତନ, ସ୍ମରଣ ଓ ଧ୍ୟାନରେ ଲାଗିପଡ଼ିଲେ ।

ପ୍ରଶ୍ନ-୧୨ : ନିବିଷ୍ଟ ଚିତ୍ତରେ ଭଗବାନଙ୍କ ଚରଣ କମଳକୁ ଧ୍ୟାନ କରୁ କରୁ ନାରଦଜୀଙ୍କର କି ଅବସ୍ଥାନ୍ତର ହେଲା ?

**ଧ୍ୟାୟତଃ ଚରଣ-ଅମ୍ଭୋଜଂ ଭାବ ନିର୍ଜିତ ଚେତସା ।**
**ଔତ୍କଣ୍ଠ୍ୟ-ଅଶ୍ରୁକଳ-ଅକ୍ଷସ୍ୟ ହୃଦି-ଆସୀତ୍-ମେ ଶନୈଃ ହରିଃ ॥୧୭॥**

ଉତ୍ତର:ଭଗବତ ଦର୍ଶନର ଉତ୍କଟ ଲାଳସା ହେତୁ ଚକ୍ଷୁରୁ ଅଶ୍ରୁ ଧାର ଧାର ହୋଇ ବହିଲା । ଧୀରେ ଧୀରେ ନିଜ ହୃଦୟ କମଳରେ ଶ୍ରୀହରିଙ୍କ ଦିବ୍ୟ-ଚିନ୍ମୟ ସଗୁଣ ସାକାର ବିଗ୍ରହ ଦୃଶ୍ୟ ମାନ ହେଲେ ।

ପ୍ରଶ୍ନ-୧୩: ନାରଦଜୀ କହିଲେ, "ହେ ବ୍ୟାସ ମୁନି (ମୁନେ), ସେ ଅନିର୍ବଚନୀୟ ରୂପ ଦେଖୁ ଦେଖୁ ମୋର ସମଗ୍ର ଶରୀର ରୋମାଞ୍ଚିତ ହୋଇ

ଗଲା । ସେ ପ୍ରେମରୂପୀ ଆନନ୍ଦ ସାଗରରେ ମୁଁ କିପରି ଗୋଟା ସୁଦ୍ଧା ବୁଡ଼ି ଗଲି ଜାଣିଛ ?''

**ପ୍ରେମା-ଅତିଭର ନିର୍ଭିନ୍ନ ପୁଲକ-ଅଙ୍ଗୋଽତିନିବୃତଃ ।**
**ଆନନ୍ଦ ସଂପ୍ଲବେ ଲୀନୋ ନ-ଅପଶ୍ୟଂ ଉଭୟଂ ମୁନେ ॥୧୮॥**

ଉତ୍ତରଃ ଉଠି ଦେଖେ ତ ଭଗବାନ ନାହାନ୍ତି କି ମୋର 'ମୁଁ' ବୋଲି ଟିକଟି ଆଉ ନାହିଁ । ଅଛି କେବଳ ହରିପ୍ରେମର ଅଥଳ, ଅପାର ସାଗର, ପ୍ରେମର ମଧୁର ଜଳ, ପ୍ରେମର ଉଛୁଳା ତରଙ୍ଗ ଓ ପ୍ରେମର ଶୀତଳ, କୋମଳ, ସୁଗନ୍ଧ ମନ୍ଦ ମନ୍ଦ ବାୟୁ !!! ବାସ୍ । ଆଉ କିଛି ନାହିଁ । ସଂସାର ଆସକ୍ତିର ଗନ୍ଧ ହିଁ ନାହିଁ ।

ପ୍ରଶ୍ନ-୧୪: ଯେଉଁ ଅପରୂପ ଦର୍ଶନରେ ମୋର ସମସ୍ତ ପାପ ତାପ ସମୂଳେ ନଷ୍ଟ ହୋଇଗଲା ତାହା ହଠାତ୍ କୁଆଡ଼େ ଉଭେଇଗଲା । ସେଇ ରୂପ ଲାବଣ୍ୟ ବିରହରେ ବ୍ୟାକୁଳ ହେଲା ପରେ କ'ଣ କଲି ଜାଣିଛ ହେ ତପୋନିଧେ ?

**ରୂପଂ ଭଗବତୋ ଯତ୍ ତତ୍ ମନଃ କାନ୍ତଂ ଶୁଚ-ଅପହମ୍ ।**
**ଅପଶ୍ୟନ୍ ସହସା- ଉତସ୍ଥେ ବୈକ୍ଲବ୍ୟାତ୍ ଦୁର୍ମନା ଇବ ॥୧୯॥**

ଉତ୍ତରଃ ମୁଁ ଧ୍ୟାନରୁ ଉଠି ପଡୁଥାଏ । ବାରମ୍ବାର ପୁଣି ଧ୍ୟାନରେ ବସି ସେ ରୂପକୁ ଦେଖିବାକୁ ଚେଷ୍ଟା କରୁଥାଏ । ଶ୍ରୀହରିଙ୍କର ଦିବ୍ୟ ରୂପ ଦର୍ଶନ ଲାଳସାରେ ଅତ୍ୟନ୍ତ ଆତୁର, କାତର (ବୈକ୍ଲବ୍ୟାତ୍) ଓ ଅତୃପ୍ତ ମୁଁ ଏକ ଅକିଂଚନ ଛୁଆ ।

ପ୍ରଶ୍ନ-୧୫:ମୋତେ ଏଇଭଳି ବ୍ୟସ୍ତ ହେବା ଦେଖି ଭଗବାନ ଅବଶ୍ୟ କୃପା କଲେ ।ଅଶରୀରୀ ଶୂନ୍ୟ ବଜ୍ର ଗମ୍ଭୀର ଅଥଚ ଅତ୍ୟନ୍ତ କୋମଳ ଓ ମଧୁର ବାଣୀରେ କିପରି ମୋର ବ୍ୟାକୁଳତା ଦୂର କରିଦେଲେ ଶୁଣିବେ ପରାଶର ନନ୍ଦନ ?

**ଏବଂ ଯତନ୍ତଂ ବିଜନେ ମାଂ ଆହ-ଅଗୋଚରୋ ଗିରାମ୍ ।**
**ଗମ୍ଭୀର ଶ୍ଳକ୍ଷ୍ଣୟା ବାଚା ଶୁଚଃ ପ୍ରଶମୟନ୍ ଇବ ॥୨୧॥**

ଉତ୍ତରଃ ଭଗବାନଙ୍କର ମୋର ବିରହ ଦୁଃଖ କୁଆଡ଼େ ହଠାତ୍ ଉଭେଇଗଲା । ମୋର ଶ୍ରବଣ ଇନ୍ଦ୍ରିୟ, ମନ ବୁଦ୍ଧି ଓ ଆତ୍ମା ପ୍ରେମ ପୂର୍ଣ୍ଣ । ମହାଶୂନ୍ୟ ବାଣୀ ଜାଲରେ ବନ୍ଦୀ ସମସ୍ତେ । ମୁକୁଳିବାର ବାଟ କାହିଁ ମୋ ପାଇଁ !!!

ପ୍ରଶ୍ନ-୧୬ ଶୂନ୍ୟ ବାଣୀ ଦ୍ୱାରା କ'ଣ ଶୁଣିଲେ କିନାରଦଜୀ ସେତେବେଳେ ?

**ହନ୍ତ ଅସ୍ମିନ୍ ଜନ୍ମନି ଭବାନ୍ ମା ମାଂ ଦ୍ରଷ୍ଟୁଂ ଇହ-ଅର୍ହସି ।**
**ଅବିପକ୍ୱ କଷାୟାଣାଂ ଦୁର୍ଦ୍ଦର୍ଶୋଽହଂ କୁଯୋଗିନାମ୍ ।।୨୨।।**

ଉତ୍ତର:ଭଗବାନ କହିଲେ, "ମୁଁ ଦୁଃଖିତ ନାରଦ, ଏ ଜନ୍ମରେ ମୋ ରୂପର ଯେଉଁ ଝଲକ ଟିକକ ପାଇଲ ବାସ୍ ସେତିକି ଯଥେଷ୍ଟ । ତୁମର ମନସ୍ଥିତ ଅବଶିଷ୍ଟ କାମନା ବାସନାକୁ ଜୀବନର ବାକୀଥିବା ସମୟ ମଧ୍ୟରେ ନଷ୍ଟ କରିଚାଲ ମୋ ରୂପ ଧ୍ୟାନ କରି ଓ ନାମ ଜପ କରି । ଏବେ ବି ତୁମର ଭକ୍ତି ସାଧନା ଅସଂପୂର୍ଣ୍ଣ । ପାତ୍ର ତିଆରି ଶେଷ ହେଲେ ଜନ୍ମାନ୍ତରେ ସେଇ ମନ ମୋହନ ରୂପ ଦର୍ଶନ କରିବ । ମନ ହୃଦୟର ସେଇ ବ୍ୟାକୁଳତା ବଜାୟ ରଖ । ସାଧନାରୁ ବିଚ୍ୟୁତ ହୁଅନାହିଁ ।"

ପ୍ରଶ୍ନ-୧୭: ଶୂନ୍ୟ ବାଣୀ ପୁଣି କହିଲେ, "ତୁମେ ଭକ୍ତ । ସୁତରାଂ ତୁମର କେବେ ବି ପତନ ହେବ ନାହିଁ । ତୁମ ମନ, ବୁଦ୍ଧି, ଇନ୍ଦ୍ରିୟ ଚିତ୍ତ ମୋ ଠାରେ ନିତ୍ୟ ନିରନ୍ତର ଲାଗି ରହିବ । ଯୁଗାନ୍ତରେ ନୁହେଁ, କଳ୍ପାନ୍ତରେ (ପ୍ରଜା ସର୍ଗେ ) ମଧ୍ୟ ତୁମର ଏ ସ୍ମୃତି ସଦା ଜାଗ୍ରତ ରହିବ (ନ ନିପଦ୍ୟତେ ) କାହିଁକି ଜାଣିଛ ?

**ମତିଃ ମୟି ନିବଦ୍ଧା-ଇୟଂ ନ ବିପଦ୍ୟେତ କର୍ହିଚିତ୍ ।**
**ପ୍ରଜାସର୍ଗେ ନିରୋଧେଽପି ସ୍ମୃତିଃ ଚ ମତ୍ ଅନୁଗ୍ରହାତ୍ ।।୨୫।।**

ଉତ୍ତର: ମୋ କୃପାରୁ । ତୁମ ସାଧନାରୁ ନୁହେଁ ।

ପ୍ରଶ୍ନ-୧୮: ନାରଦଜୀ କହିଲେ, ହେ ବ୍ୟାସଜୀ, "ସକଳ ଶକ୍ତି ବିନିଯୋଗ କରି ମୁଁ ଭକ୍ତି ସାଧନାରେ ଲାଗି ପଡ଼ିଲି । ଭଗବତ୍ କୃପା ଓ ସଦ୍ ଗୁରୁ ଦେବଙ୍କ ମନ୍ତ୍ର ହିଁ କେବଳ ସମ୍ବଳ । ଦିନେ ମୋର ସଂଚିତ ଓ କ୍ରିୟାମାଣ କର୍ମର ଅନ୍ତ ହେଲା । ମୁଁ ରହିଲି ଅବଶ୍ୟ । କିନ୍ତୁ ମୋର ଅବସ୍ଥା କ'ଣ ହେଲା ଜାଣିଛ ମୁନିବର ?"

**ପ୍ରଯୁଜ୍ୟମାନେ ମୟି ତାଂ ଶୁଦ୍ଧାଂ ଭାଗବତୀଂ ତନୁମ୍ ।**
**ଆରବ୍ଧ କର୍ମ ନିର୍ବାଣୋ ନ୍ୟପତତ୍ ପାଞ୍ଚଭୌତିକଃ ।।୨୯।।**

ଉତ୍ତର:ହଠାତ୍ ଦିନେ ମୋର ପାଞ୍ଚଭୌତିକ ଶରୀରଟି ଖସି ପଡ଼ିଲା । ମୁଁ ସଁବାଳୁଆ ଦେହ ଛାଡ଼ି ହେଲି ରଙ୍ଗୀନ ପ୍ରଜାପତିଟିଏ । ମୋତେ ଚିନ୍ମୟ ଦିବ୍ୟ ଭଗବତ୍ ପାର୍ଷଦ ଦେହଟିଏ ମିଳିଗଲା । ସବୁ ଅଶରଣ ଶରଣ ଶ୍ରୀହରିଙ୍କ କୃପା । ସଦ୍ ଗୁରୁ ଶରଣାଗତିର ଫଳ ମାତ୍ର ।

ପ୍ରଶ୍ନ-୧୯ : କଳ୍ପାନ୍ତ ସମୟ ପହଞ୍ଚିଲା । ଅନନ୍ତ କୋଟି ବ୍ରହ୍ମାଣ୍ଡ ନାୟକ ନାରାୟଣ ଯୋଗ ନିଦ୍ରାରେ ଶୟନ କଲେ । ମୁଁ ଥିବା ବ୍ରହ୍ମାଣ୍ଡଟିକୁ (ଇଦଂ) ପ୍ରଳୟରେ ରୂପାନ୍ତରିତ କାରଣ ସୃଷ୍ଟିକୁ ବ୍ରହ୍ମାଜୀ ନିଜ ଶରୀର ସହିତ ନାରାୟଣଙ୍କ ନାଭିକମଳରେ ପ୍ରଳୟ ଜଳରେ (ଅମ୍ଭସି ) ସମଷ୍ଟି ପ୍ରାଣ ସହିତ କ'ଣ କଲେ ଶୁଣିବେ ବ୍ୟାସଜୀ?

**କଳ୍ପାନ୍ତ ଇଦଂ ଆଦାୟ ଶୟାନେଽମ୍ଭସି -ଉଦନ୍ୱତଃ ।**
**ଶିଶୟିଷୋଃ ଅନୁପ୍ରାଣଂ ବିବିଶେଽନ୍ତଃ ଅହଂ ବିଭୋଃ ।।୩୦।।**

ଉତ୍ତର:ଅଦୃଶ୍ୟ କରାଇ ଦେଲେ । ନଷ୍ଟ କଲେ ନି । ସୃଷ୍ଟି ରହିଲା । ମୁଁ ରହିଲି । ସ୍ଥୂଳ, ସୂକ୍ଷ୍ମ ରୂପରେ ନୁହେଁ । ଦିବ୍ୟ ରୂପରେ ବ୍ରହ୍ମାଙ୍କ ଶ୍ୱାସରେ (ଶିଶୟିଷୋଃ) ।

ପ୍ରଶ୍ନ-୨୦: ଯୋଗନିଦ୍ରାରେ ଆମ ପାଇଁ ପୁଣି ଏକ କଳ୍ପ ୧,୦୦୦ ଚତୁର୍ଯୁଗ ବିତିଗଲା । ବ୍ରହ୍ମାଜୀଙ୍କର ସୃଷ୍ଟି କରିବା ଇଚ୍ଛା (ସିସୃକ୍ଷତଃ) ହେଲା ଅଦୃଶ୍ୟ ସୃଷ୍ଟି ପୁଣି ଦୃଶ୍ୟମାନ ହେଲା । ମୋର ଅବସ୍ଥା କ'ଣ ହେଲା ଶୁଣିବ ମୁନିବର ?

**ସହସ୍ର ଯୁଗ ପର୍ଯ୍ୟନ୍ତେ ଉତ୍ଥାୟ-ଇଦଂ ସିସୃକ୍ଷତଃ ।**
**ମରୀଚି ମିଶ୍ରା ଋଷୟଃ ପ୍ରାଣେଭ୍ୟୋଽହଂ ଯଜ୍ଞିରେ ।। ୩୧।।**

ଉତ୍ତର: ସେଇ କାରଣ ଜଳରୁ ଚତୁଃସନ, ମରୀଚି, ବିଶିଷ୍ଟ, କ୍ରତୁ ପୁଲହ, ଆଦି ସପ୍ତର୍ଷିଙ୍କ ସହିତ ମୁଁ ମଧ୍ୟ ଜନ୍ମ ହେଲି (ଯଜ୍ଞିରେ) ।

ପ୍ରଶ୍ନ-୨୧:ସେହିଦିନଠାରୁ ଏ ତ୍ରିଲୋକୀ ସୃଷ୍ଟିରେ କେତେ ବେଳେ ସ୍ଥୂଳ ଭାବରେ ତ କେତେ ବେଳେ ଅଦୃଶ୍ୟ ଭାବରେ ନିଜ ଇଚ୍ଛାରେ ବିଚରଣ କରି ବୁଲୁଛି ମୁଁ। ମୋତେ ଦେବ, ଦାନବ, ମାନବ କେହି କେଉଁଠି ରୋକିବାକୁ ନାହିଁ । ଏସବୁ କିପରି ସମ୍ଭବ ହେଲା ଜାଣିଚ ଋଷିବର ?

**ଅନ୍ତଃ ବହିଃ ଚ ଲୋକାନ୍ ତ୍ରୀନ୍ ପର୍ଯ୍ୟେମି ଅସ୍କନ୍ଦିତଃ ବ୍ରତଃ ।**
**ଅନୁଗ୍ରହାତ୍ ମହାବିଷ୍ଣୋଃ ଅବିଘାତ ଗତିଃ କ୍ୱଚିତ୍ ।।୩୨।।**

ଉତ୍ତର:ନାରାୟଙ୍କ କୃପାରୁ । ସ୍ୱ ସାଧନା ବଳରୁ ନୁହେଁ ।

ପ୍ରଶ୍ନ-୨୨ ହେଇ ଦେଖ ବ୍ୟାସ ଜୀ । ଏ ବୀଣାଟି ମୋତେ ଶ୍ରୀହରି ପ୍ରଦାନ କରିଛନ୍ତି । ବଜାଇଲେ କେବଳ ରାଧେ-ରାଧେ ସ୍ୱର ବ୍ରହ୍ମରେ ମୋତେ ବ୍ରହ୍ମ ତନ୍ମୟ କରୁଛି । ସେଇ ମୂର୍ଚ୍ଛନାର ତାଳେ ତାଳେ ମୁଁ କ'ଣ କରୁଛି କହିଲ ?

**ଦେବଦତ୍ତାଂ ଇମାଂ ବୀଣାଂ                    ସ୍ୱରବ୍ରହ୍ମ ବିଭୂଷିତାମ୍ ।**
**ମୂର୍ଚ୍ଛୟିତ୍ୱା ହରି କଥାଂ            ଗାୟମାନଃ ଚରାମି-ଅହମ୍ ।।୩୩।।**

ଉତ୍ତର:କେବେ କେବେ ନାରାୟଣ, ରାମ,କୃଷ୍ଣ ନାମ ପୁଣି କେବେ ରାଧେ ରାଧେ ଗାଇ ନାଚି ବୁଲୁଛି । ଘର ସଂସାର ଜଞ୍ଜାଳ ନାହିଁ । ଆଶ୍ରମ ସମ୍ଭାଳିବା ଦାୟିତ୍ୱ ମଧ୍ୟ ନାହିଁ ।

ପ୍ରଶ୍ନ:-୨୩ ଆପଣ ଜାଣନ୍ତି ଭଗବାନଙ୍କ ଚରଣ କମଳରେ ସମସ୍ତ ତୀର୍ଥ ବାସ କରନ୍ତି । ହରି (ସ୍ୱ) କଥା ଶ୍ରବଣରେ କୀର୍ତ୍ତନରେ ମୋର ସଦା ସର୍ବଦା ଗତି, ମତି ଓ ରତି । ଏ ଦୁଇ କଥା କରି ବୀଣା ବାଦନ କରନ୍ତେ ସେ ମୋ ହୃଦୟ କମଳରେ ବିନା ବିଳମ୍ବରେ ଦର୍ଶନ ଦିଅନ୍ତି । କିପରି ସେ ଦର୍ଶନ ଜାଣିଛ ମହାମୁନି ?

**ପ୍ରଗାୟତଃ ସ୍ୱ ବିର୍ଯ୍ୟାଣି                    ତୀର୍ଥପାଦଃ ପ୍ରିୟଶ୍ରବାଃ ।**
**ଆହୂତ ଇବ ମେ ଶୀଘ୍ରଂ               ଦର୍ଶନଂ ଯାତି ଚେତସି ।।୩୪।।**

ଉତ୍ତର: ସତେ ଯେମିତି ମିଁ ତାଙ୍କୁ ପାଖରୁ ଡ଼ାକୁଛି।’’

**ସୂତ ଉବାଚ**

ପ୍ରଶ୍ନ-୨୪: ହେ ଶୌନକଜୀ, ଦେବର୍ଷି ନାରଦ ତାଙ୍କ ପୂର୍ବଜନ୍ମର ଜନ୍ମ-କର୍ମ ରହସ୍ୟ ପ୍ରକଟ୍ କଲେ । ବ୍ୟାସଦେବଙ୍କ ଠାରୁ ଯିବାକୁ ଅନୁମତି ପ୍ରାର୍ଥନା କଲେ । ଅନୁମତି ପାଇ କ’ଣ କଲେ ନାରଦ ଜୀ?

**ଏବଂ ସମ୍ଭାଷ୍ୟ ଭଗବାନ୍                    ନାରଦୋ ବାସବୀ ସୂତମ୍ ।**
**ଆମନ୍ତ୍ୟ ବୀଣାଂ ରଣୟନ୍            ଯଯୌ ଯଦୃଚ୍ଛିକୋ ମୁନିଃ । ।।୩୮।।**

ଉତ୍ତର:ନାରାୟଣ ପ୍ରଦତ୍ତ ନିଜ ମହତୀ ବୀଣାକୁ ବଜାଇ  ବଜାଇ ନିଜ ଇଚ୍ଛାରେ ନାରଦଜୀ ଚାଲିଲେ ପୁଣି କେଉଁ ହରିଭକ୍ତକୁ ହରିପ୍ରେମ ବାଣ୍ଟିବାକୁ । ସେ ତତ୍‌କ୍ଷଣାତ୍ ଅଦୃଶ୍ୟ ହୋଇଗଲେ । ସମୟ ତାଙ୍କର ଅତ୍ୟନ୍ତ ମୂଲ୍ୟବାନ୍ । ଧନ୍ୟ ସେ ଦେବର୍ଷି । ଧନ୍ୟ ତାଙ୍କର ମହତୀ ବୀଣା ଯନ୍ତ୍ର । ଭକ୍ତି ଧର୍ମର, ଧର୍ମମାର୍ଗୀ ଗୁରୁଙ୍କର ଭକ୍ତ ମାନଙ୍କର ଓ ଭଗବାନଙ୍କ ଜୟଗାନ କରିବା ପାଇଁ ସତେ ଯେମିତି ଏମାନେ ଠିକା ନେଇଛନ୍ତି ।

# ୨. ସତ୍ତ୍ୱଗୁଣୀ ଶ୍ରୋତା ପ୍ରକରଣ ସାର

## ଅଧ୍ୟାୟ ୪ର୍ଥ-୬ଷ୍ଠ

ଉତ୍ତରାଖଣ୍ଡରେ ଋଷିକେଶ ଠାରୁ ବଦ୍ରିନାଥ ଯିବା ବାଟରେ ପଡ଼େ କେଶବ ପ୍ରୟାଗ। ଏଠାରେ ଅଳକାନନ୍ଦ ନଦୀ ସହିତ ପବିତ୍ର ସରସ୍ୱତୀ ନଦୀର ସଙ୍ଗମ ହୋଇଛି । ଏହି ସରସ୍ୱତୀ କୂଳରେ ଅବସ୍ଥିତ ଶମ୍ୟାପ୍ରାସ ତୀର୍ଥ । ବେଦବ୍ୟାସଙ୍କ ତପସ୍ୟାସ୍ଥଳୀ । ପାଖେ ପାଖେ ବ୍ୟାସ ଗୁମ୍ଫା ଓ ଗଣେଶ ଗୁମ୍ଫା ବିଦ୍ୟମାନ । ମହାଭାରତ, ସତର ପୁରାଣ, ବେଦାନ୍ତ ଦର୍ଶନ, ପତଞ୍ଜଳି ଯୋଗ ଦର୍ଶନର ବ୍ୟାସଭାଷ୍ୟ ରଚନା, ବେଦ ବିଭାଜନ ସବୁ ସମାପ୍ତ । ବ୍ୟାସଜୀ ଭଗବାନଙ୍କ ଜ୍ଞାନ ଅବତାର । ଜ୍ଞାନର ଅସରନ୍ତି ଭଣ୍ଡାର ତାଙ୍କ ଉର୍ବର ମସ୍ତିଷ୍କ । ମନୁଷ୍ୟର କଳ୍ପନା ଶକ୍ତିର ବହିର୍ଭୂତ ଯାହାଙ୍କର ଜ୍ଞାନ । ତଥାପି ସେ ଆଜି ବିଷାଦଗ୍ରସ୍ତ ।

ଗଭୀର ଧ୍ୟାନ ବଳରେ ବ୍ୟାସଦେବ ଜାଣି ପାରିଲେ ଯେ କଳିଯୁଗର ମଣିଷ ବିଳାସୀ ଭୋଗୀ ହୋଇଯିବ । ଅଘସା ଦାନ୍ତ ଅବସ୍ଥାରେ ଚାହା ଟିକେ ନ ମିଳିଲେ, ଦାଢ଼ି କାଟିବାକୁ ଗରମ ଜଳ ଟିକେ ନ ମିଳିଲେ ପାଗଳାମି କରି ବସିବ । ଭଗବାନଙ୍କ କଥା ଶୁଣିବାକୁ ତାକୁ ବେଳ କାହିଁ ? ବେଦାନ୍ତ ପଢ଼ି କାହିଁକି ସେ ମୁଣ୍ଡ ଗରମ କରିବ ? କି ଯୋଗଧ୍ୟାନ, ଭକ୍ତି କରିବ ସେ ? ତା ପାଇଁ ସାଂଖ୍ୟ, ନ୍ୟାୟ, ବେଦାନ୍ତ ରାମାୟଣ, ମହାଭାରତ ସବୁ ମୂଲ୍ୟହୀନ ଓ ଅଦରକାରୀ ହେବ ।

ମହାଭାରତ ବର୍ଣ୍ଣିତ ଧୃତରାଷ୍ଟ୍ର ଏହି କଳିଯୁଗୀ ମଣିଷର ପ୍ରତୀକ । ଯାହା ମନରେ ନ୍ୟାୟ ଅନ୍ୟାୟ ନିର୍ବିଶେଷରେ ପୁତ୍ର ମୋହ, ସିଂହାସନ ଆସକ୍ତି ବସା ବାନ୍ଧିଛି ସେଇ ତ ଧୃତରାଷ୍ଟ୍ର । ମନ ମଧ୍ୟସ୍ଥିତ ପ୍ରବୃତ୍ତି-ନିବୃତ୍ତି ମାର୍ଗର ଦ୍ୱନ୍ଦ୍ୱ ଯୁଦ୍ଧ ହିଁ ମହାଭାରତ ଯୁଦ୍ଧର ସଙ୍କେତ । ନିବୃତ୍ତି ମାର୍ଗର ସାଧକ ପାଣ୍ଡବ ହୃତରାଷ୍ଟ୍ରର ପ୍ରତୀକ। ମହାଭାରତ ଶିକ୍ଷା ଦେଲେ ଯେ ପାଣ୍ଡବଙ୍କ ଭଳି ଈଶ୍ୱରଙ୍କ ଶରଣାଗତ ହେଲେ ଧର୍ମକୁ ଧରି ଜୀବ ହୁଏ ମୁକ୍ତ । ଈଶ୍ୱର ବିମୁଖ ହୋଇ ଧର୍ମକୁ ଅନାଦର କଲେ ଜୀବର ହୁଏ ପତନ ।

ମହାଭାରତର ଶ୍ରୀକୃଷ୍ଣଙ୍କ ଠାରେ ସଦାଚାରର ମହତ୍ତ୍ୱ ବେଶୀ । ପ୍ରେମ ସେଠାରେ ଗୌଣ । କଳିଯୁଗରେ ସଂସାର ଆସକ୍ତ ଲୋକର ପଇସା ହୋଇଗଲେ ବିଚରା ଆଉ ଠାକୁର ପୂଜନ ନିଜେ କରିବନି । ନୌକର ପୂଜାରୀ ରଖିଦେବ ପୂଜା ଲାଗି । ସେଇ ଲୋକ ପୁଣି ଗରିବ ହୋଇଗଲେ ପୂଜାରୀ କାଢ଼ି ହୁଏତ ନିଜେ ପୂଜିବ ଠାକୁର । ଭାଗବତର ଶ୍ରୀକୃଷ୍ଣ କିନ୍ତୁ ପୂର୍ଣ୍ଣ ପ୍ରେମିକ । ରସିକ ମଧ୍ୟ । ସଦାଚାର-

ଅସଦାଚାର ବିଚାର ପାଇଁ ସ୍ଥାନ କାଳ କାହିଁ ତାଙ୍କ ପାଇଁ ? ସେ ବଡ଼ ହଟିଆ । ଜିଦ୍‌ଖୋର । ନଚେତ ପୂତନା ଉଦ୍ଧାର, ଶିଶୁପାଳର ସାଯୁଜ୍ୟ ମୁକ୍ତି, କଂସ ମୁକ୍ତି ଆଦି ସମ୍ଭବ ହୁଅନ୍ତା କେମିତି?

ବ୍ୟାସଦେବଙ୍କ ବିଷାଦ ନିବାରଣ ଲାଗି ପହଞ୍ଚିଗଲେ ଦେବର୍ଷି ନାରଦ । ବିନା ଚେଷ୍ଟାରେ ବ୍ୟାସଦେବଙ୍କୁ ମିଳିଲା ସତ୍‌ସଙ୍ଗ । ମସ୍ତିଷ୍କରେ ଚରମ ଜ୍ଞାନରେ ବିଷାଦ ଆସିଲେ ହୃଦୟରେ ପ୍ରେମର ଝରଣା ଫିଟିବାକୁ ସୁଯୋଗ ମିଳେ ସାଧକକୁ । ବ୍ୟାସଙ୍କ ଆଲୌକିକ ମାନସିକ ବ୍ୟାଧିର ଲକ୍ଷଣ ବୁଝିପାରିଲେ ନାରଦଜୀ । ସଙ୍ଗେ ସଙ୍ଗେ ଆବଶ୍ୟକୀୟ ଔଷଧ, ପଥ୍ୟର ବ୍ୟବସ୍ଥା କଲେ । ତାହା କିଛି ଜଡ଼ି ବୁଟି ନୁହେଁ । ନାରଦଜୀ ଖୋଲି ବସିଲେ ଆପଣା ଜୀବନର କାହାଣୀ ପେଡ଼ି । ଜଣେ ସାମାନ୍ୟ ଦାସୀ ପୁତ୍ରରୁ ସେ କିଭଳି ଦେବର୍ଷି ନାରଦ ହୋଇପାରିଲେ ତାହା ସମଗ୍ର ମାନବ ଜାତିର ଆଦର୍ଶ । ସେ ଅମୂଲ୍ୟ ମହୌଷଧିଟି ହେଲା ସତ୍‌ସଙ୍ଗ ପ୍ରାପ୍ତି, ସାଧୁ ସେବା, ହରିକଥା ଶ୍ରବଣ, ତୀର୍ଥ ଭ୍ରମଣ, ତପସ୍ୟା ଓ ଅହନ୍ତା-ମମତା, ରାଗ-ଦ୍ୱେଷ ଆଦିଙ୍କର ତ୍ୟାଗ ପୂର୍ବକ ଶରଣାଗତି । ଏସବୁ ସହିତ ପୁଣି ଆହୁରି ଏକ ସର୍ତ୍ତ ଯୋଡ଼ିଲେ ନାରଦଜୀ । ବିଷୟ ସଙ୍ଗ ଓ ବିଷୟୀ ସଙ୍ଗୀ ସଙ୍ଗ ଉଭୟେ କୁସଙ୍ଗ । ଅତଏବ ବର୍ଜନୀୟ । ସେଥିପାଇଁ ଧ୍ୟାନ କରିବାକୁ ନାରଦଜୀଙ୍କୁ ଗୃହତ୍ୟାଗ କରି ବଣ ଖୋଜିବାକୁ ପଡ଼ିଛି। ସେ ଏକାନ୍ତ ଧ୍ୟାନ କରିବେ। ବନମେ, ମନମେ, କୋନେମେ ଏକାନ୍ତ ଧ୍ୟାନର ଫଳ ମିଳେ ଶୀଘ୍ର ।

ସାଧକ ନିଜକୁ ପ୍ରଶ୍ନ କରେ ଧ୍ୟାନ କଲେ କ'ଣ ସତରେ ପ୍ରଭୁ ମିଳିଯିବେ । ନାସ୍ତିକ କହୁଚି ମୁଁ ଈଶ୍ୱର ମାନେନା । ଈଶ୍ୱର କହନ୍ତି,ପୁଅ, ମୁଁ କିନ୍ତୁ ତୋତେ ମାନେ। ତାକୁ ମଣିଷ ଦେହଟିଏ ଦିଅନ୍ତି । ତାରି ଅନ୍ତର ମଧ୍ୟରେ ଛପି ବସନ୍ତି । ମା ପେଟରୁ ଠେଲି ବାହାରକୁ କଢ଼ାନ୍ତି । କହନ୍ତି ଯା, ପୁଅ, ବିଶାଳ ବ୍ରହ୍ମାଣ୍ଡରେ ସୁଖ, ସମ୍ପତ୍ତି, ସୁବିଧା, ଆନନ୍ଦ ଖଞ୍ଜି ରଖିଛି । କେଉଁଠି ଆନନ୍ଦ ଯଦି ମିଳୁଥିବ ଖୋଜ । ନ ପାଇଲେ ମୋତେ ଖୋଜିବୁ । ସେ ଯାଏଁ ମୁଁ ତୋ ବାଟ ଚାହିଁ ତୋ ହୃଦୟରେ ହିଁ ବସିଛି । ଭଗବାନ ଯେତେବେଳେ ଏଭଳି ଜଣେ ନାସ୍ତିକକୁ ସାଦର ଭରଣ ପୋଷଣ କରୁଛନ୍ତି ଶ୍ରଦ୍ଧାରେ ତାଙ୍କ ଭଜନ, ପୂଜନ କରୁଥିବା ଭକ୍ତକୁ କୃପା ନକରି ରହିବେ କିପରି? ଅର୍ଥାତ୍ ନିଶ୍ଚୟ ଦର୍ଶନ ଦେବେ । ମୀରା, ତୁକାରାମ, ଶବରୀ, ଦାସିଆ ବାଉରୀ ସମସ୍ତେ ଭଗବତ କୃପାପ୍ରାପ୍ତ । ସମସ୍ତେ ଜୀଇଁ ଥାଉ ଥାଉ ମାଲାମାଲ୍। ଆମ ପାଇଁ ସେମାନେ ସମସ୍ତେ ଜଣେ ଜଣେ ଆଦର୍ଶ ମହାପୁରୁଷ । ବିଗ୍ରହ ସେବା ସ୍ଥୂଳ ଦେହରେ ଇନ୍ଦ୍ରିୟରେ ହୁଏ । ଜପ ହୁଏ ସୂକ୍ଷ୍ମ ଦେହରେ ବା ମନରେ । ଧ୍ୟାନ(ସ୍ମରଣ) ହୁଏ କାରଣ ଦେହରେ । ଏମାନେ ସମସ୍ତେ ମିଶି ଭକ୍ତିଙ୍କୁ ଜନ୍ମ ଦିଅନ୍ତି । ଥରେ ଭକ୍ତି ଆସିଗଲେ ଏମାନେ ସ୍ୱତଃ ହେବେ । ପୁଣି ବିନା ପ୍ରୟାସରେ । ହରି ଭଜନରେ ଏ ତିନି କଥା ଯାକ ଅନ୍ତର୍ଭୁକ୍ତ । ଅତଏବ ହରିଭଜନର ଆରମ୍ଭ ଅଛି

କିନ୍ତୁ ପୂର୍ଣ୍ଣାହୂତି ନାହିଁ । ଏହା ଏକ ଅଖଣ୍ଡ କ୍ରିୟା ।

କଳିଯୁଗରେ ଚିତ୍ତ ଶୁଦ୍ଧି ଲାଗି ନାମ ସଂକୀର୍ତ୍ତନ ଅତ୍ୟନ୍ତ ଜରୁରୀ । ବିନା ପ୍ରାୟଶ୍ଚିତ୍ତରେ ପୂର୍ବକୃତ ପାପ ପସରା ସହଜରେ ଜଳିଯାଏ ଏଥିରେ । ବାରମ୍ବାର ସତ୍‌ସଙ୍ଗ କଲେ, ଅସତ୍ ସଙ୍ଗ ତ୍ୟାଗ କଲେ ଭଜନରେ କୀର୍ତ୍ତନରେ ମନ ଲାଗିଯାଏ। ସାଧୁର ସଂପତ୍ତି ଚାରି କଥା । ସଦାଚାର, ସଂଯମ, ସ୍ନେହ ଓ ସେବା ସୁଯୋଗ । ସତ୍‌ସଙ୍ଗରେ ଏସବୁ ଆପେ ଆପେ ମିଳେ । ବ୍ୟାସଦେବ ଭଗବାନଙ୍କର ଚବିଶ ଅବତାରରୁ ଗୋଟିଏ । ତାହା ପୁଣି ଜ୍ଞାନର ଅବତାର । ଭାଗବତ ଗ୍ରନ୍ଥ ରଚନା ଲାଗି ଲୋଡ଼ା ପଡ଼େ ଅନନ୍ୟ ଭକ୍ତି । ସେତକ ବିହୁନେ ସେ ଥିଲେ ବିଷାଦିତ । ଲୋଡ଼ା ପଡ଼ିଲା ସାଧୁ ସଙ୍ଗ । ଭଗବାନ ତତ୍‌କ୍ଷଣାତ୍ କୃପା କଲେ। ପଠେଇ ଦେଲେ ସନ୍ଥ ନାରଦଙ୍କୁ । ସେ ପହଞ୍ଚିଗଲେ ବ୍ୟାସ ଆଶ୍ରମରେ । ନାରଦଜୀ ବତେଇ ଦେଲେ ଭକ୍ତି ପ୍ରାପ୍ତିର ରହସ୍ୟ ।

ପୂର୍ବେ ବାଲ୍ମିକୀ ମଧ୍ୟ ନାରଦଜୀଙ୍କ ସତ୍‌ସଙ୍ଗରେ ଆସିଥିଲେ । ସେ ଜଗତର ଆଦିକବି ବୋଲାଇଲେ । ଲେଖିଲେ ଅମର କାବ୍ୟ ରାମ କଥା । ରାମାୟଣ ମହାଗ୍ରନ୍ଥ । ତାଙ୍କ ରାମାୟଣରେ ଶ୍ରୀରାମ ବ୍ରହ୍ମ । ଜଣେ ସର୍ବୋଚ୍ଚ ମର୍ଯ୍ୟାଦାବନ୍ତ ଆଦର୍ଶ ପୁରୁଷ। ବ୍ୟାସଜୀ ମଧ୍ୟ ଲେଖିଥାନ୍ତି ଅଧ୍ୟାତ୍ମ ରାମାୟଣ । ତାଙ୍କ ଶ୍ରୀରାମ ଜ୍ଞାନୀ, ଧ୍ୟାନୀମାନେ ବୁଝିବା ଭଳି ପରମାତ୍ମା । କଳିଯୁଗୀ ଅଳ୍ପ ବୁଦ୍ଧିମାନ ଲୋକଙ୍କ ପାଇଁ ସନ୍ଥ ତୁଳସୀ ଲେଖିଲେ ଶ୍ରୀରାମ ଚରିତ ମାନସ । ତାଙ୍କ ଶ୍ରୀରାମ କେବଳ ବ୍ରହ୍ମ କି ପରମାତ୍ମା ନୁହନ୍ତି । ସେ ଗୋଟାସୁଦ୍ଧା ଭଗବାନ । ସେ କେବଳ ସତ୍‌ଚିତ୍ ଆନନ୍ଦମୟ ବ୍ରହ୍ମ ନୁହନ୍ତି । ସେ ଲୀଳାମୟ । ଶ୍ରୀରାମଙ୍କ ମର୍ଯ୍ୟାଦା ଲୀଳାରେ ଚିତ୍ତ ତନ୍ମୟ ହେଲେ ସିନା ଶ୍ରୀକୃଷ୍ଣଙ୍କ ରସମୟ ଲୀଳାର କ୍ଷୁଧା ଜାଗ୍ରତ ହେବ । ସୁତରାଂ ସଦ୍‌ଗୁଣୀ ଶ୍ରୋତାର ଦୃଷ୍ଟାନ୍ତ ବେଦବ୍ୟାସ । ନାରଦଙ୍କ ସଦ୍‌ସଙ୍ଗର ପୂର୍ଣ୍ଣ ଲାଭ ଉଠାଇଛନ୍ତି ସେ ।

ବାଲ୍ମିକୀ, ବ୍ୟାସ, ତୁଳସୀ ଦାସ ସମସ୍ତେ ସାଧୁ ସଙ୍ଗର ଜୟଗାନ କରିଗଲେ। କସ୍ମିନ୍ କାଳେ ଜଗତରେ ସାଧୁଙ୍କର ଅଭାବ ନଥାଏ । ଅଭାବ ଥାଏ ସଚ୍ଚା ଶିଷ୍ୟଙ୍କର କାଳେ କାଳେ । ଗୁରୁ ମିଳେ ଲାଖ ଲାଖ ଚେଲା ନ ମିଳେ ଏକ । ସତ୍‌ସଙ୍ଗ ଦ୍ୱାରା ପ୍ରଥମେ ରଜ, ତମୋଗୁଣରୁ ମୁକ୍ତ ହେଲେ ସାଧକ ଶ୍ରେଣୀରେ ସେ ନାମ ଲେଖାଏ। ତା ମନରେ ଶ୍ରବଣ, କୀର୍ତ୍ତନ, ସେବାରେ ବ୍ୟାକୁଳତା ସ୍ୱତଃ ଜାଗ୍ରତ ହେବ ହିଁ ହେବ । ତେଣିକି ତାଙ୍କୁ ସଦ୍‌ଗୁରୁ ଆପେ ଆପେ ଧରାଦେବେ । ଈଶ୍ୱର କୃପା ଅଣ୍ଟି ନ ପଚେଇଲେ ମଧ୍ୟ ମିଳିବ । ଯିବ କୁଆଡ଼େ ? ଭକ୍ତ ପୁଣ୍ଡଳିକଙ୍କୁ ଦର୍ଶନ ଦେବା ଲାଗି ଦ୍ୱାରକାନାଥ ସ୍ୱୟଂ ଅପେକ୍ଷା କଲେ । ଠିଆ ହୋଇ ହୋଇ ଅଣ୍ଟା କାଟିଲା । **ପୁଣ୍ଡଳିକ ଇଟା ଖଣ୍ଡେ ଦେଇ ପିତାମାତାଙ୍କ ସେବା ସମାପ୍ତି ପର୍ଯ୍ୟନ୍ତ ଅପେକ୍ଷା କରିବାକୁ କହିଲେ । କେଡ଼େ ପାଗଳା ଏ ଭକ୍ତ, ଭଗବାନ ଓ ଭକ୍ତି ଧର୍ମ !! ସେମାନଙ୍କର ଜୟ ହେଉ ।**

- ୦ -

# ପ୍ରକରଣ-୩

## (ଅଧ୍ୟାୟ ୭ମ-୧୯ ଶ)

### ଶ୍ରେଷ୍ଠ ଅଧିକାରୀ-ନିର୍ଗୁଣୀ ଶ୍ରୋତା ଓ ନିର୍ଗୁଣୀ ବକ୍ତା ପ୍ରସଙ୍ଗ

## ଅଥ ୭ମ ଅଧ୍ୟାୟଃ

### (ଦ୍ରୋଣାଚାର୍ଯ୍ୟଙ୍କ ପୁତ୍ର ଅଶ୍ୱତ୍ଥାମାଙ୍କୁ ଦଣ୍ଡବିଧାନ)

କର୍ମ ଯୋଗ ଏକ ଅତ୍ୟନ୍ତ ଗୁପ୍ତ ମାର୍ଗ । ଜ୍ଞାନଯୋଗ ଗୁପ୍ତତର ମାର୍ଗ । ଭକ୍ତିଯୋଗ ଗୁପ୍ତତମ ମାର୍ଗ । ସଂପୂର୍ଣ୍ଣ ହରି ଶରଣାଗତି ପରେ ଏ ମାର୍ଗ ଖୋଲିଥାଏ ହରି ଗୁରୁ ଉଭୟଙ୍କ କୃପାରୁ । ଏହାର ଅଧିକାରୀ ଶ୍ରୋତା ଅତ୍ୟନ୍ତ ବିରଳ ।

କର୍ମର ଫଳ ସ୍ୱର୍ଗ, ଜ୍ଞାନର ଫଳ ମୁକ୍ତି, ଯୋଗର ଫଳ ସିଦ୍ଧି ଏ ତିନି ଲୋଭନୀୟ ଆସକ୍ତି ବିମୁଖ ଶ୍ରୋତା-ବକ୍ତା, ଓ ଯେଉଁ ମାନଙ୍କର ଜୀବନର ଏକମାତ୍ର ଲକ୍ଷ୍ୟ କେବଳ ହରିକଥା ଶ୍ରବଣ-କୀର୍ତ୍ତନ ସେମାନେ ନିର୍ଗୁଣୀ ସାଧକ ପଦବାଚ୍ୟ ।

ସୁତରାଂ ପରବର୍ତ୍ତୀ ୧୨ ଅଧ୍ୟାୟରେ ସଂସାରର ଶ୍ରେଷ୍ଠ ନିର୍ଗୁଣୀ ଶ୍ରୋତା ପରୀକ୍ଷିତ ମହାରାଜଙ୍କ ମାତୃ ଶୁଦ୍ଧି, ପିତୃ ଶୁଦ୍ଧି ବଂଶ ଶୁଦ୍ଧି, ଅନ୍ନ ଶୁଦ୍ଧି ଓ ଅନ୍ତଃକରଣ ଶୁଦ୍ଧି-ଏହି ପଞ୍ଚ ଶୁଦ୍ଧି କଥା କୀର୍ତ୍ତିତ ହେବ ।

ଶେଷ ଅଧ୍ୟାୟରେ ବର୍ଣ୍ଣିତ ହେବ ନିର୍ଗୁଣୀ ବକ୍ତା ବ୍ୟାସାତ୍ମଜ ଶୁକଦେବ ପରମହଂସଙ୍କ ନିର୍ଗୁଣୀ ବକ୍ତା ଲକ୍ଷଣ ଓ ତାଙ୍କର ଅଲୌକିକ ପ୍ରାକଟ୍ୟ ।

**ଶୌନକ ଉବାଚ**

ପ୍ରଶ୍ନ-୨୫: ନାରଦ ମହର୍ଷିଙ୍କ ଉପଦେଶରେ ବ୍ୟାସଦେବ ହରିଲୀଳା ପୂର୍ଣ୍ଣ ହରିଭକ୍ତି ଉତ୍ପାଦକ ହରିକଥା ଗ୍ରନ୍ଥଟିଏ ରଚନାରେ ଲାଗିଗଲେ ନା ମନ୍ତ୍ର ଜପ କରି ସମାଧିରେ ରହି ତପସ୍ୟା କଲେ ?

**ନିର୍ଗତେ ନାରଦେ ସୂତ ଭଗବାନ୍ ବାଦରାୟଣଃ ।**
**ଶ୍ରୁତବାନ୍ ତଦ୍ ଅଭିପ୍ରେତଂ ତତଃ କିଂ ଅକରୋଦ୍ ବିଭୁଃ ॥୧॥**

ଉତ୍ତରः ଶୌନ କହିଲେ, ‘‘ହେ ସୂତଗୋସ୍ୱାମୀ,ବ୍ୟାସଦେବ ସ୍ୱୟଂ ବ୍ରହ୍ମବେତ୍ତା, ବେଦ ବିଭାଜନ କର୍ତ୍ତା ବେଦ ମର୍ମଜ୍ଞ ଭଗବାନଙ୍କର ବ୍ରହ୍ମଜ୍ଞାନର ସାକାର ଅବତାର (ବିଭୁଃ) । ତଥାପି ଭଗବାନଙ୍କର ଗୁଣାବତାର ବ୍ରହ୍ମା,ଶଙ୍କରଙ୍କ ସଦୃଶ ତାଙ୍କପାଇଁ ମଧ୍ୟ ଭକ୍ତି ମନ୍ତ୍ରଦ୍ୱାରା ଭକ୍ତି ସାଧନା ଦରକାର ପଡ଼ିଲା!! ଜ୍ଞାନରେ ବିଷାଦ ଆସିଲେ ଭକ୍ତି କରିବାକୁ ହୁଏ । ପ୍ରଥମେ ଭକ୍ତିପୂର୍ଣ୍ଣ ତପସ୍ୟା କରି ପରେ ଗ୍ରନ୍ଥ ରଚନା କଲେ ।

ସୂତ ଉବାଚ

ପ୍ରଶ୍ନ-୨୬: ବ୍ରହ୍ମନଦୀ ସରସ୍ୱତୀଙ୍କର ପଶ୍ଚିମ ତଟରେ ଶମ୍ୟାପ୍ରାସ ନାମକ ସ୍ଥାନ । ସେ ସ୍ଥାନର ପବିତ୍ରତା କାହିଁକି ପ୍ରସିଦ୍ଧି?

**ବ୍ରହ୍ମନଦ୍ୟାଂ ସରସ୍ୱତ୍ୟାଂ ଆଶ୍ରମ ପଶ୍ଚିମତଟେ ।**
**ଶମ୍ୟା ପ୍ରାସ ଇତି ପ୍ରୋକ୍ତ ଋଷିଣାଂ ସତ୍ରବର୍ଦ୍ଧନ ।।୨।।**

ଉତ୍ତରः ସେଠାରେ ମୁନିଋଷିମାନଙ୍କ ଦ୍ୱାରା ଅନେକ ବର୍ଷ ବ୍ୟାପୀ ଯଜ୍ଞାନୁଷ୍ଠାନ ସବୁ ହେଉଥାଏ ଶ୍ରୀହରି ବିଷ୍ଣୁଙ୍କୁ ପ୍ରସନ୍ନ କରାଇବାକୁ ।

ପ୍ରଶ୍ନ-୨୭: ସେଠାରେ ପହଞ୍ଚି ବ୍ୟାସଦେବ କ’ଣ ସବୁ କଲେ?

**ତସ୍ମିନ୍ ସ୍ୱ ଆଶ୍ରମେ ବ୍ୟାସୋ ବଦରୀ ଷଣ୍ଡ ମଣ୍ଡିତେ ।**
**ଆସୀନୋଽପ ଉପସ୍ପୃଶ୍ୟ ପ୍ରଣିଦଧୌ ମନଃ ସ୍ୱୟମ୍ ।।୩।।**

ଉତ୍ତରः ସେଇଠି ବ୍ୟାସଦେବଙ୍କର ନିଜ ସାଧନାସ୍ଥଳୀ । ଆଶ୍ରମର ଚାରିପଟେ ବରକୋଳି ବୃକ୍ଷର ସୁନ୍ଦର ବନାନୀ । ସେଠାରେ ପବିତ୍ର ଆସନରେ ବସିଲେ ମୁନିଶ୍ରେଷ୍ଠ ବ୍ୟାସ । ଆଚମନ କଲେ । ଓଁ ବ୍ରହ୍ମନାମ ଉଚ୍ଚାରଣ କରି ମନକୁ ସମାହିତ /ସ୍ଥିର କଲେ । ସେ ବର୍ତ୍ତମାନ ନିର୍ବିକଳ୍ପ ସମାଧିର ଖୋଳ/କବଚ ଭିତରେ ।

ପ୍ରଶ୍ନ-୨୮: ରାଧା-ଗୋବିନ୍ଦଙ୍କର ନାମ, ରୂପ,ଲୀଳା, ଗୁଣ, ଧାମ ଓ ସନ୍ଥଙ୍କ ଠାରେ ମନକୁ ସ୍ଥିର ଭାବରେ ଲଗାଇଦେଲେ । ଫଳତଃ ବ୍ୟାସଜୀ କ’ଣ ଦର୍ଶନ କଲେ ସେତେବେଳେ ?

**ଭକ୍ତିଯୋଗେନ ମନସି ସମ୍ୟକ୍ ପ୍ରଣିହିତେଽମଳେ**
**ଅପଶ୍ୟତ୍ ପୁରୁଷଂ ପୂର୍ଣ୍ଣଂ ମାୟାଂ ଚ ତତ୍ ଅପାଶ୍ରୟମ୍।।୪।।**

ଉତ୍ତରः ଶ୍ରୀମନ୍ ନାରାୟଣଙ୍କ ସହିତ ମହାମାୟାଙ୍କ ଦର୍ଶନ କଲେ ସ୍ୱ ହୃଦୟକମଳ ଆସନରେ ଯେଉଁ ମହାମାୟାଙ୍କ କାର୍ଯ୍ୟରେ ମୋହିତ ହୋଇ ସତ୍ତ୍ୱ-

ରଜ-ତମୋ ଗୁଣୀ କାର୍ଯ୍ୟ କରି ସ୍ୱୟଂ ସଚ୍ଚିଦାନନ୍ଦ ଆତ୍ମା ହୋଇ ମଧ୍ୟ ଜୀବାତ୍ମା ଆଶେଷ ଦୁଃଖ ଭୋଗିଥାଏ ।

ପ୍ରଶ୍ନ-୨୯: ଯେଉଁ ମାୟାଙ୍କ ରହସ୍ୟ ସାଧାରଣ ଲୋକେ ଭେଦ କରିପାରିନଥାନ୍ତି(ଲୋକସ୍ୟ ଅଜାନତୋ) ବିଦ୍ୱାନ୍ ବ୍ୟାସଦେବ ଏହି ଭକ୍ତ କଣ୍ଠହାର ‘‘ଭାଗବତ କଥା’’ କୁ (ସାତ୍ତ୍ୱତ ସଂହିତାଂ) ନିର୍ମାଣ କଲେ (ଚକ୍ରେ) କି ଉଦ୍ଦେଶ୍ୟରେ ?

**ଅନର୍ଥ-ଉପଶମଂ ସାକ୍ଷାତ୍ ଭକ୍ତିଯୋଗଂ ଅଧୋକ୍ଷଜେ ।**
**ଲୋକସ୍ୟ-ଅଜାନତୋ ବିଦ୍ୱାନ୍ ଚକ୍ରେ ସାତ୍ତ୍ୱତ ସଂହିତାମ୍ ।।୬।।**

ଉତ୍ତର: ଅନ୍ୟ ଦେବୀ ଦେବତାଙ୍କୁ ଭକ୍ତି ନକରି କେବଳ ଭଗବାନଙ୍କୁ ଭକ୍ତ କଲେ ଭୁକ୍ତି ମୁକ୍ତି ଜନିତ ସାମାନ୍ୟ ଲକ୍ଷ୍ୟ ସିଦ୍ଧି ପାଇଁ ଭୋଗୁଥିବା ଦୁଃଖ କଷ୍ଟରୁ କଳି ଯୁଗର ଜୀବ ରକ୍ଷା ପାଇପାରିବ । ଏତିକି ତାଙ୍କର ଉଦ୍ଦେଶ୍ୟ ।

ପ୍ରଶ୍ନ-୩୦ : ଏହି ଭାଗବତ ଶ୍ରବଣ କଲେ କ’ଣ ହୁଏ ଓ କ’ଣ ୩ କଥା ହୁଏନା ?

**ଯସ୍ୟାଂ ବୈ ଶ୍ରୂୟମାଣାୟାଂ କୃଷ୍ଣେ ପରମ ପୁରୁଷେ ।**
**ଭକ୍ତିଃ ଉତ୍ପଦ୍ୟତେ ପୁଂସଃ ଶୋକ ମୋହ ଭୟ-ଅପହା ।।୭।।**

ଉତ୍ତର: ପୂର୍ଣ୍ଣତମ ପୁରୁଷୋତ୍ତମଙ୍କ ଠାରେ ଭକ୍ତି ଉତ୍ପନ୍ନ ହୁଏ । ସଂସାର ରୂପେ ଦିଶୁଥିବା ଅନୁକୂଳ ବସ୍ତୁ, ବ୍ୟକ୍ତି ଓ ପରିସ୍ଥିତି ନଷ୍ଟ ହେଲେ ଦୁଃଖ (ଶୋକ) ହୁଏନା । ଏସବୁ ଥିଲେ ସେଥିରେ ଭୋଗ ଆସକ୍ତି (ମୋହ) ହୁଏନା । ପୁଣି ଏସବୁ ଥିଲେ ମଧ୍ୟ କାଳେ ଭବିଷ୍ୟତରେ ପ୍ରତିକୂଳ ହୋଇ ଦୁଃଖର କାରଣ ହେବେ ଏଥିପାଇଁ ଭୟ ମଧ୍ୟ ହୁଏନା (ଭୟ-ଅପହା) ।

ପ୍ରଶ୍ନ-୩୧: ଏ ମହାଗ୍ରନ୍ଥ ନିର୍ମାଣ କରି ବ୍ୟାସଦେବ ଭାଗବତ ବର୍ଣ୍ଣିତ ଦିବ୍ୟ ଶ୍ଳୋକମାନଙ୍କୁ ବାରମ୍ବାର ଆବୃତ୍ତି କରି କାହାକୁ ପଢ଼ାଇଲେ ?

**ସ ସଂହିତାଂ ଭାଗବତୀଂ କୃତ୍ୱା-ଅନୁକ୍ରମ୍ୟ ଚ-ଆତ୍ମଜମ୍ ।**
**ଶୁକଂ ଅଧ୍ୟାପୟାମାସ ନିବୃତ୍ତି-ନିରତଂ ମୁନିଃ ।।୮।।**

ଉତ୍ତର: ଆଦୌ ଗୃହସ୍ଥାଶ୍ରମ କରିନଥିବା ପରମ ବୈରାଗୀ ସ୍ୱପୁତ୍ର (ନିବୃତ୍ତି-ନିରତଂ-ଆତ୍ମଜଂ) ଶୁକ ଦେବ ପରମହଂସଙ୍କୁ ।

**ଶୌନକ ଉବାଚ**

ପ୍ରଶ୍ନ-୩୨ :ଏ କଥା ଶୁଣି ଶୌନକଜୀ ପୁଣି କି ପ୍ରଶ୍ନ ପଚାରି ବସିଲେ ?

**ସ ବୈ ନିବୃତ୍ତି ନିରତଃ ସର୍ବତ୍ର-ଉପେକ୍ଷକୋ ମୁନିଃ ।**
**କସ୍ୟ ବା ବୃହତୀଂ ଏତାଂ ଆତ୍ମାରାମଃ ସମଭ୍ୟସତ୍ ॥୯॥**

ଉତ୍ତର: ଶୁକଦେବ ତ ଜନ୍ମରୁ ଅତ୍ୟନ୍ତ ନିବୃତ୍ତି ପରାୟଣ ଥିଲେ । ଯେକୌଣସି ସଂସାର ବସ୍ତୁ କାମିନୀ-କାଞ୍ଚନ-କାଦମ୍ବରୀ ଅନାସକ୍ତ (ଉପେକ୍ଷକୋ) ଥିଲେ । ଜଣେ ଆତ୍ମାରାମ ଯୋଗୀ ହୋଇ ୧୮,୦୦୦ ମନ୍ତ୍ର ବିଶିଷ୍ଟ ଏ ବିଶାଳ ସଂହିତାକୁ କିପରି ଆୟତ୍ତ କଲେ ପୁଣି ଗ୍ରହଣ କଲେ ? ଏହାତ ଆମମାନଙ୍କୁ ଅତ୍ୟନ୍ତ ଆଶ୍ଚର୍ଯ୍ୟବୋଧ ହେଉଛି ।

**ସୂତ ଉବାଚ**

ପ୍ରଶ୍ନ-୩୩: ଏହାର ଉତ୍ତରରେ ସୂତ ଗୋସ୍ୱାମୀ କି କାରଣ ଦର୍ଶାଇଲେ ?

**ଆତ୍ମାରାମାଃ ଚ ମୁନୟୋ ନିର୍ଗ୍ରନ୍ଥା ଅପି-ଉରକ୍ରମେ ।**
**କୁର୍ବନ୍ତୀ-ଅହୈତୁକୀଂ ଭକ୍ତିଂ ଇତ୍ଥମ୍ଭୂତ ଗୁଣୋ ହରିଃ ॥୧୦॥**

ଉତ୍ତର: ଶ୍ରୀହରିଙ୍କ ନାମ, ରୂପ ଲୀଳା, ଧାମ ଗୁଣ ଓ ସନ୍ଥ ଏ ଛଅ କଥା ଅତ୍ୟନ୍ତ ରସମୟ ଓ ଦିବ୍ୟବସ୍ତୁ । ଏମାନେ ସମସ୍ତେ ଯୋଗ ମାୟା ଶ୍ରୀ ରାଧାଙ୍କର **ମହାଶକ୍ତି ଶାଳୀ** ସ୍ୱାଂଶ ସ୍ୱରୂପ । ଏମାନେ ଆକର୍ଷଣ କରନ୍ତି ଆତ୍ମାରାମ ମୁନିଗଣଙ୍କୁ, ଧନୀ-ନିର୍ଦ୍ଧନ, ଗ୍ରନ୍ଥ ପଢୁଆ ବିଦ୍ୱାନା ବା ଗ୍ରନ୍ଥ ନ ପଢ଼ିଥିବା ମୂର୍ଖଙ୍କୁ । ଖାଲି ସେତିକି ନୁହେଁ ଏହି ଆକର୍ଷିତ ସାଧକଗଣ ବିନା କାରଣରେ ଭଗବାନ (ଉରକ୍ରମ) ଙ୍କୁ ନିଷ୍କାମ ଭକ୍ତି କରିଥାନ୍ତି । କିଛି ପାଇବା ଉଦ୍ଦେଶ୍ୟରେ ନୁହେଁ ବରଂ ଯାହା କିଂଚନ ଦେହାସକ୍ତି, ଗୃହାସକ୍ତି, ଜ୍ଞାନାସକ୍ତି, ଅହଂକାରାସକ୍ତି ଅଛି ତାକୁ ସବୁ ସମର୍ପଣ କରିଦେବାକୁ ଓ ଅକିଂଚନ ଭକ୍ତ ବୋଲାଇବାକୁ ।

ପ୍ରଶ୍ନ-୩୪: ଶୁକଦେବ ପରମହଂସଙ୍କ ବୁଦ୍ଧି ପିଲାଦିନରୁ ପିତା -ମାତା- ଗୃହ-ସଂସାର କେଉଁଥିରେ ଲାଗିନଥିଲା। ସେ ଜନ୍ମ ହେଉ ହେଉ ପ୍ରବ୍ରଜ୍ୟା ଗ୍ରହଣ କରିଥିଲେ । ଏ ପରମହଂସ ସଂହିତା ସେ ପୁଣି କେଉଁ କାରଣରୁ ଛାଡ଼ି ପାରିଲେନି ?

**ହରେଃ ଗୁଣ-ଆକ୍ଷିପ୍ତ ମତିଃ ଭଗବାନ୍ ବାଦରାୟଣିଃ ।**
**ଅଧଗାନ ମହତ୍ ଆଖ୍ୟାନଂ ନିତ୍ୟଂ ବିଷ୍ଣୁ ଜନପ୍ରିୟଃ ॥୧୧॥**

ଉତ୍ତରः କୃଷ୍ଣଙ୍କ ଭାବମୟୀ, ରସମୟୀ କଥାର ଏଇ ଅଦ୍ଭୁତ କରାମତି । ଟାଣି ଆଣିଲା ମହାଯୋଗୀ, ସଂସାର ବିରାଗୀ, ଅରଣ୍ୟବାସୀ, ନିର୍ବିକଳ୍ପ ସମାଧିସ୍ଥ ମୌନ ମହାମାନବଙ୍କୁ ଭକ୍ତି ଶାସ୍ତ୍ରର ମୁକୁଟ ମଣି ଭାଗବତ ଶ୍ରବଣ ଲାଗି । ସେଇ ଦିନରୁ ଜ୍ଞାନରୂପ ଦଣ୍ଡ (ପତାକା ଖୁଣ୍ଟ) ର ଅଗ୍ରଭାଗରେ ଭକ୍ତିର ଜୟ ପତାକା ସଗର୍ବରେ ଉଡ଼ିଲା । ଅତୀତର ମହାଜ୍ଞାନୀ ଉଦ୍ଧବ ପରମ ହଂସଙ୍କ ପ୍ରେମ ପ୍ରାପ୍ତି ଗାଥା ସ୍ମରଣ କରାଇଲା । ବିନା ଭକ୍ତିରେ ଜ୍ଞାନ ମଧ୍ୟ ଅହଂକାରର କାରଣ ହୁଅନ୍ତି ।

ପ୍ରଶ୍ନ-୩୫: ସୂତ ଗୋସ୍ୱାମୀ ସିଧାସଳଖ କୃଷ୍ଣ କଥା ନକହି ପ୍ରଥମେ କୃଷ୍ଣ କଥା ସମ୍ବନ୍ଧିତ ଅନ୍ୟ କାହାର କଥା ସବୁ ବର୍ଣ୍ଣନା କଲେ ?

**ପରୀକ୍ଷିତୋଽଥ ରାଜର୍ଷେଃ ଜନ୍ମ କର୍ମ ବିଳାପନମ୍ ।**
**ସଂସ୍ଥାଂ ଚ ପାଣ୍ଡୁ ପୁତ୍ରାଣାଂ ବକ୍ଷ୍ୟେ କୃଷ୍ଣକଥା- ଉଦୟମ୍ ।।୧୨।।**

ଉତ୍ତରःରାଜା ହେଲେ ମଧ୍ୟ ଋଷି ପ୍ରତିମ ସାଧକ ପରୀକ୍ଷିତ । ତାଙ୍କର ଜନ୍ମ, କର୍ମ, ମୋକ୍ଷ (ବିଳାପନଂ) ଓ ତା ସହିତ ପାଞ୍ଚଜଣ ପାଣ୍ଡବମାନଙ୍କ ସଂକ୍ଷେପ ଜୀବନୀ । ଶେଷରେ ସେମାନଙ୍କର ମୁକ୍ତି ଓ ସ୍ୱର୍ଗାରୋହଣ କଥା ।

ପ୍ରଶ୍ନ-୩୬:ମହାଭାରତ ଯୁଦ୍ଧ ଶେଷ ହୋଇଯାଇଛି । ଧରଣୀରାଣୀ ରକ୍ତସ୍ନାନ କରିଛନ୍ତି । ଦୁର୍ଯ୍ୟୋଧନଙ୍କ ଜାନୁଭଗ୍ନ ହୋଇଛି । ଦ୍ରୋଣ ପୁତ୍ର ଅଶ୍ୱଦ୍ ଥାମା ପାଞ୍ଚ ପାଣ୍ଡବଙ୍କ ବାଳକ ପୁତ୍ରଙ୍କ କଟାମୁଣ୍ଡ ନେଇ ଦୁର୍ଯ୍ୟୋଧନଙ୍କୁ ଉପହାର ଦେଇଛନ୍ତି । ଦ୍ରୌପଦୀ ବିଳାପ କରି ଭୂଇଁରେ ଲୋଟୁଛନ୍ତି । ଅର୍ଜୁନ ଭଗବାନଙ୍କ ସହ ରଥ ଦୌଡ଼ାଇ ଅନୁଧାବନ କରିଛନ୍ତି ଅଶ୍ୱଦ୍‌ଥାମାଙ୍କର । ନିଜର ପ୍ରାଣ ସଂକଟ ସମୟରେ ସେଇ ଅଶ୍ୱଦ୍‌ଥାମା କ'ଣ କଲେ ?

**ଅଥ-ଉପସ୍ପୃଶ୍ୟ ସଲିଳଂ ସଂଦଧେ ତଦ୍ ସମାହିତଃ ।**
**ଅଜାନନ୍ ଅପି ସଂହାରଂ ପ୍ରାଣକୃଚ୍ଛ୍ର ଉପସ୍ଥିତେ ।।୨୦।।**

ଉତ୍ତରःଜଳ ଆଚମନ କରି ଅଭିମନ୍ତ୍ରିତ କରିଛନ୍ତି ଶେଷ ଅସ୍ତ୍ର । ତାହା ସାମାନ୍ୟ ଅସ୍ତ୍ର ନୁହେଁ, ବ୍ରହ୍ମାସ୍ତ୍ର । ଫେରେଇ ଆଣିବା ଉପାୟ ଜଣା ନଥିଲେ ମଧ୍ୟ ସେ ତାଙ୍କର ଶେଷ ଅସ୍ତ୍ର ପ୍ରୟୋଗ କରିଛନ୍ତି ସୃଷ୍ଟିର ବିନାଶ ପାଇଁ । ନିଜେ ମରିବେ ଏକଥା ଜାଣି ମଧ୍ୟ । ସୃଷ୍ଟି ଭାସିଲେ ଭାସି ଯାଉ । ନଷ୍ଟସ୍ୟ କାନ୍ୟ ଗତିଃ!!!

## ଅର୍ଜୁନ ଉବାଚ

ପ୍ରଶ୍ନ-୩୭: ଅଦୂରରୁ ବ୍ରହ୍ମଶର ଆସୁଥିବା ଜାଣିପାରି ଅର୍ଜୁନ ମହାବାହୁ ଶ୍ରୀକୃଷ୍ଣଙ୍କ ପାଖରେ ଶରଣାପନ୍ନ ହୋଇ ସ୍ତୁତିରେ ତାଙ୍କର କିକି ମହାତ୍ମ୍ୟ ବର୍ଣ୍ଣନ କଲେ ?

**କୃଷ୍ଣ କୃଷ୍ଣ ମହାବାହୋ ଭକ୍ତାନାଂ ଅଭୟଙ୍କର ।**
**ତ୍ୱଂ ଏକୋ ଦହ୍ୟମାନାନାଂ ଅପବର୍ଗୋଽସି ସଂସୃତେଃ ।।୨୨।।**

ଉତ୍ତର: ପାର୍ଥ କହିଥିଲେ, "କେବଳ ଶ୍ରୀକୃଷ୍ଣହିଁ ଭକ୍ତମାନଙ୍କ ଭୟତ୍ରାତା ଓ ଅଭୟଦାତା । କାରଣ ସେ ସର୍ବଶକ୍ତିମାନ ଓ ଶରଣ ବତ୍ସଳ । ଜନ୍ମ-ମରଣ ଚକ୍ରରେ (ସଂସୃତେଃ) ପଡ଼ି ଅପାର ଦୁଃଖ ଜ୍ୱାଳାରେ ସଢ଼ୁଥିବା ଲୋକମାନଙ୍କର (ଦହ୍ୟମାନାନାଂ) ଏକମାତ୍ର (ଏକୋ) ମୁକ୍ତିଦାତା (ଅପବର୍ଗୋ) ।"

## ଶ୍ରୀ ଭଗବାନ ଉବାଚ

ପ୍ରଶ୍ନ-୩୮: ବହୁ ଦୂରରୁ ବ୍ରହ୍ମାସ୍ତ୍ରର ତେଜ ଦେଖି ଅର୍ଜୁନ ବ୍ୟାକୁଳ ହେବାରୁ ଭଗବାନ ତାଙ୍କୁ ନିଜ ଆଡ଼କୁ ମାଡ଼ି ଆସୁଥିବା ଅସ୍ତ୍ର ବିଷୟରେ କି ବିବରଣୀ ଦେଲେ ?

**ବେତ୍‌ଥ-ଇଦଂ ଦ୍ରୋଣପୁତ୍ରସ୍ୟ ବ୍ରାହ୍ମଂ-ଅସ୍ତ୍ରଂ ପ୍ରଦର୍ଶିତମ୍ ।**
**ନ-ଏବ-ଅସୌ ବେଦ ସଂହାରଂ ପ୍ରାଣ ବାଧ ଉପସ୍ଥିତେ ।।୨୭।।**

ଉତ୍ତର: ଏହା ଅଶ୍ୱତ୍ଥାମାଙ୍କ ପ୍ରେରିତ ବ୍ରହ୍ମାସ୍ତ୍ର । ଏହା ସୃଷ୍ଟିକୁ ସଂପୂର୍ଣ୍ଣ ଧ୍ୱଂସ କରିପାରେ ।ନିଜ ପ୍ରାଣ ସଂକଟାପନ୍ନ ହେବାରୁ ସେ ଏହାକୁ ପ୍ରୟୋଗ କରିଛନ୍ତି । ଏହା ଏକ ଆତ୍ମଘାତୀ ବାଣ । ଫଳରେ ସେ ମଧ୍ୟ ନିଜେ ମରିଯିବେ । ତାଙ୍କୁ ଏ ବାଣକୁ ଫେରାଇବା କୌଶଳ ଆଚାର୍ଯ୍ୟ ଦ୍ରୋଣ ଜାଣିଶୁଣି ଶିକ୍ଷା ଦେଇନାହାନ୍ତି । କିନ୍ତୁ ତାଙ୍କର ଅତିପ୍ରିୟ ଶିଷ୍ୟ ତୁମକୁ ସେ କୌଶଳ ଶିକ୍ଷା ଦେଇଛନ୍ତି । ଗୁରୁ ଦ୍ରୋଣଙ୍କର ଜୟ ହେଉ । ଗୁରୁକୃପା ସ୍ମରଣ କରି ସମ୍ଭାଳ ବ୍ରହ୍ମାସ୍ତ୍ରକୁ ।

ପ୍ରଶ୍ନ-୩୯:ସେ ଭୟଙ୍କର ଅସ୍ତ୍ରର ପ୍ରତିରୋଧ କରିବାକୁ ଭଗବାନ କୃଷ୍ଣ ଅର୍ଜୁନଙ୍କୁ କି ଉପଦେଶ ଦେଲେ ?

**ନ ହି-ଅସ୍ୟ-ଅନ୍ୟତମଂ କିଂଚିତ୍ ଅସ୍ତ୍ରଂପ୍ରତି-ଅବକର୍ଶନମ୍ ।**
**ଜହି-ଅସ୍ତ୍ର ତେଜଃ ଉନ୍ନଦ୍ଧଂ ଅସ୍ତ୍ରଜ୍ଞୋ ହି-ଅସ୍ତ୍ରତେଜସା ।।୨୮।।**

ଉତ୍ତର:ବ୍ରହ୍ମାସ୍ତ୍ରକୁ ପ୍ରତିରୋଧ କରିବାକୁ କେବଳ ବ୍ରହ୍ମାସ୍ତ୍ର ସମର୍ଥ । ତୁମେ ତ ଅସ୍ତ୍ରବିଦ୍ୟାରେ ଧୂରୀଣ(ଅସ୍ତ୍ରଜ୍ଞୋ) । ଆଚାର୍ଯ୍ୟ ଦ୍ରୋଣଙ୍କ କୃପାରୁ ଜାଣିଛ ଅସ୍ତ୍ରର ଲେଉଟାଇବା କୌଶଳ । ସୁତରାଂ ତୁରନ୍ତ ଆଉ ଗୋଟିଏ ବ୍ରହ୍ମାସ୍ତ୍ର ପ୍ରୟୋଗ କରି ଦୁଇ ଅସ୍ତ୍ରତେଜର ସଂହରଣ (ଜହି-ଅସ୍ତ୍ର ତେଜଃ ଉନ୍ନଦ୍ଧଂ) ବିଦ୍ୟା କାମରେ ଲଗାଅ । ସମଗ୍ର ସୃଷ୍ଟିର ମଙ୍ଗଳ ସାଧିତ ହେବ ।

**ସୂତ ଉବାଚ**

ପ୍ରଶ୍ନ-୪୦: ଅର୍ଜୁନ (ଫାଲ୍ ଗୁନି) ଶତ୍ରୁ ଶର ସମ୍ମୁଖୀନ ହେବାରେ ଅତି ପ୍ରବୀଣ (ପରବୀରହା) ଥିଲେ । ଠାକୁରଜୀଙ୍କ ଠାରୁ ଆଦେଶ ପାଇ କ'ଣ କଲେ ?

**ଶ୍ରୁତ୍ୱା ଭଗବତା ପ୍ରୋକ୍ତଂ ଫାଲ୍‌ଗୁନଃ ପରବୀରହା ।**
**ସ୍ପୃଷ୍ଟ୍ୱା-ଆପଃ ତଂ ପରିକ୍ରମ୍ୟ ବ୍ରାହ୍ମଂବ୍ରାହ୍ମ -ଅସ୍ତ୍ରଂ ସନ୍ଦଧେ ।।୨୯।।**

ଉତ୍ତର:ତୁରନ୍ତ ଦେହ ମନରେ ପବିତ୍ର ହୋଇ ଆଚମନ କଲେ । ଗୁରୁ ଚରଣ କମଳ ସ୍ମରଣ କରି, ମନ୍ତ୍ର ପଢ଼ିଲେ । ଭଗବାନଙ୍କୁ (ବ୍ରାହ୍ମଂ) ପରିକ୍ରମା କରି ବ୍ରହ୍ମାସ୍ତ୍ରର ନିବାରଣ ପାଇଁ ନିଜ ବ୍ରହ୍ମାସ୍ତ୍ରର ପ୍ରୟୋଗ କଲେ ।

ପ୍ରଶ୍ନ-୪୧: ଅବଶେଷରେ ଦୁଇ ଅସ୍ତ୍ର ତେଜର ସଂହାର କଲେ । ଅଶ୍ୱତ୍‌ଥାମାଙ୍କୁ ଧରିନେଲେ । ପଶୁ ଗୋଡ଼କୁ, ବେକକୁ ବାନ୍ଧିବା ଭଳି ଏକ ଦଉଡ଼ିରେ ତାର ହାତ ଗୋଡ଼ ବାନ୍ଧି ପକାଇଲେ । ପ୍ରତିଜ୍ଞା ଅନୁସାରେ ଅର୍ଜୁନ ଅଶ୍ୱତ୍‌ଥାମାଙ୍କୁ ହତ୍ୟା ନକରି ଶିବିରକୁ ଘୋଷାରି ନେବାକୁ ଚାହିଁଲେ । ଏପରି ସ୍ଥଳେ ଭଗବାନ କମଳନୟନ ରୋଷ ପ୍ରକାଶ କରି ଅର୍ଜୁନଙ୍କୁ କ'ଣ କହିଲେ ?

**ମା-ଏନଂ ପାର୍ଥ-ଅର୍ହସି ତ୍ରାତୁଂ ବ୍ରହ୍ମବନ୍ଧୁଂ ଇମଂ ଜହି ।**
**ଯୋଽସୌ ଅନାଗସଃ ସୁପ୍ତାନ୍ ଅବଧିତ୍ ନିଶି ବାଳକାନ୍ ।।୩୫।।**

ଉତ୍ତର: ଭଗବାନ କହିଲେ, ହେ ପାର୍ଥ, ଏ ବ୍ରାହ୍ମଣ ଅଧମଙ୍କୁ ଛାଡ଼ିଦେବା ଅନୁଚିତ୍ । ତାଙ୍କୁ ତୁରନ୍ତ ହତ୍ୟା କର । ରାତିରେ ଶୋଇବା ଅବସ୍ଥାରେ ସେ ତୁମମାନଙ୍କର ପାଞ୍ଚବାଳକ ପୁତ୍ରଙ୍କୁ ବଧ କରିଛନ୍ତି । ସେ ଘୋର ଅପରାଧୀ ଆତତୀୟୀ ସୁତରାଂ ତୁରନ୍ତ ଦଣ୍ଡ ବିଧାନ କର । ଛାଡ଼ିଲେ ଅପରାଧ ହେବ ।

ପ୍ରଶ୍ନ-୪୨:ଧର୍ମଜ୍ଞ ପୁରୁଷ ମାନେ ଶତ୍ରୁ ହୋଇଥିଲେ ମଧ୍ୟ କେଉଁ ଦଶ ପ୍ରକାର ଲୋକଙ୍କୁ ହତ୍ୟା କରି ନଥାନ୍ତି ଜାଣିଛ ଅର୍ଜୁନ ?

**ମତ୍ତଂ ପ୍ରମତ୍ତଂ ଉନ୍ମତ୍ତଂ ସୁପ୍ତଂ ବାଳଂ ସ୍ତ୍ରିୟଂ ଜଡ଼ମ୍ ।**
**ପ୍ରପନ୍ନଂ ବିରଥଂ ଭୀତଂ ନ ରିପୁଂ ହନ୍ତି ଧର୍ମବିଦ୍ ॥୩୬॥**

ଉତ୍ତର:ଅସାବଧାନ(ତୁଣ୍ଡରେ ଇଷ୍ଟ ମନ୍ତ୍ର ଜପୁନଥିବା) ମଦ୍ୟପ (ମଦୁଆଲା) ପାଗଳ,ଶୋଇଥିବା, ବାଳକ,ନାରୀ,ବିବେକଶୂନ୍ୟ (ଦେହକୁ ମୁଁ ମନେକରୁଥିବା ମୂର୍ଖ) ଶରଣାଗତ, ରଥରୁ ଖସିପଡ଼ିଥିବା ଓ ଭୟଭୀତ ଲୋକକୁ ।''

ପ୍ରଶ୍ନ-୪୩:ଭଗବାନ ପୁଣି କହିଲେ-ଜାଣିଛ ଅର୍ଜୁନ ସ୍ୱଧର୍ମ ପାଳନକାରୀ ଧର୍ମବେତ୍ତା କାହାକୁ ବଧ କରିବା ଉଚିତ ?

**ସ୍ୱ ପ୍ରାଣାନ୍ ଯଃ ପରପ୍ରାଣୈଃ ପ୍ରପୁଷ୍ଣାତି- ଅଘୃଣଃ ଖଳଃ ।**
**ତଦ୍ ବଧଃ ତସ୍ୟ ହି ଶ୍ରେୟୋ ଯଦ୍ ଦୋଷାଦ୍ୟାତି-ଅଧଃ ପୁମାନ୍ ॥୩୭॥**

ଉତ୍ତର:ପରନ୍ତୁ ଯେଉଁ ଦୁଷ୍ଟ ଓ କ୍ରୂର ପୁରୁଷ ଅନ୍ୟ ପ୍ରାଣୀର ପ୍ରାଣନାଶ କରି ନିଜ ପ୍ରାଣ ପୋଷଣ କରିଥାଏ । ସେ ତ ତୁରନ୍ତ ବଧ ଯୋଗ୍ୟ । ସେଥିରେ ତାର ମଧ୍ୟ କଲ୍ୟାଣ ସାଧିତ ହୋଇଥାଏ । ନଚେତ ତା ପ୍ରାଣ ରହିଲେ ଅନେକ ନିର୍ଦ୍ଦୋଷ ପ୍ରାଣୀଙ୍କୁ ସେ ଅଯଥା ହତ୍ୟା କରି ଘୋର ନର୍କ ଯନ୍ତ୍ରଣା ଭୋଗିବ ବିଚରା ।

ପ୍ରଶ୍ନ-୪୪: ଭଗବାନଙ୍କର ଅର୍ଜୁନଙ୍କ ପ୍ରତି ଏହା କ୍ରୂର ଆଦେଶ ନଥିଲା ବରଂ ଧର୍ମ ଜ୍ଞାନର ଏକ ମହାନ ପରୀକ୍ଷା ଥିଲା । ଅର୍ଜୁନ କ'ଣ ଅଶ୍ୱତ୍ଥାମାକୁ ହତ୍ୟା କରିଦେଲେ କି ?

**ଏବଂ ପରୀକ୍ଷତା ଧର୍ମଂ ପାର୍ଥଃ କୃଷ୍ଣେନ ଚୋଦିତଃ ।**
**ନ-ଐଚ୍ଛଦ୍ ହନ୍ତୁଂ ଗୁରୁସୁତଂ ଯଦ୍ୟପି-ଆତ୍ମହନଂ ମହାନ୍॥୪୦॥**

ଉତ୍ତର:ନା ଆଦୌ ହତ୍ୟା କଲେନି । ଅର୍ଜୁନଙ୍କ ହୃଦୟ ଭଗବଦ୍ କୃପାରୁ ଅତ୍ୟନ୍ତ କୋମଳ ଓ ବିଶାଳ ଥିଲା । ପୁତ୍ରହତ୍ୟାକାରୀ ବ୍ରାହ୍ମଣ କୁଳ ଜାତ ପତିତ ଗୁରୁ ପୁତ୍ରଙ୍କୁ ସେ କ୍ଷମା କରିଦେଲେ । ଦଣ୍ଡଦେବା ଭାର ଦ୍ରୌପଦୀଙ୍କୁ ଦେବେ ବୋଲି ନିଶ୍ଚୟ କଲେ । ଭଗବାନଙ୍କ ମୁଖ ନିସୃତ ଆଦେଶ ପାଳନ ନକରି ସେ ଭଗବାନଙ୍କ ହୃଦୟର ଇଚ୍ଛା ପୂରଣ କରିବାକୁ ଶ୍ରେୟ ମନେ କଲେ ।

ପ୍ରଶ୍ନ-୪୫:ବନ୍ଧା ପଶୁ ଭଳି ଅଶ୍ୱତ୍ଥାମାଙ୍କୁ ନେଇ ଅର୍ଜୁନ, ପାଣ୍ଡବ ଶିବିରରେ ଦ୍ରୌପଦୀଙ୍କୁ ଅର୍ପଣ କଲେ । ଦୁଃଖ ଶୋକ ଜର୍ଜରିତା କୃଷ୍ଣା ମଧ୍ୟ ତାଙ୍କୁ ପ୍ରାଣଦଣ୍ଡ ଦେଇନଥିଲେ । ଅର୍ଜୁନଙ୍କୁ କ'ଣ କହିଲେ ଦ୍ରୌପଦୀ ?

**ଉବାଚ ଚ-ଅସହନ୍ତୀ-ଅସ୍ୟ ବନ୍ଧନ-ଆନୟନଂ ସତୀ ।**
**ମୁଚ୍ୟତାଂ ମୁଚ୍ୟତାଂ ଏଷ ବ୍ରାହ୍ମଣୋ ନିତରାଂ ଗୁରୁଃ ||୪୩||**

ଉତ୍ତର:ଗୁରୁପୁତ୍ରଙ୍କୁ ଏମିତି ବାନ୍ଧି ଘୋଷାଡ଼ି ଆଣିବା ତାଙ୍କ ନାରୀ ସୁଲଭ କୋମଳ ହୃଦୟକୁ ବିଦାରଣ କରି ପକାଇଲା । ସ୍ୱପୁତ୍ର ଶୋକଠାରୁ ଏ ଦୁଃଖ ତାଙ୍କ ପାଇଁ ବଳି ପଡ଼ିଲା । ସେ ଚିତ୍କାର କଲେ-ବନ୍ଧନ ଫିଟାଇ ପକାଅ । ଫିଟାଇ ପକାଅ । ସେ ଗୁରୁପୁତ୍ର, ପତିତ ବ୍ରାହ୍ମଣ ହେଲେ ମଧ୍ୟ ସେ ସର୍ବଦା (ନିରୋଂ) ପୂଜନୀୟ । ଦଣ୍ଡନୀୟ ନୁହନ୍ତି । ତାଙ୍କର ଅପରାଧ ଯାହା ବି ହୋଇଥାଉ ।

ପ୍ରଶ୍ନ-୪୬:ପାଣ୍ଡବମାନଙ୍କର ଗୁରୁମାତା ପତିବ୍ରତା ଦ୍ରୋଣପତ୍ନୀ ଗୌତମୀଙ୍କ ପ୍ରତି କିଭଳି ଶବ୍ଦରେ ଦ୍ରୋପଦୀ ସମବେଦନା ପ୍ରକାଶ କଲେ ?

**ମା ରୋଦୀତ୍ ଅସ୍ୟ ଜନନୀ ଗୌତମୀ ପତିଦେବତା ।**
**ଯଥା-ଅହଂ ମୃତ ବତ୍ସା-ଆର୍ତ୍ତା ରୋଦିମି-ଅଶ୍ରୁମୁଖୀ ମୁହୁଃ ||୪୭||**

ଉତ୍ତର:ମୋ ସନ୍ତାନମାନଙ୍କୁ ହରାଇ ଯେଭଳି ଭାବରେ ମୁଁ ଶୋକ ସନ୍ତାପିତ ସେଭଳି ଦୁଃଖ ଆଚାର୍ଯ୍ୟ ଦେବ ଦ୍ରୋଣ ପତ୍ନୀ ଗୌତମୀଙ୍କୁ ନହେଉ । ହୋଇପାରନ୍ତି ସେ ପାଣ୍ଡବମାନଙ୍କ ଶତ୍ରୁପକ୍ଷୀୟ ଜଣେ ସୈନ୍ୟଙ୍କ ପତ୍ନୀ ।

ପ୍ରଶ୍ନ-୪୭:ଦ୍ରୌପଦୀଙ୍କ ଧର୍ମ,ନ୍ୟାୟ, ସମବେଦନା ପୂର୍ଣ୍ଣ କଥାକୁ ମହାରାଜ ଯୁଧିଷ୍ଠିର, ନକୁଳ, ସହଦେବ ଇତ୍ୟାଦି ସାଦର ସମର୍ଥନ କଲେ । କିନ୍ତୁ ମହାବଳୀ ଭୀମସେନ ଅନ୍ୟାୟୀକୁ ଦଣ୍ଡ ନଦେଇ ଛାଡ଼ିଦେବା ମଧ୍ୟ ଅନ୍ୟାୟ ବୋଲି କହି ପ୍ରତିବାଦ କଲେ । ଏଭଳି ପରିସ୍ଥିତିରେ ଭଗବାନ କୃଷ୍ଣ ଉଭୟ ପକ୍ଷର ଯୁକ୍ତିର ସମନ୍ୱୟ କରି କିପରି ସମାଧାନ କଲେ ?

**ଶ୍ରୀଭଗବାନ ଉବାଚ**

**ବ୍ରହ୍ମବନ୍ଧୁଃ ନ ହନ୍ତବ୍ୟ ଆତତାୟୀ ବଧ-ଅର୍ହଣଃ ।**
**ମୟା-ଏବ ଉଭୟଂ ଆମ୍ନାତଂ ପରିପାହି-ଅନୁଶାସନମ୍ ||୫୩||**

ଉତ୍ତର:ତାଙ୍କ ମୀମାଂସା ହେଲା ସାପ ମରୁ କିନ୍ତୁ ବାଡ଼ି ନ ଭାଙ୍ଗୁ । ଦୋଷୀ ଦଣ୍ଡ ପାଉ କିନ୍ତୁ ଦଣ୍ଡଦାତାର ଅଧର୍ମ ନହେଉ । ହିନ୍ଦୁଧର୍ମ ଶାସ୍ତ୍ର ମତରେ ପତିତ ବ୍ରାହ୍ମଣ (ବ୍ରହ୍ମବନ୍ଧୁଃ) ମଧ୍ୟ ହତ୍ୟାର ଅଯୋଗ୍ୟ । ତା ସହିତ ଆତତାୟୀ ସର୍ବଥା ବଧର ଯୋଗ୍ୟ । ଭଗବାନ କହିଲେ, ''ଅର୍ଜୁନ, ଏପରି କାମଟିଏ କର ଯେପରି

ଦୁଇ ଧର୍ମାନୁମୋଦିତ ବାକ୍ୟର ପାଳନ ହେବ ଏକା ସାଙ୍ଗରେ । ଭୀମସେନଙ୍କ କଥା ରହିବ ଓ ପାଞ୍ଚାଳୀ ମଧ୍ୟ ଦୁଃଖ କରିବେନି ।''

**ସୂତ ଉବାଚ**

ପ୍ରଶ୍ନ-୪୮:କିଭଳି ଭାବରେ ମହାଜ୍ଞାନୀ ପୃଥାପୁତ୍ର ଅର୍ଜୁନ ଏହାର ସମାଧାନ କଲେ ଜାଣିଛ ଶୌନକଜୀ ?

**ଅର୍ଜୁନଃ ସହସା-ଆଜ୍ଞାୟ ହରେଃ ହାର୍ଦ୍ଦଂ ଅଥ-ଅସିନା ।**
**ମଣିଂ ଜହାର ମୂର୍ଦ୍ଧନ୍ୟଂ ଦ୍ୱିଜସ୍ୟ ସହମୂର୍ଦ୍ଧଜମ୍ ॥୫୫॥**

ଉତ୍ତର:ପ୍ରିୟ ସଖା ଶ୍ରୀହରିଙ୍କ ହୃଦୟର ଅଭିପ୍ରାୟ (ହାର୍ଦ୍ଦଂ) ବୁଝିପାରିଲେ ପାର୍ଥ । ନିଜ ଖଣ୍ଡା ବାହାର କରି ସଙ୍ଗେ ସଙ୍ଗେ (ସହସା) ଦ୍ରୋଣ ପୁତ୍ରଙ୍କ ମସ୍ତକରୁ କେଶ ସହିତ (ସହମୂର୍ଦ୍ଧଜଂ) ଅମୂଲ୍ୟ ମଣିକୁ କାଢ଼ି ଆଣିଲେ । ଜଣେ ବ୍ରାହ୍ମଣଙ୍କର ସାମାଜିକ ଅପମାନ ମୃତ୍ୟୁ ଦଣ୍ଡଠାରୁ କିଛି କମ୍ ନୁହେଁ । ଧର୍ମଶାସ୍ତ୍ରରେ ବ୍ରାହ୍ମଣଙ୍କର ମୁଣ୍ଡକାଟି ବଧ କରିବା ନିଷିଦ୍ଧ ହୋଇଛି । ଶେଷରେ କୃଷ୍ଣା, କୃଷ୍ଣଙ୍କ ସହିତ ପାଣ୍ଡବମାନେ ମୃତ ବାଳକମାନଙ୍କ ଦାହ ଅନ୍ତ୍ୟେଷ୍ଟି ସଂସ୍କାର କ୍ରିୟା ସମ୍ପନ୍ନ କଲେ । ଅଶ୍ୱତ୍ଥାମାଙ୍କ ଜୀବନ ରକ୍ଷା ହୋଇଗଲା ।

# ଅଥ ୮ମ ଅଧ୍ୟାୟଃ

## (ଉତ୍ତରାବାଳୀଙ୍କ ଗର୍ଭରକ୍ଷା ଓ କୁନ୍ତୀମାତାଙ୍କ କୃଷ୍ଣ ସ୍ତୁତି )

**ସୂତ ଉବାଚ**

ପ୍ରଶ୍ନ-୪୯: ମହାଭାରତ ଯୁଦ୍ଧରେ ନିହତ କୁରୁ ବଂଶଜ ମାନଙ୍କ ତିଳତର୍ପଣ ସମୟ ଉପସ୍ଥିତ । ବଞ୍ଚି ରହିଥିବା ପାଣ୍ଡବ ପାଞ୍ଚଭାଇ ଶ୍ରୀକୃଷ୍ଣ, ଦ୍ରୌପଦୀ, ଧୃତରାଷ୍ଟ୍ର, ଗାନ୍ଧାରୀ ଓ କୁନ୍ତୀଙ୍କ ସହ କ'ଣ କଲେ ?

**ଅଥ ତେ ସମ୍ପରେତାନାଂ ସ୍ୱାନାଂ ଉଦକଂ-ଇଚ୍ଛତାମ୍ ।**
**ଦାତୁଂ ସକୃଷ୍ଣା ଗଙ୍ଗାୟାଂ ପୁରସ୍କୃତ୍ୟ ଯଯୁଃ ସ୍ତ୍ରିୟଃ ॥୧॥**

ଉତ୍ତର: ମୃତ କୁରୁବଂଶୀମାନେ ସୂକ୍ଷ୍ମ ଶରୀରରେ ଥାଇ ତିଳତର୍ପଣ ପାଇଁ (ସମ୍ପରେତାନାଂ) ଅପେକ୍ଷା କରିଥାନ୍ତି । ସ୍ତ୍ରୀମାନଙ୍କୁ ଆଗେ ଆଗେ ଚଲାଇ ପାଣ୍ଡବମାନେ ପହଞ୍ଚିଲେ ପବିତ୍ର ଗଙ୍ଗାନଦୀ କୂଳରେ ।

ପ୍ରଶ୍ନ-୫୦:ଗଙ୍ଗା କୂଳରେ ପହଞ୍ଚି ସମସ୍ତେ କ'ଣ କଲେ ?

**ତେ ନିନୀୟଂ-ଉଦକଂ ସର୍ବେ ବିଳପ୍ୟ ଚ ଭୃଶଂ ପୁନଃ ।**
**ଆପ୍ଳୁତା ହରି ପାଦାବ୍ଜ ରଜଃ ପୂତ ସରିତ୍ ଜଳେ ॥୨॥**

ଉତ୍ତରः ସମସ୍ତେ ଜଳ ତିଳକ ଦାନ କଲେ । ମୃତ ସଂପର୍କୀୟମାନଙ୍କ ଗୁଣ ସ୍ମରଣ କରି ଅତ୍ୟନ୍ତ (ଭୃଶଂ) କରୁଣ ବିଳାପ କଲେ । ଶ୍ରୀହରିଙ୍କ ଚରଣ କମଳ ଧୂଳି (ରଜ)ଦ୍ୱାରା ପବିତ୍ର ହୋଇଥିବା ଗଙ୍ଗାସ୍ନାନ କଲେ ।

ପ୍ରଶ୍ନ-୫୧:ଶ୍ରୀକୃଷ୍ଣ ସେମାନଙ୍କୁ ଧୌମ୍ୟ ଆଦି ମୁନି ଋଷିମାନଙ୍କ ଦ୍ୱାରା ସାନ୍ତ୍ୱନା ପ୍ରଦାନର ବନ୍ଦୋବସ୍ତ କଲେ । ତାପରେ ଭଗବାନ ନିଜେ ଆଉ କି କି କାର୍ଯ୍ୟ ସମ୍ପାଦନ କଲେ ?

**ସାଧୟିତ୍ୱା-ଅଜାତ ଶତ୍ରୋଃ ସ୍ୱ ରାଜ୍ୟଂ କୈତବୈଃ ହୃତମ୍ ।**
**ଘାତୟିତ୍ୱା-ଅସତୋ ରାଜ୍ଞଃ କଚ ସ୍ପର୍ଶ କ୍ଷତ-ଆୟୁଷଃ ॥୫॥**

ଉତ୍ତରः:କୌରବମାନଙ୍କ ଦ୍ୱାରା କପଟ ପଶାଖେଳରେ (କୈତବୈଃ) ଯୁଧିଷ୍ଠିର(ଅଜାତଶତ୍ରୋଃ) ହରାଇଥିବା ରାଜ୍ୟ ଭଗବାନ ତାଙ୍କୁ ଫେରାଇ ଦେଲେ । ଦ୍ରୌପଦୀଙ୍କ ଏକ ବସ୍ତ୍ର ଅବସ୍ଥାରେ ଯେଉଁ କୁରୁ ବଂଶୀ ଦୁଷ୍ଟମାନେ ତାଙ୍କ କେଶାକର୍ଷଣ କରି କେଶକୁ ଭୂମି ସ୍ପର୍ଶ କରାଇଥିଲେ, ସେମାନଙ୍କର ସକଳ ପୁଣ୍ୟ ତ କ୍ଷୟ ହୋଇସାରିଥିଲା । ମହାଭାରତ ଯୁଦ୍ଧରେ ସେମାନଙ୍କର ଉଚିତ୍ ଦଣ୍ଡବିଧାନ କଲେ । ଯୁଦ୍ଧିଷ୍ଠିରଙ୍କ ଦ୍ୱାରା ୩ ଶୋକ (ଆଧ୍ୟାତ୍ମିକ, ଆଧିଦୈବିକ ଓ ଆଧି ଭୌତିକ) ନିବାରଣ ପାଇଁ ୩ ଅଶ୍ୱମେଧ ଯଜ୍ଞାନୁଷ୍ଠାନ କରାଇଲେ ।

ପ୍ରଶ୍ନ-୫୨:ଭଗବାନ ଏଥରକ ସ୍ୱୟଂ ଦ୍ୱାରକା ଫେରିବା କଥା ନିଶ୍ଚୟ କଲେ । ପାଣ୍ଡବମାନଙ୍କୁ ଦ୍ୱାରକା ଆସିବାକୁ ଆମନ୍ତ୍ରଣ ଜଣାଇ ବିଦାୟ ନେଲେ । ସାତ୍ୟକୀ ଉଦ୍ଧବ ଆଦିଙ୍କ ସହିତ ରଥରେ ବସି ଯିବାକୁ ବାହାରିଲେ । ଏଭଳି ବିଦାୟ ବେଳେ ପୁଣି କି ଅଘଟଣ ଘଟିଲା ?

**ଗନ୍ତୁଂ କୃତମତିଃ ବ୍ରହ୍ମନ୍ ଦ୍ୱାରକାଂ ରଥଂ ଆସ୍ଥିତଃ ।**
**ଉପଲେଭେଽଭିଧାବନ୍ତୀଂ ଉତ୍ତରାଂ ଭୟ ବିହ୍ୱଳାମ୍ ॥୮॥**

ଉତ୍ତରः ଠାକୁରଜୀ ଦେଖିଲେ-ତାଙ୍କର ଭଣଜା ଅଭିମନ୍ୟୁଙ୍କ ବିଧବା ପତ୍ନୀ ଉତ୍ତରାବାଳୀ ସମ୍ମୁଖରୁ ଭୟ ବିହ୍ୱଳ ହୋଇ ଦୌଡ଼ି ଆସୁଛନ୍ତି ।

ଉତ୍ତରା ଉବାଚ

ପ୍ରଶ୍ନ-୫୩: ଯୁଧିଷ୍ଠିର ଆଦି ମହାବଳଶାଳୀ, ଧୂରୀଣ ଧର୍ମଜ୍ଞ ଶ୍ୱଶୁର ପାଞ୍ଚଜଣ ଥିଲେ ତ ସେଠାରେ । ଅଭିମନ୍ୟୁ ପତ୍ନୀ ଉତ୍ତରା କାହାର ଶରଣାଗତ ହେବାକୁ ପସନ୍ଦ କଲେ ?

**ପାହି ପାହି ମହାଯୋଗିନ୍ ଦେବ ଦେବ ଜଗତ୍ ପତେ ।**
**ନ-ଅନ୍ୟଂ ତ୍ୱଦ୍ ଅଭୟଂ ପଶ୍ୟେ ଯତ୍ର ମୃତ୍ୟୁଃ ପରସ୍ପରମ୍ ।।୯।।**

ଉତ୍ତର: ଭଗବାନଙ୍କ ବ୍ୟତୀତ ଅନ୍ୟ ସମସ୍ତ ପ୍ରାଣୀ ପରସ୍ପର ମୃତ୍ୟୁର କାରଣ । ସେମାନେ ମଧ୍ୟ ସମସ୍ତେ ନିଜ ଅଜାଣତରେ କାଳ କବଳରେ କବଳିତ । ସେମାନେ ଅନ୍ୟକୁ ଅଭୟ ଦେବେ ବା କିପରି ? ଶ୍ରୀକୃଷ୍ଣ କିନ୍ତୁ ଇନ୍ଦ୍ର, ଚନ୍ଦ୍ର ସୂର୍ଯ୍ୟ ମୃତ୍ୟୁ ଦେବତା ଯମଙ୍କର ମଧ୍ୟ ନିୟନ୍ତ୍ରଣ କର୍ତ୍ତା (ଦେବ-ଦେବ) । ସେ ସୃଷ୍ଟିର ସର୍ବୋଚ୍ଚ ମାଲିକ । ସୁତରାଂ ଶ୍ରୀକୃଷ୍ଣଙ୍କୁ (ମହାଯୋଗିନ୍) ରକ୍ଷା କରନ୍ତୁ, ରକ୍ଷା କରନ୍ତୁ (ପାହି,ପାହି) କହି ତାଙ୍କର ଶରଣ ପଶିଲେ ।

ପ୍ରଶ୍ନ-୫୪: କି ପ୍ରାର୍ଥନା କଲେ ଉତ୍ତରା ଠାକୁରଜୀଙ୍କ ପାଖରେ ?

**ଅଭିଦ୍ରବତି ମାଂ ଈଶ ଶରଃ ତପ୍ତ-ଅୟସୋ ବିଭୋ ।**
**କାମଂ ଦହତୁ ମାଂ ନାଥ ମା ମେ ଗର୍ଭୋ ନିପାତ୍ୟତାମ୍ ।।୧୦।।**

ଉତ୍ତର: କହିଲେ, "ହେ ସର୍ବଶକ୍ତି ମାନ (ଈଶ,ପ୍ରଭୋ) । ମୋ ଆଡ଼କୁ ମାଡ଼ି ଆସୁଥିବା ତେଜୀୟାନ୍ ଲୌହ ଶର ମୋ ଦେହକୁ ପଛେ ଜାଳିପୋଡ଼ି ଦେଉ । ମୋର ଆଦୌ ପ୍ରାଣଭୟ ନାହିଁ । ହେଲେ ମୋ ଗର୍ଭରେ ଥିବା ଶିଶୁର ଦେହ ନଷ୍ଟ ନହେଉ । କୁରୁ ବଂଶର ଶେଷ ଜୀବନ ପ୍ରଦୀପ ଲିଭି ନଯାଉ ।"

ସୂତ ଉବାଚ

ପ୍ରଶ୍ନ-୫୫:ଭକ୍ତ ବତ୍ସଳ ଭଗବାନ ଜାଣିପାରିଲେ ଦୁର୍ଯ୍ୟୋଧନକୁ ପ୍ରସନ୍ନ କରାଇବାକୁ ଦ୍ରୋଣପୁତ୍ରଙ୍କ ପ୍ରେରିତ ପୃଥିବୀକୁ ଅପାଣ୍ଡବା କରିବାକୁ ଏହା ବ୍ରହ୍ମାସ୍ତ୍ର । ପାଣ୍ଡବମାନେ ତାଙ୍କ ଆଡ଼କୁ ଅସ୍ତ୍ର ଆସୁଥିବା ଦେଖି ନିଜ ନିଜର ଅସ୍ତ୍ର ଉତ୍ତୋଳନ କଲେ । ଭଗବାନ ସୁଦର୍ଶନ ଚକ୍ର ଆଢୁଆଳ କରି ପାଣ୍ଡବମାନଙ୍କୁ ରକ୍ଷା କଲେ । ତଥାପି ବ୍ରହ୍ମାସ୍ତ୍ର ପାଣ୍ଡବମାନଙ୍କ ବଂଶ ପରମ୍ପରା ନିର୍ମୂଳ କରିବା ଲକ୍ଷ୍ୟରେ ଶକ୍ତିବଳରେ ଯୋଗ ଉତ୍ତରାବାଳୀଙ୍କ ଗର୍ଭରେ ପ୍ରବେଶ କଲେ । ଘଟଘଟ ବାସୀ ପରମାତ୍ମା ଶ୍ରୀକୃଷ୍ଣ କି ନୂଆ ନାଟକର ଅଭିନୟ କଲେ ସେଠାରେ ?

**ଅନ୍ତଃ ସ୍ଥଃ ସର୍ବଭୂତାନାଂ ଆତ୍ମା ଯୋଗେଶ୍ୱରୋ ହରିଃ ।**
**ସ୍ୱ ମାୟୟା ଆବୃଣୋଦ୍ ଗର୍ଭଂ ବୈରାଟ୍ୟାଃ କୁରୁତନ୍ତବେ ||୧୪||**

ଉତ୍ତର:ସେ ତ ବ୍ରହ୍ମା, ଶିବଙ୍କ ଭଳି ଯୋଗେଶ୍ୱରଙ୍କର ମଧ୍ୟ ଈଶ୍ୱର ଅର୍ଥାତ୍ ମହା ଯୋଗେଶ୍ୱର । ତତ୍‌କ୍ଷଣାଦ୍ ବିରାଟ ରାଜକୁମାରୀ ଉତ୍ତରାଙ୍କ (ବୈରାଟ୍ୟାଃ) ଗର୍ଭକୁ ବିଷ୍ଣୁ ମାୟାରେ ଆବୃତ୍ତ କରିନେଲେ ସୁଦର୍ଶନ ଚକ୍ର ଆଢୁଆଳରେ ।

ପ୍ରଶ୍ନ-୫୬: କୁରୁବଂଶରେ ଶେଷ ଦାୟାଦଙ୍କ (କୁରୁତନ୍ତବେ) ପ୍ରାଣ ରକ୍ଷା ହୋଇଗଲା ଭଗବାନଙ୍କ ଭିଟୋ ପ୍ରୟୋଗରେ ବୈଷ୍ଣବ ତେଜରେ ବ୍ରହ୍ମାସ୍ତ୍ର ମଧ୍ୟ ଶକ୍ତି ହୀନ ହୋଇ ଶାନ୍ତ ହୋଇଗଲା । ହେ ଶୌନକଜୀ, ଏହା ମଧ୍ୟ ସେମିତି କିଛି ଆଶ୍ଚର୍ଯ୍ୟ କଥା ନୁହେଁ । ଏହି ବୈଷ୍ଣବୀ ମାୟା ଶକ୍ତି ହିଁ ବ୍ରହ୍ମାଙ୍କୁ ସୃଜନ ଶକ୍ତି, ବିଷ୍ଣୁଙ୍କୁ ପାଳନ ଶକ୍ତି ଓ ଶିବଙ୍କୁ ସଂହାର ଶକ୍ତି ଦେଇ ସେମାନଙ୍କ କର୍ମକୁ ଏକ ଶାସନାଧୀନ କରି ରଖିଥାନ୍ତି । ଏଭଳି ଦୁର୍ଲ୍ଲଭ ଅଲୌକିକ କୃପା ଦେଖି ମହାରାଣୀ କୁନ୍ତୀ କି ଶବ୍ଦରେ ସ୍ତୁତି କଲେ ଶ୍ରୀକୃଷ୍ଣଙ୍କୁ?

**କୁନ୍ତୀ ଉବାଚ**

**ନମସ୍ତେ ପୁରୁଷଂ ତ୍ୱା-ଆଦ୍ୟଂ ଈଶ୍ୱରଂ ପ୍ରକୃତେଃ ପରମ୍ ।**
**ଅଲକ୍ଷ୍ୟଂ ସର୍ବଭୂତାନାଂ ଅନ୍ତଃ ବହିଃ ଅବସ୍ଥିତମ୍ ||୧୮||**

ଉତ୍ତର:ହେ ଅନାଦି ପୁରୁଷ, ପରମେଶ୍ୱର, ଆପଣଙ୍କୁ ସଭକ୍ତିକ ନମସ୍କାର । ଆପଣ ଆତ୍ମାରୂପରେ ଆମ ସକଳ ଜୀବର ଅନ୍ତର ମଧ୍ୟରେ ଓ ଦେହ ବାହାରେ ସଂସାରରେ ପରମାତ୍ମା ରୂପରେ ନିତ୍ୟ ବିଦ୍ୟମାନ କିନ୍ତୁ ଆପଣଙ୍କ ମାୟା ପ୍ରଭାବରୁ ଦେବତା, ଦାନବ, ମାନବ ଭଳି ଜୀବମାନେ ଆପଣଙ୍କୁ ଅନୁଭବ କରିପାରନ୍ତିନି । ସଂସାରୀ ଡ୍ରାମା ପେଣ୍ଡାଲ୍‌ରେ ମଧ୍ୟ ନାଟକ ଚଳାଉଥିବା ନାଟ୍ୟକାର ନିର୍ଦ୍ଦେଶକ ସର୍ବଦା ଷ୍ଟେଜ୍ ଅନ୍ତରାଳରେ ଅଲକ୍ଷ୍ୟ ରହନ୍ତି । ସେଥିପାଇଁ ପରା ନାଟକ ଅତ୍ୟନ୍ତ ଉପଭୋଗ୍ୟ ମର୍ମସ୍ପର୍ଶୀ ହୋଇଥାଏ ।

ପ୍ରଶ୍ନ-୫୭ ଯୋଗୀନ୍ଦ୍ର, ମୁନୀନ୍ଦ୍ର,ସରସ୍ୱତୀ,ବୃହସ୍ପତିଙ୍କ ଦୃଷ୍ଟିରେ ଧରା ପଡୁନଥିବା ଏହି ପରମାତ୍ମାଙ୍କୁ ମୋ ଭଳି ଜଣେ ସାମାନ୍ୟ ନାରୀ ତାଙ୍କ ଦିବ୍ୟ ସ୍ୱରୂପ ଦର୍ଶନର ପ୍ରଶ୍ନ ବା କାହିଁ ଉଠିବ ? ତଥାପି ଭଗବାନ ଏତେ ଅବତାର ସବୁ ଗ୍ରହଣ କରି ସୃଷ୍ଟିରେ ଦେଖା ଦିଅନ୍ତି କାହିଁକି ଓ କିପରି ?

**ତଥା ପରମ ହଂସାନାଂ ମୁନିନାଂ ଅମଳ-ଆତ୍ମନାମ୍ ।**
**ଭକ୍ତିଯୋଗ ବିଧାନ-ଅର୍ଥଂ କଥଂ ପଶ୍ୟେମ ହି ସ୍ତ୍ରିୟଃ ॥୨୦॥**

ଉତ୍ତର: ହଁ ଅବତାର ସ୍ୱୀକାର କରିବା ତାଙ୍କ ପକ୍ଷେ ବିଲ୍‌କୁଲ୍ ଠିକ୍ କଥା । ନଚେତ ଏହି ଦଣ୍ଡକାରଣ୍ୟବାସୀ ତ୍ରିଗୁଣାତୀତ ସାଧୁମାନଙ୍କର ନିର୍ବିକଳ୍ପ ସମାଧି ଭାଙ୍ଗନ୍ତା କାହିଁକି ? ସେମାନଙ୍କ ଜଡ଼ ସମାଧି ଲବ୍ଧ ଶୁଷ୍କ ବ୍ରହ୍ମଜ୍ଞାନରେ (ଅହଂ ବ୍ରହ୍ମାସ୍ମି) ସରସ ପ୍ରେମରସର (ଦାସୋଽହଂ) ସଂଚାର ହୁଅନ୍ତା କିପରି ?

ପ୍ରଶ୍ନ-୫୮: କୁନ୍ତୀଦେବୀ କିଭଳି ନିଜ ଅଦିବ୍ୟ ଶବ୍ଦରେ ଦିବ୍ୟ ଶରୀରଧାରୀ ନନ୍ଦ ନନ୍ଦନ ଗୋପାଳକ ଗୋବିନ୍ଦଙ୍କ ସ୍ତୁତି କଲେ ?

**କୃଷ୍ଣାୟ ବାସୁଦେବାୟ ଦେବକୀ ନନ୍ଦନାୟ ଚ ।**
**ନନ୍ଦ ଗୋପ କୁମାରାୟ ଗୋବିନ୍ଦାୟ ନମୋ ନମଃ ॥୨୧॥**

ଉତ୍ତର: କୃଷ୍ଣ,ବାସୁଦେବ,ଦେବକୀ ନନ୍ଦନ,ନନ୍ଦ ଗୋପକୁମାର ଏ ସବୁ ଟକ ଶବ୍ଦ ପରା ଦିବ୍ୟାତିଦିବ୍ୟ । ଭଗବାନ ଦିବ୍ୟ । ଭଗବାନଙ୍କ ଭକ୍ତ, ତାଙ୍କ ଗୁଣ, ଲୀଳା ଧାମ, ତାଙ୍କ କଥା,ନାମ, ବଂଶୀ, ପାଟ ପୀତାମ୍ବର,ମୁକୁଟ,ମୁରଲୀ,ପାଣ୍ଡୋଇ ସବୁ ଦିବ୍ୟ । ଅଦିବ୍ୟ ବସ୍ତୁ ତାଙ୍କ ସଙ୍ଗରେ ଯୋଡ଼ି ହେଉ ହେଉ ଦିବ୍ୟରେ ରୂପାନ୍ତରଣ ହୁଏ । ସେହି ନ୍ୟାୟରେ କୁନ୍ତୀଙ୍କ ସ୍ତୁତି ମଧ୍ୟ ଦିବ୍ୟ ହୋଇଗଲା ।

ପ୍ରଶ୍ନ-୫୯: ମର୍ତ୍ତ୍ୟର ପୁଷ୍ପମାନଙ୍କ ମଧ୍ୟରେ ଶ୍ରେଷ୍ଠ ପଦ୍ମ । ସେ ପଙ୍କଜ ହେଲେ ମଧ୍ୟ କେବଳ ପଦ୍ମବାନ୍ଧବ ସୂର୍ଯ୍ୟଦେବଙ୍କୁ ଅନନ୍ୟ ପ୍ରେମ କରିପାରେ । ସେ ସଦା ମର୍ଯ୍ୟାଦାବନ୍ତ । ସେ ପଙ୍କଜ ଶବ୍ଦ ବ୍ୟବହାର କରି ପୃଥା କିପରି ଭଗବାନଙ୍କ ସ୍ତୁତି କଲେ ?

**ନମଃ ପଙ୍କଜ ନାଭାୟ ନମଃ ପଙ୍କଜମାଳିନେ ।**
**ନମଃ ପଙ୍କଜ ନେତ୍ରାୟ ନମଃ ତେ ପଙ୍କଜ-ଅଙ୍ଘ୍ରୟେ ॥୨୨॥**

ଉତ୍ତର:କୁନ୍ତୀଦେବୀ କହିଲେ, ‘‘ହେ ଆମ ସକଳ ଜୀବଙ୍କର ହୃଦୟ କମଳ ନୟନ ପରମ ପ୍ରିୟତମ ପୂର୍ଣ୍ଣତମ ପୁରୁଷୋତ୍ତମ କୃଷ୍ଣ,ଆପଣଙ୍କ ନାଭି,ନେତ୍ର,ଗଳା ଚରଣ ସଦା ପଙ୍କଜ ମଣ୍ଡିତ । ଏଥିରେ ଆପଣଙ୍କର ଶୋଭା ବର୍ଦ୍ଧନ ହୁଏନା ବରଂ ଆପଣଙ୍କ ସଙ୍ଗେ ଯୋଡ଼ା ହେଉଥିବାରୁ ପଙ୍କଜର ଗର୍ବ ଗୌରବ ଓ ମର୍ଯ୍ୟାଦା ବଢ଼ିଥାଏ । ସୁତରାଂ ଆପଣଙ୍କୁ ବାରମ୍ବାର ନମସ୍କାର ।’’

ପ୍ରଶ୍ନ-୬୦:କୁନ୍ତୀଦେବୀ ସ୍ତୁତି କରି ଚାଲିଥାନ୍ତି । ପୁଣି କହିଲେ-ହେ ହୃଷୀକେଶ,ପିଲାଦିନେ ଆପଣ ଦେବକୀ ବସୁଦେବଙ୍କ ଶୋକ ସମାପ୍ତ କରିଥିଲେ । ମୁଁ କେତେ ବାହୁନିବି ଆପଣଙ୍କ ଗୁଣ? ମୋ ଛୁଆମାନଙ୍କୁ ଆପଣ ସକଳ ବିପଦରୁ ଉଦ୍ଧାର କରିଛନ୍ତି । ଭୀମକୁ ବିଷ ଲଡ୍ଡୁ ଦାଉରୁ, ଆମସମସ୍ତଙ୍କୁ ଲାକ୍ଷା ଗୃହ ଦହନ ବିପଦରୁ,ବନ ମଧ୍ୟରେ ମଣ୍ଡାଖିଆ,ହିଡ଼ିମ୍ୱା ଆଦି ରାକ୍ଷସ ଦୃଷ୍ଟିରୁ, ଓ ଯୁଦ୍ଧ ବେଳେ ଅନେକ ଦୁଷ୍ଟ ଶତ୍ରୁଙ୍କ କବଳରୁ ଆମକୁ ଆପଣ ଅବିଳମ୍ୱେ ରକ୍ଷା କରିଥିଲେ । ଏବେ ଆମ ସମସ୍ତଙ୍କ ଆଖି ଆଗରେ ବ୍ରହ୍ମାସ୍ତ୍ର କୋପରୁ ବୋହୂ ଉତ୍ତରାବାଳୀର ଗର୍ଭ ରକ୍ଷା କଲେ । ଏଭଳି ମାହାତ୍ମ୍ୟ ଗାନ କରି ସେ ଠାକୁରଜୀଙ୍କୁ କିଭଳି କୃପା ପ୍ରାର୍ଥନା କଲେ ?

**ବିପଦଃ ସନ୍ତୁ ନଃ ଶଶ୍ୱତ୍ ତତ୍ର ତତ୍ର ଜଗଦ୍‌ଗୁରୋ ।**
**ଭବତୋ ଦର୍ଶନଂ ଯତ୍ ସ୍ୟାତ୍ ଅପୁନଃ ଭବ ଦର୍ଶନମ୍ ।।୨୫।।**

ଉତ୍ତର:କେହି ନ ମାଗିବା ଜିନିଷ ମାଗି ବସିଲେ କୁନ୍ତୀ । କାନ୍ଦି କାନ୍ଦି କହିଲେ-ହେ ଜଗତପାଳକ କୃଷ୍ଣ, ଦେବ ଯଦି ଜନ୍ମ-ଜନ୍ମାନ୍ତରେ ମୋତେ ଓ ମୋ ପିଲାଙ୍କୁ ନିରବଚ୍ଛିନ୍ନ ଦୁଃଖଦେଉଥାଅ । କାରଣ କହୁଛି ଶୁଣନ୍ତୁ-ହେ ଜଗଦ୍‌ଗୁରୁ । ମୋ ପିଲାମାନଙ୍କ ବିପଦ ସମୟରେ ଆପଣ ସର୍ବଦା ପାଖେ ପାଖେ ରହିଲେ । ଏବେ ମୋ ପୁଅ ଯୁଧିଷ୍ଠିର ରାଜ ସିଂହାସନରେ ବସିବାରୁ ଆପଣ ଦ୍ୱାରକା ପଳାଇବାକୁ ବସିଲେଣି!!! ସୁତରାଂ ଆମକୁ ପୂର୍ବଭଳି ଦୁଃଖ ଦିଅନ୍ତୁ । ଆମେ ଆପଣଙ୍କ ଦର୍ଶନ ପାଇବାକୁ ବଂଚିତ ହେବୁନି । ଆପଣଙ୍କ ସାନ୍ନିମଧ୍ୟରେ ଦୁଃଖ କ'ଣ ଦୁଃଖ କି ? ସେ ଦୁଃଖ ତ ବ୍ରହ୍ମାନନ୍ଦ ସୁଖରୁ ମଧ୍ୟ ଅଧିକତର ଶ୍ରେଷ୍ଠ ।

ପ୍ରଶ୍ନ-୬୧:ଉଚ୍ଚ କୁଳରେ ଜନ୍ମ ହେଲେ,ଧନ ସଂପତ୍ତି,ବିଦ୍ୟା କିଛି ପାଇଗଲେ ଏ ମର୍ତ୍ତ୍ୟଲୋକର ମଣିଷ ଆପଣଙ୍କୁ ପୂଜନ କରିବା ତ ଦୂରର କଥା ଆପଣଙ୍କ ନାମ ନେବାକୁ ମଧ୍ୟ କୁଣ୍ଠିତ ହେଉଥାଏ । ଭଗବାନ ତେବେ କାହାକୁ ଦର୍ଶନ-ସ୍ପର୍ଶ ଦିଅନ୍ତି ଗୋଚର ହୁଅନ୍ତି ବୋଲି କୁନ୍ତୀ କହିଲେ ?

**ଜନ୍ମ-ଐଶ୍ୱର୍ଯ୍ୟ ଶ୍ରୁତ ଶ୍ରୀଭିଃ ଏଧମାନ ମନଃ ପୁମାନ୍ ।**
**ନ-ଏବ-ଅର୍ହତି-ଅଭିଧାତୁଂ ବୈ ତ୍ୱାଂ ଅକିଂଚନ ଗୋଚରମ୍ ।।୨୬।।**

ଉତ୍ତର:ନାହିଁ କିଂଚନ (କିଛି) ଯାହାର ଅର୍ଥାତ୍ ଅକିଂଚନ,ନିରାଶ୍ରୟ, ଶରଣାଗତକୁ କେବଳ ଜଣା (ଗୋଚର) । ଅନ୍ୟକୁ ନୁହେଁ ।

ପ୍ରଶ୍ନ-୬୨: କୈବଲ୍ୟ ପତି (ମୋକ୍ଷ ଦାତା) ଶ୍ରୀ କୃଷ୍ଣଙ୍କର ଆଉ କ'ଣ କ'ଣ ମାହାତ୍ମ୍ୟ ଗାଇ ବସିଲେ କୁନ୍ତୀ ?

**ନମୋ ଅକିଂଚନ ବିତ୍ତାୟ ନିବୃତ୍ତ-ଗୁଣବୃତ୍ତୟେ ।**
**ଆତ୍ମାରାମାୟ ଶାନ୍ତାୟ କୈବଲ୍ୟ ପତୟେ ନମଃ ।।୨୭।।**

ଉତ୍ତର: କହିଲେ, ''ହେ ନର୍ଦ୍ଧନର ପରମ ଧନ (ଅକିଂଚନ ବିତ୍ତାୟ), ତ୍ରିଗୁଣୀ ମାୟାଙ୍କ ଅଧୀଶ୍ୱର,ଆପଣ ନିଜେ ନିଜ ସ୍ୱରୂପରେ ରମଣଶୀଳ ଓ ଶାନ୍ତିର ପ୍ରତିମୂର୍ତ୍ତୀ । ଆପଣଙ୍କୁ କୋଟି କୋଟି ନମନ ।''

ପ୍ରଶ୍ନ-୬୩:ଆପଣ ଅନାଦି,ଅନନ୍ତ,ସର୍ବ ବ୍ୟାପକ, ସମସ୍ତଙ୍କର ନିୟନ୍ତା । କାଳର ମଧ୍ୟ କାଳମହାକାଳ ଅଟନ୍ତି । ଆପଣ ସୃଷ୍ଟିର କେତେବେଳେ କ'ଣ ଲୀଳା କରିବାକୁ ଚାହାନ୍ତି ତାହା କେବଳ ଆପଣଙ୍କୁ ଜଣା । ଆପଣଙ୍କ ପାଇଁ କେହି ଅଭକ୍ତ ପ୍ରିୟ ନୁହେଁ କି ଦ୍ୱେଷୀ ନୁହେଁ । କେବଳ ଆପଣ ଭକ୍ତର ଓ ଭକ୍ତ ଆପଣଙ୍କର । ହେ ବିଶ୍ୱାତ୍ମନ୍, ଆପଣଙ୍କ ଲୀଳା ରହସ୍ୟ ବୁଝିବା ଆମଭଳି ତୁଚ୍ଛ ଜୀବମାନଙ୍କ ପକ୍ଷରେ ଅସମ୍ଭବ (ବିଡ଼ମ୍ବନା) ବୋଲି କାହିଁକି କହିଲେ କୁନ୍ତୀ ?

**ଜନ୍ମ କର୍ମ ଚ ବିଶ୍ୱାତ୍ମନ୍ ଅଜସ୍ୟ-ଅକର୍ତ୍ତୁଃ ଆତ୍ମନଃ ।**
**ତିର୍ଯ୍ୟଙ୍-ଋଷିଷୁ ଯାଦଃସୁ ତଦ୍ ଅତ୍ୟନ୍ତ ବିଡ଼ମ୍ବନମ୍ ।।୩୦।।**

ଉତ୍ତର: କୁନ୍ତୀ କହିଲେ-ଆପଣ ଅଜନ୍ମା ହୋଇ ପଶୁ (ବରାହ, ନୃସିଂହ), ନୃ(ନର),ଜଳଚର ଯାଦଃସୁ (ମୀନ, କଚ୍ଛପ) ଶରୀର ଧରନ୍ତି । ଆତ୍ମାରାମ ଅକର୍ତ୍ତା ହୋଇ ରାମ-କୃଷ୍ଣ ଅବତାରରେ ବିବାହ,ପ୍ରଜାପାଳନ ଆଦି ଗୃହସ୍ଥାଶ୍ରମ ଓ ରାଜକାର୍ଯ୍ୟ ସବୁ ସମ୍ଭାଳନ୍ତି ସାମାନ୍ୟ ଜୀବ ଭଳି ।

ପ୍ରଶ୍ନ-୬୪:ମୁଁ ଶୁଣିଛି-ପିଲାଦିନେ ଆପଣ ମାଙ୍କ ବିନା ଅନୁମତିରେ ଭାଣ୍ଡ କଣା କରି ଦୁଧ, ଦହି,ଲହୁଣୀ ଖାଉଥିଲେ । ଥରେ ମା ଛାଟିଆ ଧରି ଗୋଡ଼ାଇଲେ ଆପଣଙ୍କୁ । ଆପଣ ପରା ଯମରାଜାଙ୍କର ମଧ୍ୟ ଯମ । ସୂର୍ଯ୍ୟ,ମହାକାଳ ଯମ ମଧ୍ୟ ଆପଣଙ୍କ ନାମ ଶୁଣିଲେ ଭୟ କରନ୍ତି । ଆପଣ ମାଙ୍କ ହାତରେ ପତଳା ବାଡ଼ି ଖଣ୍ଡେ ଦେଖି ଭୟରେ ପଳାୟନ କରୁଥିଲେ । ଅଜସ୍ର କ୍ରନ୍ଦନରେ ଅଶ୍ରୁଧାର ବହି

ଚକ୍ଷୁର କଜଳ ଗାଲ ଉପରେ ବହି ଯାଉଥିଲା । କି ଅବୋଧ ଲୀଳା ଆପଣଙ୍କର ସତେ ! ଆପଣଙ୍କ ଅବତାର ଗ୍ରହଣର କାରଣ କେହି ଦୁଷ୍ଟ ଦଳନ,ସନ୍ଥ ପାଳନ ଓ ଧର୍ମ ସଂସ୍ଥାପନ କହନ୍ତି-ପୂର୍ବେ ପୃଷ୍ଣି ସୁତପାଙ୍କ ତପସ୍ୟା ଫଳ ସ୍ୱରୂପ ବଚନ ବଦ୍ଧତା । କିନ୍ତୁ ମୁଁ କହେ-ଅଜ୍ଞାନ, ଅବିଦ୍ୟାରେ ପଡ଼ି ସଂସାର ବନ୍ଧନରୁ ଲୋକଙ୍କୁ ଫିଟେଇବା ପାଇଁ ଦରକାର କୃଷ୍ଣଲୀଳାର ଅଭିନୟ, ଧ୍ୟାନ ଓ ସ୍ମରଣ । ଆପଣଙ୍କ ଅବତାର ହେଲେ ସିନା ଆପଣଙ୍କ ଲୀଳା ପ୍ରକଟ ହେବ । ବ୍ୟାସ, ଗର୍ଗ, ନାରଦ ଆଦି ପୁରାଣ, ସଂହିତା ସବୁ ଲେଖିବେ । ଠାକୁରାଜୀ ଦ୍ୱାରକା ଚାଲିଗଲେ ହସ୍ତିନାପୁର ରାଜ୍ୟ କିପରି ଦିଶିବ ବୋଲି କୁନ୍ତୀ କହିଲେ ?

**ନ-ଇୟଂ ଶୋଭିଷ୍ୟତେ ତତ୍ର    ଯଥା-ଇଦାନୀଂ ଗଦାଧର ।**
**ତ୍ୱତ୍ ପଦୈଃ ଅଙ୍କିତା ଭାତି    ସ୍ୱଲକ୍ଷଣ ବିଲକ୍ଷିତୈଃ ॥୩୯॥**

ଉତ୍ତରଃ ହେ ଗଦାପାଣି ଗୋବିନ୍ଦ, ଆପଣଙ୍କ ଚରଣ ଚିହ୍ନ ଯୁକ୍ତ ହୋଇଥିବାରୁ ହସ୍ତିନାପୁର ବନ, ଭୂମି, ରାଜପ୍ରାସାଦ ସବୁ କି ସୁନ୍ଦର ଦିଶୁଛନ୍ତି !! ଆପଣଙ୍କ ପ୍ରସ୍ଥାନ ପରେ ସେସବୁ ହତଶ୍ରୀ ହୋଇଯିବେ । ଆପଣଙ୍କର ଅବସ୍ଥାନ ଓ ଅମୃତ ଦୃଷ୍ଟି ହେତୁ ଏ ରାଜ୍ୟର ବୃକ୍ଷ ଲତା, ତରୁ, ଗୁଳ୍ମ,ଫୁଲ, ଫଳ, ଶସ୍ୟରେ ପୂରି ଉଠିଛନ୍ତି । ଗାଈମାନେ ଯଥେଷ୍ଟ ଦୁଧ ଦେଉଛନ୍ତି । ନଦ-ନଦୀ ବଣ ପର୍ବତ ସବୁ ଶୋଭାୟମାନ ହୋଇଛନ୍ତି ।

ପ୍ରଶ୍ନ-୬୫ଃ ପରମେଶ୍ୱର (ବିଶ୍ୱେଶ), ପରମାତ୍ମା (ବିଶ୍ୱାତ୍ମନ) ଶ୍ରୀ କୃଷ୍ଣଙ୍କୁ କିଭଳି କୃପା କରିବାକୁ ପ୍ରାର୍ଥନା କଲେ କୁନ୍ତୀ ମହାରାଣୀ ?

**ଅଥ ବିଶ୍ୱେଶ ବିଶ୍ୱ-ଆତ୍ମନ୍    ବିଶ୍ୱ-ମୂର୍ତ୍ତେ ସ୍ୱକେଷୁ ମେ ।**
**ସ୍ନେହ ପାଶଂ ଇମଂ ଛିନ୍ଧି    ଦୃଢ଼ଂ ପାଣ୍ଡୁଷୁ ବୃଷ୍ଣିଷୁ ॥୪୧॥**

ଉତ୍ତରଃ କୁନ୍ତୀଦେବୀ କହିଲେ-ସହଜେ ମୁଁ ନାରୀ ହୋଇ ଜନ୍ମିଛି । ମମତା ମୋର ସହଜାତ ଗୁଣ ବା ଦୋଷ । ହେ ବିଶ୍ୱରୂପ (ବିଶ୍ୱମୂର୍ତ୍ତେ), ମୁଁ ବୃଷ୍ଣିକୁଳ (ବାପଘର ) ଓ ପାଣ୍ଡବ କୁଳ (ଶ୍ୱଶୁର ଘର) ସ୍ନେହ ମମତା ଜାଲରେ ଛନ୍ଦି ହୋଇଯାଇଛି । ସୁତରାଂ ମୋ ମନରୁ ଦୁଇ ଆସକ୍ତି ମମତା କାଟି ଦିଅନ୍ତୁ । ମୁଁ କେବଳ ହରି ସ୍ମରଣ କରୁଥିବି ମନରେ । ଏତିକି କୃପା କରନ୍ତୁ ମୋତେ ।

**ସୂତ ଉବାଚ**

ପ୍ରଶ୍ନ-୬୬: ହେ ଯଦୁବଂଶ ଶିରୋମଣି କୃଷ୍ଣ, ଗଙ୍ଗାନଦୀ ଯେପରି କାହାପାଇଁ ଅଟକି ନଯାଇ ସମୁଦ୍ର ସହ ମିଳିବା ପାଇଁ ଆକୁଳ, ଠିକ୍ ସେଇମିତି ମୋର ମନ ବୁଦ୍ଧି ଆପଣଙ୍କ ଦିବ୍ୟ ପ୍ରେମ ପାଇଁ ନିରନ୍ତର ଧାବମାନ । ହେ ଗୋବିନ୍ଦ, ଗୋ-ବ୍ରାହ୍ମଣ-ଦେବତା ପାଳକ ଆପଣ ଯୋଗେଶ୍ୱର ଓ ସମସ୍ତ ଗୁରୁଙ୍କର ଗୁରୁ ପରମଗୁରୁ । ମୁଁ ଆପଣଙ୍କୁ ବିନମ୍ର ଦଣ୍ଡବତ ପ୍ରଣାମ ଜଣାଉଛି । ଏଭଳି କୋମଳ, ପ୍ରାଣସ୍ପର୍ଶୀ ପ୍ରାର୍ଥନା ସ୍ତୁତି ଶ୍ରବଣ କରି ମନ ମୋହନ କୃଷ୍ଣ (ବୈକୁଣ୍ଠୋ) କିପରି କୃପା କଲେ କୁନ୍ତୀ ଦେବୀଙ୍କୁ ?

**ପୃଥୟା-ଇତ୍ଥଂ କଳପଦୈଃ ପରିଣୂତ-ଅଖିଳ-ଉଦୟଃ ।**
**ମନ୍ଦଂ ଜହାସ ବୈକୁଣ୍ଠୋ ମୋହୟନ୍ ଇବ ମାୟୟା ।।୪୪।।**

ଉତ୍ତର:କ'ଣ ଆଉ କରନ୍ତେ!! ମୋହିନୀ ମାୟାଯୁକ୍ତ ମନ୍ଦହାସରେ କୁନ୍ତୀଙ୍କ ସହିତ ଅନ୍ୟ ସମସ୍ତଙ୍କୁ ମୋହିତ କରିଦେଲେ । ଦ୍ୱାରାକାଯାତ୍ରା କିଛି ଦିନ ଲାଗି ସ୍ଥଗିତ ରହିଲା । କୁନ୍ତୀଦେବୀଙ୍କ ପ୍ରତି ଗୋବିନ୍ଦଙ୍କର ଏହା ହିଁ ଅପାର କୃପା ।

# ଅଥ ୯ମ ଅଧ୍ୟାୟଃ

## (ଭୀଷ୍ମଦେବଙ୍କ ଶରଶଯ୍ୟାରେ କୃଷ୍ଣ ସ୍ତୁତି)

**ସୂତ ଉବାଚ**

ପ୍ରଶ୍ନ-୬୭: ମହାଭାରତ ଯୁଦ୍ଧରେ ଅଭୂତପୂର୍ବ ଜନକ୍ଷୟରେ ପ୍ରଜାଗଣ ହୁଏତ ବିଦ୍ରୋହ କରିପାରନ୍ତି। ରାଜ ଧର୍ମ, ବର୍ଣ୍ଣଧର୍ମ, ଆଶ୍ରମ ଧର୍ମ, ନାରୀ ଧର୍ମ, ଇତ୍ୟାଦିର ମର୍ମ ବୁଝିବାକୁ (ବିବିତ୍ସୟା) ରାଜା ଯୁଧିଷ୍ଠିର କ'ଣ କଲେ ?

**ଇତି ଭୀତଃ ପ୍ରଜାଦ୍ରୋହାତ୍ ସର୍ବଧର୍ମ ବିବିତ୍ସୟା ।**
**ତତ୍ର ବିନଶନଂ ପ୍ରାଗାତ୍ ଯତ୍ର ଦେବବ୍ରତୋଽପତତ୍ ।।୧।।**

ଉତ୍ତର:ଶ୍ରୀକୃଷ୍ଣ ଭଗବାନଙ୍କ ପ୍ରେରଣାରେ ଧର୍ମର ମର୍ମଜ୍ଞ ଭୀଷ୍ମଦେବ ଶରଶଯ୍ୟାରେ ଉତ୍ତରାୟଣକୁ ଅପେକ୍ଷା କରିଥିବା କୁରୁକ୍ଷେତ୍ରସ୍ଥିତ ସେ ବାଣ ଗଙ୍ଗା

ତୀର୍ଥକୁ ସମସ୍ତ ରାଜନ୍ୟ ବର୍ଗ ଓ ଗୋବିନ୍ଦଙ୍କୁ ଧରି ଚାଲିଲେ ।

ପ୍ରଶ୍ନ-୬୮: ସେମାନଙ୍କ ସହିତ ଆଉ କିଏ କିଏ ଥିଲେ ।?

**ତଦା ତେ ଭ୍ରାତରଃ ସର୍ବେ ସଦ୍ ଅଶ୍ୱୈଃ ସ୍ୱର୍ଣ୍ଣଭୂଷିତୈଃ ।**
**ଅନ୍ୱଗଚ୍ଛନ୍ ରଥୈଃ ବିପ୍ରା ବ୍ୟାସ ଧୌମ୍ୟ-ଆଦୟଃ ତଥା ।।୨।।**

ଉତ୍ତର: ସାଙ୍ଗରେ ଥାଆନ୍ତି ମୁନିଜନ ଭୂଷଣ ବ୍ୟାସଜୀ, କୁଳଗୁରୁ ଧୌମ୍ୟ ଆଦି ଅନେକ ମୁନି ଋଷି ଓ ବେଦଜ୍ଞ ବ୍ରାହ୍ମଣ ।

ପ୍ରଶ୍ନ-୬୯:ସେତେ ବେଳେ ପିତାମହ ଭୀଷ୍ମଦେବଙ୍କ ଶରଶଯ୍ୟା ଦୃଶ୍ୟ ମହାଭୟଙ୍କର ନା ଅତି ମନୋହର ଥିଲା ?

**ଦୃଷ୍ଟ୍ୱା ନିପତିତଂ ଭୂମୌ ଦିବଃ ଚ୍ୟୁତଂ ଇବ-ଅମରମ୍ ।**
**ପ୍ରଣେମୁଃ ପାଣ୍ଡବା ଭୀଷ୍ମଂ ସାନୁଗାଃ ସହଚକ୍ରିଣା ।।୪।।**

ଉତ୍ତର:ମନେ ହେଉଥିଲା ସତେ ଯେପରି ସ୍ୱର୍ଗଲୋକରୁ ଜଣେ ଦେଦୀପ୍ୟମାନ ଦେବତା ମର୍ତ୍ତ୍ୟଲୋକରେ ଖସି ପଡ଼ିଛନ୍ତି । ଗୋବିନ୍ଦ (ସହଚକ୍ରିଣା) ଙ୍କ ସହିତ ରାଜାଙ୍କର ସମସ୍ତ ଅନୁଚର ଓ ରାଜନ୍ୟବର୍ଗ ଭୀଷ୍ମଦେବଙ୍କୁ ସଭକ୍ତିକ ଦଣ୍ଡବତ୍ ପ୍ରଣାମ କଲେ ।

ପ୍ରଶ୍ନ-୭୦: ଅନେକ ରାଜର୍ଷି, ବ୍ରହ୍ମର୍ଷିଙ୍କ ସହିତ ସ୍ୱୟଂ ନାରଦ ମହର୍ଷି ମଧ୍ୟ ଉପସ୍ଥିତ ଥାଆନ୍ତି କୁରୁକୁଳ ମୁକୁଟମଣିଙ୍କ ଇଚ୍ଛାମୃତ୍ୟୁ ନାଟକର ଶେଷ ଯବନିକା ପତନର ଦର୍ଶନ କରି ନିଜ ଜୀବନକୁ ଧନ୍ୟ କରିବାକୁ । ମହାଭାଗବତ ଭୀଷ୍ମଦେବ ଦେଶ- କାଳ-ବର୍ଣ୍ଣ-ଆଶ୍ରମ ଇତ୍ୟାଦି ସକଳ ଧର୍ମର ମର୍ମ ବେତ୍ତା ଥିଲେ । ସକଳ ଋଷି ମୁନି ସାଧୁସନ୍ଥମାନଙ୍କୁ ମାନସିକ ପୂଜନ କଲେ ଭୀଷ୍ମ ଦେବ । ତେବେ ସେ ଲୀଳାବିହାରୀ କୃଷ୍ଣଙ୍କ ପୂଜନ କଲେ କିପରି ଭାବରେ ?

**କୃଷ୍ଣଂଚ ତତ୍ ପ୍ରଭାବଜ୍ଞ ଆସୀନଂ ଜଗଦୀଶ୍ୱରମ୍ ।**
**ହୃଦିସ୍ଥଂ ପୂଜୟାମାସ ମାୟୟା-ଉପାତ୍ତ ବିଗ୍ରହମ୍ ।।୧୦।।**

ଉତ୍ତର:ସେ ଭଲଭାବରେ ଜାଣନ୍ତି କୃଷ୍ଣଙ୍କୁ । ସେ ସକଳ ଈଶ୍ୱରମାନଙ୍କର ଈଶ୍ୱର ପରମେଶ୍ୱର । ପୁଣି ସକଳ ଜଗତର ସାର୍ବଭୌମ ଶାସନକର୍ତ୍ତା । ମାୟାର ଅନ୍ତରାଳରେ ସେ ମନୁଷ୍ୟ ଦେହରେ ପ୍ରକଟ ହେଲେ ମଧ୍ୟ ଭୀଷ୍ମଙ୍କ ହୃଦୟ କମଳରେ ସାକ୍ଷାତ୍ ବିଦ୍ୟମାନ । ଭୀଷ୍ମଦେବ ଉଭୟ ସ୍ଥାନରେ ମାନସିକ ପୂଜନ କଲେ ତାଙ୍କୁ ।

ପ୍ରଶ୍ନ-୭୧: ପାଣ୍ଡବ ମାନେ ପିତାମହଙ୍କୁ ଚାରିପଟେ ଘେରି ବସିଲେ । ଭୀଷ୍ମଦେବଙ୍କ ଚକ୍ଷୁ ସଜଳ । ବାକ୍‌ରୁଦ୍ଧ ଅବସ୍ଥା । ତଥାପି ଯୁଧିଷ୍ଠିରଙ୍କୁ ଗଦ୍ ଗଦ୍ କଣ୍ଠରେ ଗୋବିନ୍ଦଙ୍କ ସାମନାରେ କ'ଣ କହିଲେ ?

**ଅହୋ କଷ୍ଟଂ ଅହୋଽନ୍ୟାୟଂ ଯଦ୍ ଯୂୟଂ ଧର୍ମନନ୍ଦନାଃ ।**
**ଜୀବିତୁଂ ନ-ଅର୍ହଥ କ୍ଳିଷ୍ଟଂ ବିପ୍ର ଧର୍ମ- ଅଚ୍ୟୁତ-ଆଶ୍ରୟାଃ ।।୧୨।।**

ଉତ୍ତର: ଆହା କେତେ ଦୁଃଖର କଥା ! କି ଘୋର ଅନର୍ଥ, ଅନ୍ୟାୟ ଘଟଣା!ହେ ଯୁଧିଷ୍ଠିର ତୁମେ ସ୍ୱୟଂ ଧର୍ମ ନନ୍ଦନ । ପୁଣି ଗୋ, ବ୍ରାହ୍ମଣ ସେବକ । ଅଚ୍ୟୁତ ଭଗବାନଙ୍କ ଶରଣାଗତ । ତଥାପି ତୁମ ଜୀବନରେ ଏତେ ପ୍ରତିକୂଳ ପରିସ୍ଥିତି !! ତୁମ ଜୀବନରେ ଏତେ ଦୁଃଖ, ଶୋକ, କଷ୍ଟ !!

ପ୍ରଶ୍ନ-୭୨: ମୋର ମନେ ଅଛି- ଅତିରଥୀ ପଣ୍ଡୁଙ୍କ ଅସମୟ ମୃତ୍ୟୁ ବେଳକୁ ତୁମେ ପାଞ୍ଚ ଭାଇ ଛୋଟ ଛୋଟ ବାଳକ ମାତ୍ର । ପଣ୍ଡୁଙ୍କ ମୃତ୍ୟୁ ପରେ ତୁମମାନଙ୍କୁ ପାଳିବାରେ ପୁତ୍ର ବଧୂ କୁନ୍ତୀଙ୍କୁ ବାରମ୍ବାର ଅନେକ କଷ୍ଟ ସହିବାକୁ ପଡ଼ିଛି । ତୁମମାନଙ୍କୁ ଯେଉଁ କଷ୍ଟ ଭୋଗ କରିବାକୁ ପଡ଼ିଲା ମୋ ମତରେ ସେ ସବୁ ତୁମ କର୍ମଫଳ ଭୋଗ ନୁହେଁ । ବରଂ ଭଗବାନଙ୍କ ଲୀଳାରେ ତାଙ୍କ ଅନୁଚର ଦେବତା କାଳ ବା ଲୋକପାଳ ଭୂମିକାରେ ଏସବୁ କୌତୁକବଶତଃ ତୁମ ମାଧ୍ୟମରେ କରୁଥିଲେ । ଏକଥାଟି ବୁଝାଇବାକୁ ପିତାମହ ଭୀଷ୍ମଦେବ କେଉଁ ଉଦାହରଣଟିଏ ଦେଲେ ଯୁଧିଷ୍ଠିରଙ୍କୁ ?

**ସର୍ବଂ କାଳ କୃତଂ ମନ୍ୟେ ଭବତାଂ ଚ ଯଦ୍ ଅପ୍ରିୟମ୍ ।**
**ସ ପାଲୋ ଯଦ୍‌ବଶେ ଲୋକୋ ବାୟୋଃ ଇବ ଘନାବଳିଃ ।।୧୪।।**

ଉତ୍ତର: ସଦା ଅସଙ୍ଗ ଆକାଶରେ ବାୟୁ ଯେତେବେଳେ ମେଘମାନଙ୍କୁ ଏଣେ ତେଣେ ଦୌଡ଼ାଇ ଅସ୍ତବ୍ୟସ୍ତ କରେ ସେତେବେଳେ କ'ଣ ମେଘମାନଙ୍କୁ ସେମାନଙ୍କ ପୂର୍ବକୃତ ଅପରାଧର ଫଳ ଭୋଗୁଥିବା କଥା ବୋଲି ଆମେ କହିବା !! ତା ନୁହେଁ । ମେଘର ପ୍ରାରବ୍ଧ ସେ ଭୋଗ କରିବ । ନିମିତ୍ତ ବାୟୁ ହେଉ ବା ଅନ୍ୟ କେହି ହେଉ । ସୁନ୍ଦର ଦୃଷ୍ଟାନ୍ତଟିଏ ।।

ପ୍ରଶ୍ନ-୭୩: ବିଷ୍ଣୁମାୟାଙ୍କ ଦ୍ୱାରା କୃତ ଲୀଳା ରହସ୍ୟକୁ ବ୍ରହ୍ମା ଶଙ୍କର ମଧ୍ୟ ଭେଦ କରିପାରିବାରେ ଅକ୍ଷମ । ଏପରି ସ୍ଥଳେ ଭୀଷ୍ମଦେବ ପାଣ୍ଡବମାନଙ୍କ ଦୁଃଖରେ ଆଶ୍ଚର୍ଯ୍ୟ କାହିଁକି ହେଲେ ?

**ଯତ୍ର ଧର୍ମ ସୁତୋ ରାଜା ଗଦାପାଣିଃ ବୃକୋଦରଃ ।**
**କୃଷ୍ଣୋଽସ୍ତ୍ରୀ ଗାଣ୍ଡିବଂ ଚାପଂ ସୁହୃଦ୍ କୃଷ୍ଣଃ ତତୋ ବିପଦ୍ ॥୧୫॥**

ଉତ୍ତର:ରାଜା ଯୁଧିଷ୍ଠିର ସ୍ୱୟଂ ଧର୍ମଙ୍କ ସନ୍ତାନ । ତାଙ୍କୁ ଗଦାଧାରୀ ଭୀମ ସେନ,ଗାଣ୍ଡୀବ ଧନୁର୍ଦ୍ଧାରୀ ଅର୍ଜୁନ ରକ୍ଷା କରନ୍ତି। ଜଗତପାଳକ ଗୋବିନ୍ଦଜୀ ସୁହୃଦ୍ ରୂପେ ପାଖେ ପାଖେ ବିଦ୍ୟମାନ । ସେଠାରେ ପୁଣି ବିପଦ ପରେ ବିପଦ!! ଏହା କ'ଣ କମ୍ ଆଶ୍ଚର୍ଯ୍ୟ ର କଥା !!

ପ୍ରଶ୍ନ-୭୪: ପିତାମହ ଶେଷରେ ସେ ସବୁ ଅବୋଧ ଲୀଳା ରହସ୍ୟର ସୂତ୍ରଧର ବୋଲି କାହାକୁ ନିଶ୍ଚୟ କଲେ ?

**ନ ହି-ଅସ୍ୟ କର୍ହିଚିଦ୍ ରାଜନ୍ ପୁମାନ୍ ବେଦ ବିଧିତ୍ସିତମ୍ ।**
**ଯଦ୍ ବିଜିଜ୍ଞାସୟା ଯୁକ୍ତା ମୁହ୍ୟନ୍ତି କବୟୋଽପି ହି ॥୧୬॥**

ଉତ୍ତର: ସେଇ ମହାକାଳରୂପ ବେଦ ପ୍ରତିପାଦିତ (ବିଧିତ୍ସିତମ୍) ଶ୍ରୀକୃଷ୍ଣଙ୍କୁ । ତାଙ୍କ ଲୀଳାକୁ ବେଦଜ୍ଞ ପଣ୍ଡିତ, ସରସ୍ୱତୀ,ବୃହସ୍ପତି ଦେବତାମାନେ ମଧ ବୁଝିପାରନ୍ତିନି । ସେ କହିଲେ -ହେ ଯୁଧିଷ୍ଠିର (ରାଜନ୍) ତୁମେ ଆମେ ତେବେ କିପରି ବୁଝନ୍ତେ ? କୌଣସି ଅନ୍ୟାୟ କର୍ମରେ କଦାପି ତୁମେ କର୍ତ୍ତା ହୋଇନପାର ।

ପ୍ରଶ୍ନ-୭୫: ଘଟିଯାଉଥିବା ସକଳ ଘଟଣାର କର୍ତ୍ତା କୃଷ୍ଣ ସ୍ୱୟଂ । ଏବେ ଦୁର୍ଯ୍ୟୋଧନ ଆଦି ଦୁଷ୍ଟମାନେ ବିଦାୟ ହୋଇସାରିଛନ୍ତି । ତୁମେ ସିଂହାସନ ଅଧୀରୂଢ଼ । ନିମିତ୍ତରୂପେ ଏ ଅନାଥ ପ୍ରଜାମାନଙ୍କୁ ସନ୍ତାନ ରୂପେ ପାଳନ କର ଏଥର । ପ୍ରଜାଗଣଙ୍କୁ ନୂତନ ଦିଗ୍‌ଦର୍ଶନ ଦିଅ । ତଥାପି ହସ୍ତିନାପୁର ପ୍ରଜାମାନେ ଶ୍ରୀକୃଷ୍ଣଙ୍କ ଶରଣାଗତ ହୁଅନ୍ତୁ ବୋଲି କାହିଁକି ଯୁଧିଷ୍ଠିରଙ୍କୁ ପିତାମହ ଆଦେଶ ଦେଲେ ?

**ଏଷ ବୈ ଭଗବାନ୍ ସାକ୍ଷାତ୍ ଆଦ୍ୟୋ ନାରାୟଣଃ ପୁମାନ୍ ।**
**ମୋହୟନ୍ ମାୟୟା ଲୋକଂ ଗୂଢ଼ଃ ଚରତି ବୃଷ୍ଣିଷୁ ॥୧୮॥**

ଉତ୍ତର:କାରଣ ଭୀଷ୍ମଙ୍କ ମତରେ ଶ୍ରୀକୃଷ୍ଣ ହିଁ ସ୍ୱୟଂ ନାରାୟଣ ମହାବିଷ୍ଣୁ । ଆଦି ପୁରୁଷ । ମାୟା ଅନ୍ତରାଳରେ ରହି ସେ ଅଚିନ୍ତ୍ୟ ଲୀଳା କରୁଛନ୍ତି । ବୃଷ୍ଣି ବଂଶରେ ପ୍ରକଟ ହୋଇ ଅଭକ୍ତମାନଙ୍କୁ ଅଗୋଚର ରହି ଭକ୍ତମାନଙ୍କୁ ଆନନ୍ଦ ଦେବାକୁ ନର ଦେହ ଧାରଣ କରିଛନ୍ତି । ଏଇ କଥା କେବଳ ବୁଝାଇବାକୁ ।

ପ୍ରଶ୍ନ-୭୬: ତାଙ୍କର ଅଚିନ୍ତ୍ୟ ଶକ୍ତି ଓ ଦୁର୍ବୋଧ ଲୀଳା କଥା

ବେଦମାନଙ୍କରେ ମଧ୍ୟ ଜ୍ଞାନୀ ମାନଙ୍କ ଠାରୁ ଗୁପ୍ତ ରଖାଯାଇଛି । ତାଙ୍କ ଲୀଳା ରହସ୍ୟ ତେବେ କେଉଁମାନେ ବୁଝିପାରନ୍ତି ?

**ଅସ୍ୟ ଅନୁଭାବଂ ଭଗବାନ୍ ବେଦଗୁହ୍ୟତମଂ ଶିବଃ ।**
**ଦେବର୍ଷିଃ ନାରଦଃ ସାକ୍ଷାଦ୍ ଭଗବାନ୍ କପିଳୋ ନୃପ ।।୧୯।।**

ଉତ୍ତରଃ ଭୀଷ୍ମଦେବ କହିଲେ- ହେ ରାଜନ୍ (ନୃପ ) କେବଳ ଶିବ, ଦେବର୍ଷି ନାରଦ ଓ ମହାମୁନି କପିଳଙ୍କୁ କିଛି କିଛି ଜଣା ।

ପ୍ରଶ୍ନ-୭୭ଃ ଏପରିସ୍ଥଳେ ସେ ଯୁଧିଷ୍ଠିରଙ୍କୁ କ'ଣ ସବୁ କହି ସତର୍କ କରାଇ ଦେଲେ ?

**ଯଂ ମନ୍ୟସେ ମାତୁଳେୟଂ ପ୍ରିୟଂ ମିତ୍ରଂ ସୁହୃଦ୍‌ତମମ୍ ।**
**ଅକରୋଃ ସଚିବଂ ଦୂତଂ ସୌହୃଦାଦ୍ ଅଥ ସାରଥିମ୍ ।।୨୦।।**

ଉତ୍ତର : ଗଙ୍ଗାପୁତ୍ର ଭୀଷ୍ମ କହିଲେ- ହେ ଯୁଦ୍ଧିଷ୍ଠିର, ତୁମେ ତାଙ୍କୁ ବୁଝି ନ ପାରି ଚିହ୍ନି ନପାରି ମାତୁଳପୁତ୍ର ଭାଇ ଭଳି ବ୍ୟବହାର କରୁଛ । ତୁମେମାନେ ତାଙ୍କୁ ପ୍ରିୟ ମିତ୍ର, ସୁହୃତ୍‌ଶ୍ରେଷ୍ଠ ଶୁଭଚିନ୍ତକ ଭାବିଲ । ତାଙ୍କୁ ମନ୍ତ୍ରୀ ମନେ କଲ । ଦୂତପଣରେ ହସ୍ତିନା ପଠାଇଲ । ଷୋଳକଳା ଭଗବାନ୍‌ଙ୍କୁ ରଥଚାଳକ ରୂପେ ନିଯୁକ୍ତ କରି କେଉଁ ବିଜ୍ଞତାର କାର୍ଯ୍ୟ କରିଚ କହ ତ ଦେଖି !

ପ୍ରଶ୍ନ-୭୮ : ଦେଖ ଯୁଧିଷ୍ଠିର ! ଶ୍ରୀକୃଷ୍ଣ ହିଁ ସର୍ବାତ୍ମା,ସମଦର୍ଶୀ, ଅଦ୍ୱିତୀୟ, ଅହଂକାର ଶୂନ୍ୟ । ସେ ନିଷ୍ପାପ ପରମାତ୍ମା ବୋଲି ତାଙ୍କଠାରେ ବିଷମତା ଦେଖିବାକୁ ମିଳେନା । ସେ ଭକ୍ତ ପ୍ରତି କୃପାମୟ (ଅନୁକମ୍ପିତଂ) ବୋଲି କେଉଁ ଦୃଷ୍ଟାନ୍ତ ଦେଲେ ଯୁଧିଷ୍ଠିରଙ୍କୁ ?

**ତଥାପି-ଏକାନ୍ତ ଭକ୍ତେଷୁ ପଶ୍ୟ ଭୂପ-ଅନୁକମ୍ପିତମ୍ ।**
**ଯଦ୍ ମେଽସୂନ୍ ତ୍ୟଜତଃ ସାକ୍ଷାଦ୍ କୃଷ୍ଣୋ ଦର୍ଶନଂ ଆଗତଃ ।।୨୨।।**

ଉତ୍ତରଃ ଜୀବଭାବରେ ମୁଁ ଜଣେ ନଗଣ୍ୟ ସେବକ ତାଙ୍କର । ଶରଣାଗତ ଅବସ୍ଥାରେ ଚାହିଁଥିଲି ମୋ ଶେଷ ସମୟରେ ମୋତେ ଟିକିଏ ଦର୍ଶନ ଦେଇ ଅନୁଗୃହୀତ କରିବାକୁ । ମୁଁ ଏବେ ପ୍ରାଣ ତ୍ୟାଗ କରିବାକୁ ତାଙ୍କୁ ମୋର ହୃଦୟକମଳରେ ଧ୍ୟାନ କରୁଥିଲି । ସେଠାରେ ସେ ଦର୍ଶନ ଦେଲେ । ତଥାପି ସେ ଅସନ୍ତୁଷ୍ଟ ରହିଗଲେ । ଦେଖ ତ ଯୁଧିଷ୍ଠିର । ବର୍ତ୍ତମାନ ସଶରୀରେ ମୋ ସାମ୍ନାରେ ସେ ଉପସ୍ଥିତ ।

କାଳେ ମୋ ଧ୍ୟାନ ଠିକ୍ ଠିକ୍ ହୋଇ ନ ପାରିବ !!! କୃପାର ପାରବାର (ସମୁଦ୍ର) ଶ୍ରୀକୃଷ୍ଣଙ୍କୁ କେବେ ଭୁଲିବେନି ରାଜା ଯୁଧିଷ୍ଠିର ।

ପ୍ରଶ୍ନ-୭୯: ଭୀଷ୍ମଦେବ ପୁଣି କହିଲେ-ଭଗବଦ୍ ପରାୟଣ ଯୋଗୀ ଦେହ ତ୍ୟାଗ ବେଳେ ମନରେ ତାଙ୍କ ରୂପ ଧ୍ୟାନ କରୁକରୁ ବାଣୀରେ ତାଙ୍କ ନାମ କୀର୍ତ୍ତନ କରିପାରିଲେ କ'ଣ ଲାଭ ହୁଏ ଜାଣିଚ କି ଯୁଧିଷ୍ଠିର ?

**ଭକ୍ତ୍ୟା-ଆବେଶ୍ୟ ମନୋ ଯସ୍ମିନ୍ ବାଚା ଯଦ୍ ନାମ କୀର୍ତ୍ତୟନ୍ ।**
**ତ୍ୟଜନ୍ କଳେବରଂ ଯୋଗୀ ମୁଚ୍ୟତେ କାମ କର୍ମଭିଃ ।।୨୩।।**

ଉତ୍ତର:ସ୍ଥୂଳ ରୂପରେ ମନରେ ଥିବା ଇଚ୍ଛା, କାମନା ଓ ସୂକ୍ଷ୍ମରୂପରେ ତାର କାରଣ ଦେହରେ ଥିବା ବାସନାରୁ ସେ ତୁରନ୍ତ ମୁକ୍ତ ହୁଏ । ତା ସହିତ ସଂଚିତ- କ୍ରିୟମାଣ-ପ୍ରାରବ୍ଧ ଆଦି ସକଳ କର୍ମ ବନ୍ଧନରୁ ସେ ମୁକ୍ତି ଲାଭ କରିଥାଏ ।

ପ୍ରଶ୍ନ-୮୦:ମହାଭାଗବତ ଦେବବ୍ରତ ଭୀଷ୍ମ ଭଗବାନଙ୍କୁ ବିନୀତ ଅନୁରୋଧ କଲେ ତାଙ୍କ ଦେହ ତ୍ୟାଗ ବେଳକୁ ସମ୍ମୁଖରେ ଭଗବାନଙ୍କ ଦିବ୍ୟ ଦର୍ଶନ ମିଳୁଥାଉ । ଏକଥା ଶୁଣି ଯୁଧିଷ୍ଠିର ମହାରାଜ ତାଙ୍କୁ କ'ଣ ପଚାରିଲେ ?

**ଯୁଧିଷ୍ଠିରଃ ତଦ୍ ଆକର୍ଣ୍ଣ୍ୟ ଶୟାନଂ ଶରପଞ୍ଜରେ ।**
**ଅପୃଚ୍ଛଦ୍ ବିବିଧାନ୍ ଧର୍ମାନ୍ ଋଷିଣାଂ ଚ-ଅନୁଶୃଣ୍ୱତାମ୍ ।।୨୫।।**

ଉତ୍ତର:ଭୀଷ୍ମଦେବ ଶରଶଯ୍ୟାରେ ଥାଆନ୍ତି । ମୁନି ଋଷିମାନେ ସମସ୍ତେ ତାଙ୍କ କଥୋପକଥନ ଶ୍ରବଣ କରୁଥାନ୍ତି (ଅନୁଶୃଣ୍ୱତାମ୍) । ସୁତରାଂ କେବଳ ମାନବ ଧର୍ମ ବିଷୟରେ ତାଙ୍କର ଜିଜ୍ଞାସା ହେଲା ।

ପ୍ରଶ୍ନ-୮୧:କେଉଁ କେଉଁ ଧର୍ମ ବିଷୟରେ ଜାଣିବାକୁ ରାଜା ଯୁଧିଷ୍ଠିର ଆଗ୍ରହୀ ହେଲେ ?

**ଦାନ ଧର୍ମାନ୍ ରାଜ ଧର୍ମାନ୍ ମୋକ୍ଷ ଧର୍ମାନ୍ ବିଭାଗଶଃ ।**
**ସ୍ତ୍ରୀ ଧର୍ମାନ୍ ଭଗବଦ୍ ଧର୍ମାନ୍ ସମାସ ବ୍ୟାସ ଯୋଗତଃ ।।୨୭।।**

ଉତ୍ତର: ପ୍ରବୃତ୍ତି ଧର୍ମ, ନିବୃତ୍ତି ଧର୍ମ, ୪ ବର୍ଣ୍ଣର ଧର୍ମ, ୪ ଆଶ୍ରମର ଧର୍ମ, ଦାନ ଧର୍ମ,ରାଜ ଧର୍ମ, ମୋକ୍ଷଧର୍ମ, ସ୍ତ୍ରୀ ଧର୍ମ ଆଦି ସହିତ ଭାଗବତ (ଭକ୍ତି) ଧର୍ମର ମର୍ମକୁ ସଂକ୍ଷେପରେ ଓ ବିସ୍ତାରିତ ଭାବରେ ବୁଝାଇ କହିବାକୁ ସେ ଅନୁରୋଧ କଲେ ।

ପ୍ରଶ୍ନ-୮୨:ଇତିହାସ (ରାମାୟଣ-ମହାଭାରତ) ପୁରାଣ ଆଖ୍ୟାୟିକା ମାନଙ୍କରୁ ଉଦାହରଣ ଦେଇ ଧର୍ମ-ଅର୍ଥ-କାମ-ମୋକ୍ଷ ବିଷୟକୁ ୪ ପୁରୁଷାର୍ଥ ଓ ସେମାନଙ୍କ ସାଧନ ପ୍ରଣାଳୀ ତତ୍ୱବେତ୍ତା ଭୀଷ୍ମଦେବ ବର୍ଣ୍ଣନା କଲେ । ଶେଷରେ ଇଚ୍ଛାମୃତ୍ୟୁ ବରପ୍ରାପ୍ତ ଭକ୍ତରାଜ ଭୀଷ୍ମଦେବ ଦେହ ଛାଡ଼ିବାକୁ ଇଚ୍ଛା କଲେ । ସେ ନିଜେ ଜଣେ ସିଦ୍ଧ ଯୋଗୀ ଥିଲେ । ଉତ୍ତରାୟଣ କାଳକୁ ସେ ଅପେକ୍ଷା କରିଥିଲେ ଅଠାବନ ଦିନ ଧରି । ତାପରେ ସେଠାରେ କ'ଣ ଅଲୌକିକ ଘଟଣା ଘଟିଲା?

**ଧର୍ମଂ ପ୍ରବଦତଃ ତସ୍ୟ ସଃ କାଳଃ ପ୍ରତ୍ୟୁପସ୍ଥିତଃ ।**
**ଯୋ ଯୋଗିନଃ ଛନ୍ଦ-ମୃତ୍ୟୋଃ ବାଞ୍ଛିତଃ ତୁ-ଉତ୍ତରାୟଣଃ ।।୨୯।।**

ଉତ୍ତର:ଏହି ସମୟରେ ଉତ୍ତରାୟଣ କାଳ ଉପସ୍ଥିତ ହେଲେ । ଭୀଷ୍ମ ଆଉ ଅଧିକ କାଳକ୍ଷେପଣ ନକରି ଉଭୟ ଚକ୍ଷୁ ମୁଦ୍ରିତ କରିଦେଲେ ।

ପ୍ରଶ୍ନ-୮୩:ଭୀଷ୍ମଦେବ ବୋଲିଥିବା ସର୍ବମୋଟ ୧୧ ଟି ଶ୍ଳୋକ ମଧ୍ୟରୁ ୧ ମ ଶ୍ଳୋକରେ ସ୍ୱ ସମର୍ପଣ କଲେ କି ଲଳିତ ସ୍ତୁତି ଗାନ କରି ?

**ଇତିମତିଃ ଉପକଳ୍ପିତା ବିତୃଷ୍ଣା**
**ଭଗବତି ସାତ୍ୱତ ପୁଙ୍ଗବେ ବିଭୂମ୍ନି ।**
**ସ୍ୱ ସୁଖଂ ଉପଗତେ କ୍ୱଚିଦ୍ ବିହର୍ତୁଂ**
**ପ୍ରକୃତିଂ ଉପେୟିଷୁ ଯଦ୍ ଭବ ପ୍ରବାହଃ ।।୩୨।।**

ଉତ୍ତର:ଯେଉଁ ମନ ବୁଦ୍ଧିରେ ମୁଁ ଜାଣିପାରୁଛି ଯଦୁବଂଶ ଶିରୋମଣି (ସାତ୍ୱତ ପୁଙ୍ଗବ) କୃଷ୍ଣ ହିଁ ଭୂମା (ବିଭୂମ୍ନି) ପୁରୁଷ । ସେ ସ୍ୱୟଂ ଆତ୍ମାରାମ । ନିଜ ସୁଖ ପାଇଁ ପାର୍ଥିବ ସୃଷ୍ଟି ତାଙ୍କର ଦରକାର ପଡ଼େନା । କିନ୍ତୁ ତାଙ୍କ ଲୀଳା ଅବତାର ଦ୍ୱାରା ଯେଉଁ ମନରେ ଅନନ୍ତ ଯୁଗରୁ ପଡ଼ରହିଥିବା ଅନନ୍ତ କାମନା ବାସନା ତ୍ୟାଗ କରିବାକୁ ଜୀବମାନଙ୍କୁ ସୁଯୋଗ ଦେବାକୁ ମାୟାଶକ୍ତି ବଳରେ ସେ ସୃଷ୍ଟିର ସୃଜନ, ପାଳନ,ସଂହାର କରନ୍ତି ଏବଂ ଭବ ପ୍ରବାହ ଚାଲୁରହେ । ସେଇ ମନକୁ ମୁଁ ତାଙ୍କୁ ସମର୍ପଣ କରୁଛି ।ଯେଉଁ ଗେଲ ବସର ମନଟି ମୋର ନିଜ ପାଳିତ କନ୍ୟା ।

ପ୍ରଶ୍ନ-୮୪: ପରବର୍ତ୍ତୀ ୯ଟି ଶ୍ଳୋକରେ କେବଳ ନବଧା ଭକ୍ତି ବର୍ଣ୍ଣିତ । ଏଭଳି ସ୍ତୁତିରେ ଭୀଷ୍ମଦେବ ଏଥିରେ ଶ୍ରୀକୃଷ୍ଣଙ୍କର କି କି ଦିବ୍ୟ ଲୀଳାସବୁ ବର୍ଣ୍ଣନ କରିଥିଲେ ।

**ତ୍ରିଭୁବନ କମନଂ ତମାଲ ବର୍ଣ୍ଣଂ**
**ରବିକର ଗୌର ବର-ଅମ୍ବରଂ ଦଧାନେ ।**
**ବପୁଃ ଅଳକ କୁଳ ଆବୃତ୍ତ-ଆନନ-ଅବ୍ଜଂ**
**ବିଜୟ ସଖେ ରତିଃ ଅସ୍ତୁ ମେଽନବଦ୍ୟା ॥୩୩॥**

ଉତ୍ତରଃ ଶ୍ରୀ କୃଷ୍ଣଙ୍କ ଦେହ ଲୌକିକ ନୁହେଁ, ଅଲୌକିକ । ତ୍ରିଭୁବନ ସୁନ୍ଦର । ତମାଳ ପୁଷ୍ପର ବର୍ଣ୍ଣପରି ଶ୍ୟାମ ରଙ୍ଗ । ପ୍ରଭାତୀ ସୂର୍ଯ୍ୟଙ୍କ ହଳଦୀରଙ୍ଗ କିରଣ ଭଳି ତାଙ୍କର ପୀତାମ୍ବର ଶୋଭାଯାଏ । ମୁଖ କମଳରେ ନୀଳ ଅଳକ ଶୋଭାୟମାନ । ସେଇ ଅର୍ଜୁନ ସଖା କୃଷ୍ଣଙ୍କଠାରେ ମୋର ନିଷ୍କପଟ (ଧର୍ମ-ଅର୍ଥ-କାମ-ମୋକ୍ଷ ଅଭିଳାଷ ଶୂନ୍ୟ ) ଭକ୍ତି ଜନ୍ମ-ଜନ୍ମାନ୍ତରେ ରହୁ ।

ପ୍ରଶ୍ନ-୮୫ଃ ଯୁଦ୍ଧଭୂମିର କୃଷ୍ଣଙ୍କର କବଚ ମଣ୍ଡିତ ଚିନ୍ମୟ ଦେହରେ ତାଙ୍କର ତୀକ୍ଷଣ୍ ବାଣ ବିଦ୍ଧହେବା ଦୃଶ୍ୟ କିଭଳି ଶବ୍ଦରେ ଭୀଷ୍ମଦେବ ବର୍ଣ୍ଣନ କଲେ ?

**ଯୁଧି ତୁରଗ ରଜୋ ବିଧୂମ୍ର ବିଷ୍ୱକ୍**
**କଚ ଲୁଳିତ ଶ୍ରମ-ବାରି-ଅଳଂକୃତ-ଆସ୍ୟେ ।**
**ମମ ନିଶିତ ଶରୈଃ ବିଭିଦ୍ୟମାନ**
**ତ୍ୱଚି ବିଳସତ୍ କବଚେଽସ୍ତୁ କୃଷ୍ଣ-ଆତ୍ମା ॥୩୪॥**

ଉତ୍ତରଃ ମହାଭାରତ ଯୁଦ୍ଧ ସମୟରେ ଘୋଡ଼ାମାନଙ୍କ ପାଦ ଖୁରା ଧୂଳି ପବନରେ ଉଡୁଥାଏ । ଶ୍ରୀ କୃଷ୍ଣଙ୍କ ମୁଖରେ ରଥଚାଳନା ଜନିତ ସ୍ୱେଦ (ଶ୍ରମ-ବାରି) ଓ କୁଞ୍ଚିତ କେଶରେ ସେ ଧୂସରିତ ଧୂଳି ଅତି ସୁନ୍ଦର ମାନୁଥାଏ । ସେଇ କୃଷ୍ଣଙ୍କ ଚରଣକମଳରେ ମୋର ଚିତ୍ତ, ମନ, ବୁଦ୍ଧି (ଆତ୍ମା) ଲାଗି ରହୁ ।

ପ୍ରଶ୍ନ-୮୬ଃ ସମର ଭୂମିର ମଧ୍ୟସ୍ଥଳରେ ରଥକୁ ରଖିଲେ ଗୋବିନ୍ଦ । ଆଦେଶ ପୁଣି ସଖା ଅର୍ଜୁନଙ୍କର ଉଭୟ ପକ୍ଷଙ୍କର ସୈନ୍ୟ ନିରୀକ୍ଷଣ ଲାଗି । ସେ ସମୟରେ ଲୀଳାମୟ କୃଷ୍ଣ ଅନ୍ୟାୟୀକୁ କୃପା କରିବାକୁ କି ଅଲୌକିକ କାଣ୍ଡ ଭିଆଇଲେ ?

**ସପଦି ସଖି ବଚୋ ନିଶମ୍ୟ ମଧ୍ୟେ**
**ନିଜ ପରୟୋଃ ବଳୟୋ ରଥଂ ନିବେଶ୍ୟ ।**
**ସ୍ଥିତବତି ପରସୈନିକ-ଆୟୁଃ ଅକ୍ଷ୍ଣା**
**ହୃତବତି ପାର୍ଥ ସଖେ ରତିଃ ମମ-ଅସ୍ତୁ ॥୩୫॥**

ଉତ୍ତର: ସଖା ଅର୍ଜୁନଙ୍କ ଶତ୍ରୁପକ୍ଷର ସୈନ୍ୟକୁ ଗୋବିନ୍ଦ ନିରୀକ୍ଷଣ କରୁ କରୁ ନିଜ ଅଲୌକିକ ଯୋଗଶକ୍ତି ବଳରେ ସେମାନଙ୍କର ଅବଶିଷ୍ଟ ଆୟୁଷ ହରଣ କରି ନେଇଥିଲେ । (ସେମାନେ ଅଧର୍ମ କର୍ମ କରିବାକୁ ଉଦ୍ୟତ ହୋଇଥିବାରୁ ସେମାନଙ୍କ କଲ୍ୟାଣ ବିଧାନ କରିବାକୁ) । ସେଭଳି ଶୁଭଚିନ୍ତକ କୃଷ୍ଣଙ୍କ ଦିବ୍ୟ ଲୀଳାରେ ମୋ ଚିତ୍ତ ସର୍ବଦା ଲାଗି ରହୁ ।

ପ୍ରଶ୍ନ-୮୭: ମହାଭାରତ ଯୁଦ୍ଧ ସମୟରେ ଶତ୍ରୁ ପକ୍ଷର କୌରବ ସୈନ୍ୟମାନଙ୍କ ପ୍ରଧାନ ପ୍ରଧାନ ସେନାପତିମାନଙ୍କୁ ଅର୍ଜୁନ ଦେଖିଲେ । ନରହତ୍ୟା ମହାପାପ ବୋଲି ଶାସ୍ତ୍ରରୁ ସେ ଜାଣିଥିଲେ । ସେ ନିଜେ ଯୁଦ୍ଧରେ ମରିବାକୁ ଡ଼ରୁ ନଥିଲେ କିନ୍ତୁ ଡ଼ରିଲେ ପାପକୁ । ବୀର ଅର୍ଜୁନ ଧନୁଶର ତଳେ ରଖିଦେଇ ଯୁଦ୍ଧ କରିବାକୁ ମନା କଲେ । ଗୋବିନ୍ଦ ତାଙ୍କୁ କି ସଦ୍‌ବୁଦ୍ଧି ଦେଲେ ? କି ସଦ୍‌ଜ୍ଞାନ ଦେଲେ ?

**ବ୍ୟବହିତ ପୃତାନା ମୁଖଂ ନିରୀକ୍ଷ୍ୟ**

**ସ୍ୱଜନ ବଧାଦ୍ ବିମୁଖସ୍ୟ ଦୋଷବୁଦ୍ଧ୍ୟା ।**

**କୁମତିଂ ଅହରତ୍ ଆତ୍ମବିଦ୍ୟୟା ଯଃ**

**ଚରଣ ରତିଃ ପରମସ୍ୟ ତସ୍ୟ ମେଽସ୍ତୁ ।।୩୬।।**

ଉତ୍ତର: ଆତ୍ମଜ୍ଞାନ ବା ଗୀତା ଜ୍ଞାନ ଦେଲେ । ଖାଲି ମନୁଷ୍ୟ କ'ଣ ? ପଶୁ,ପକ୍ଷୀ, ବୃକ୍ଷଲତା ସମସ୍ତେ ଅବିନାଶୀ ଆତ୍ମାଙ୍କ ଅଂଶ । ସୁତରାଂ ସ୍ୱଭାବତଃ ସତ୍-ଚିତ-ଆନନ୍ଦମୟ । ଦେହ ସବୁ ତ କେବଳ ପ୍ୟାଣ୍ଟ, ସାର୍ଟ, ଶାଢ଼ୀ, ବ୍ଲାଉଜ୍ ଭଳି ଖୋଳ ଆବରଣ ମାତ୍ର । ଏଭଳି ସଦ୍ ବୁଦ୍ଧି ଦେଇ ତାଙ୍କ ମଳିନ ଚିତ୍ତ, ମନ, ବୁଦ୍ଧିକୁ ଯେଉଁ ଗୋପୀଜନ ବଲ୍ଲଭ ନିର୍ମଳ କରାଇଥିଲେ ତାଙ୍କ ଚରଣ କମଳରେ ମୋ ମନ,ବୁଦ୍ଧି, ଚିତ୍ତ ମୋ ମୃତ୍ୟୁପରେ ମଧ୍ୟ ଘର କରି ରହନ୍ତୁ ।

ପ୍ରଶ୍ନ-୮୮: ସେ ସ୍ୱୟଂ ଭଗବାନ । ତାଙ୍କର ପ୍ରତିଜ୍ଞା ମହାଭାରତ ଯୁଦ୍ଧରେ ଅସ୍ତ୍ରଧାରଣ କରିବେନି । ମୁଁ ତାଙ୍କର ଭକ୍ତ । ମୁଁ ପ୍ରତିଜ୍ଞା କରିଥିଲି ତାଙ୍କୁ ଅସ୍ତ୍ରଧରାଇ ଦେବି । ମୋ ପ୍ରତିଜ୍ଞା ରଖିବାକୁ ସେ ନିଜ ପ୍ରତିଜ୍ଞା କିପରି ଭାଙ୍ଗିଲେ ଦେଖ ତ ?

**ସ୍ୱନିଗମଂ ଅପହାୟ ମତ୍ ପ୍ରତିଜ୍ଞାଂ**

**ଋତଂ ଅଧିକର୍ତ୍ତୁଂ ଅବପ୍ଲୁତୋ ରଥସ୍ଥଃ ।**

**ଧୃତ ରଥ ଚରଣୋ-ଅଭ୍ୟଯାତ୍ ଚଲଦ୍‌ଗୁଃ**
**ହରିଃ ଇବ ହନ୍ତୁଂ ଇଭଂ ଗତ-ଉତ୍ତରୀୟଃ ॥୩୭॥**

ଉତ୍ତର: ରଥରୁ ବ୍ୟାକୁଳ ହୋଇ ଭଗବାନ ତଳକୁ ଡେ଼ଇଁ ପଡ଼ିଲେ । ସୁଦର୍ଶନ ଚକ୍ରକୁ ସ୍ମରଣ କରିବାକୁ ତାଙ୍କୁ ତର ସହିଲାନି । ଭଙ୍ଗା ରଥର ଚକଟେ ତଳୁ ଗୋଟାଇଲେ । ଦୌଡ଼ି ଆସିଲେ ମୋତେ ମାରିବାକୁ । ସତେ ଯେପରି କ୍ଷୁଧିତ ବଳବାନ୍ ସିଂହ ଦୌଡୁଛି ନିରୀହ ହସ୍ତୀଟେ ଶିକାର କରିବାକୁ । ସେ ଚକଟା କ'ଣ ଅସ୍ତ୍ର ହେଲାନି କି । ତାଙ୍କ ପ୍ରତିଜ୍ଞା ଭାଙ୍ଗିଗଲା । ସାକ୍ଷୀ ତାଙ୍କର ପୀତାମ୍ବର । ସେ ପୀତାମ୍ବର ହିଁ ଜଣାଇଲା ପ୍ରଭୁ, ଆପଣ ହାରିଗଲେ ଯୁଦ୍ଧରେ ଓ ପ୍ରତିଜ୍ଞାରେ ମଧ୍ୟ । ଭକ୍ତ ଭୀଷ୍ମଙ୍କର ଗୌରବ ବଢ଼ିଲା । ଧନ୍ୟ କୃପାମୟ ପ୍ରଭୁ । ତୁମେ ଏକା ଶରଣବତ୍ସଳ ସଂସାରରେ । ତୁମ ଭକ୍ତ ବତ୍ସଳ ପତାକାର ଜୟ ହେଉ ।

ପ୍ରଶ୍ନ-୮୯: ଭୀଷ୍ମଦେବ ସ୍ୱୀକାର କଲେ ନିଜକୁ ଆତତାୟୀ ବୋଲି । ସେ ରଥୀ ଅର୍ଜୁନଙ୍କୁ ବାଣ ନମାରି ଯୁଦ୍ଧ ନିୟମ ଭଙ୍ଗ କଲେ । ସାରଥୀ କୃଷ୍ଣଙ୍କୁ ବାଣ ମାରି ତାଙ୍କ କବଚ ଛିନ୍ନ ଭିନ୍ନ କରିଦେଇଥିଲେ । ଅର୍ଜୁନ ମନା କରୁଥାନ୍ତି ପଛରୁ ଟାଣି ପ୍ରଭୁ, ପ୍ରତିଜ୍ଞା ଭଙ୍ଗ କରିବା ଦରକାର ନାହିଁ । ମୋ ହସ୍ତରେ ଗାଣ୍ଡିବ ଅଛି । ସେତେ ବେଳେ ଠାକୁରଜୀ କାହିଁକି ଅର୍ଜୁନଙ୍କ ବାରଣ ମାନି ନଥିଲେ ?

**ଶିତ ବିଶିଖ ହତୋ ବିଶିର୍ଣ୍ଣ ଦଂଶଃ**
**କ୍ଷତଜ ପରିପ୍ଳୁତ ଆତତାୟିନୋ ମେ ।**
**ପ୍ରସଭଂ ଅଭିସସାର ମତ୍ ବଧ-ଅର୍ଥଂ**
**ସ ଭବତୁ ମେ ଭଗବାନ୍ ଗତିଃ ମୁକୁନ୍ଦଃ ॥୩୮॥**

ଉତ୍ତର: ସେ ମୁକ୍ତିଦାତା (ମୁକୁନ୍ଦ) । ତାଙ୍କର ଇଚ୍ଛା ଭବିଷ୍ୟତରେ ଭକ୍ତ, ଅଭକ୍ତମାନେ ବରଂ କୃଷ୍ଣ ନିନ୍ଦା କରନ୍ତୁ । ଭକ୍ତ ଭୀଷ୍ମଙ୍କର ପ୍ରତିଜ୍ଞାଭଙ୍ଗ ନିନ୍ଦା ନହେଉ । ସୁତରାଂ ଜାଣି ଜାଣି ଅସ୍ତ୍ରଧାରଣ କଲେ ଭକ୍ତର ବିଜୟ ବାନା ଟେକି ଧରିବାକୁ । ଅତଏବ ଏଭଳି କୃପାମୟଙ୍କ ଚରଣ କମଳକୁ ମୋର ମନ ବୁଦ୍ଧି ଗତି କରିନ୍ତୁ ।

ପ୍ରଶ୍ନ-୯୦: ମହାଭାରତ ଯୁଦ୍ଧବେଳେ କୃଷ୍ଣଙ୍କ ବାମ ହସ୍ତରେ ଅଶ୍ୱମାନଙ୍କ ବନ୍ଧନ ରଜ୍ଜୁ, ଦକ୍ଷିଣ ହସ୍ତରେ ଚାବୁକ ଥାଏ । ଯୁଦ୍ଧରେ ପ୍ରାଣ ହରାଇଥିବା ସୈନ୍ୟମାନେ ଭଗବାନଙ୍କର ଏ ସୁନ୍ଦର ରୂପ ଦର୍ଶନ କରି କ'ଣ ପ୍ରାପ୍ତ ହେଲେ ?

**ବିଜୟ ରଥ କୁଟୁମ୍ବେ ଆତ୍ତ ତୋତ୍ରେ**

**ଧୃତ ହୟ ରଶ୍ମିନି ତଦ୍ ଶ୍ରିୟା-ଈକ୍ଷଣୀୟେ ।**

**ଭଗବତି ରତିଃ ଅସ୍ତୁ ମେ ମୁମୂର୍ଷୋଃ**

**ଯଂ ଇହ ନିରୀକ୍ଷ୍ୟ ହତା ଗତାଃ ସ୍ୱରୂପମ୍ ॥୩୯॥**

ଉତ୍ତର: ସେମାନେ ସମସ୍ତେ ସାଯୁଜ୍ୟ ମୁକ୍ତି (ସ୍ୱରୂପମ୍) ପ୍ରାପ୍ତ ହେଲେ । ମୋର କିନ୍ତୁ ସାଯୁଜ୍ୟ କି ସାରୂପ୍ୟ ସାଲୋକ୍ୟ, ସାମୀପ୍ୟ, ସାର୍ଷ୍ଟି, କୌଣସି ମୁକ୍ତି ନ ହେଉ । ମୋର ମନ, ବୁଦ୍ଧି ତାଙ୍କର ଚରଣରେ ଆଶ୍ରିତ ଥାଆନ୍ତୁ । ସେ ସବୁଥିଲେ ତ ପୁଣି ଆଉ ଥରେ କୃଷ୍ଣ ଲୀଳାରେ ଭାଗନେବାକୁ ମୋତେ ସୁଯୋଗ ମିଳିବ କୃଷ୍ଣଙ୍କ ସେବାପାଇଁ ।

ପ୍ରଶ୍ନ-୯୧: ମରଣ ଶଯ୍ୟାରେ ଭୀଷ୍ମଦେବ ଭଗବାନଙ୍କ ଦିବ୍ୟ ରାସ ଲୀଳା କଥା ମନେ ପକାଇ ତାଙ୍କର ଅଲୌକି ରୂପ ମାଧୁରୀ, ଲୀଳା ମାଧୁରୀ ଓ ମୁରଲୀ ମାଧୁରୀ ଆଦିକୁ କିପରି ଶବ୍ଦରେ ସ୍ତୁତି କଲେ ?

**ଲଳିତ ଗତି ବିଳାସବଲ୍ଗୁ ହାସ**

**ପ୍ରଣୟ ନିରୀକ୍ଷଣ କଳ୍ପିତ-ଉରୁମାନାଃ ।**

**କୃତଂ ଅନୁକୃତ ବତ୍ୟ ଉନ୍ମଦ-ଅନ୍ଧାଃ**

**ପ୍ରକୃତିଂ ଅଗନ୍ କିଳ ଯସ୍ୟ ଗୋପବଧ୍ୱଃ ॥୪୦॥**

ଉତ୍ତର: କୃଷ୍ଣଙ୍କର ଗମନ ମଧୁର, ହାସ୍ୟ ମଧୁର, ନୟନ ମଧୁର । କୃଷ୍ଣ ବିରହରେ ଗୋପୀମାନେ ସମସ୍ତେ ଗୋଟି ଗୋଟି କରି କୃଷ୍ଣଲୀଳା ଅଭିନୟ କରିବାରେ ଲାଗିଲେ । ସେମାନେ ଆଜି କୃଷ୍ଣ ପାଗଳିନୀ । ସେମାନଙ୍କ ଚିତ୍ତ କୃଷ୍ଣ ତନ୍ମୟ । ଧନ୍ୟା ସେଇ ଗୋପବଧୂଗଣ । ଅତଏବ ମଲାବେଳେ ମୋର ମନ, ବୁଦ୍ଧି ଓ ଚିତ୍ତ ସେଇ ମନ ମୋହନଙ୍କ ଶ୍ରୀ ଅଙ୍ଗରେ ଲାଗି ରହୁ ।

ପ୍ରଶ୍ନ-୯୨: ଯୁଧିଷ୍ଠିର ଇନ୍ଦ୍ରପ୍ରସ୍ଥର ରାଜା ହେଲେ । ଗୋବିନ୍ଦଙ୍କର ତାଙ୍କୁ ରାଜ ଚକ୍ରବର୍ତ୍ତୀ କରିବାକୁ ଇଚ୍ଛା ହେଲା । ଏକମାତ୍ର ଶତ୍ରୁ ଜରାସନ୍ଧଙ୍କୁ ଭୀମସେନଙ୍କ ଦ୍ୱାରା ଉଦ୍ଧାର କଲେ । ରାଜସୂୟ ଯଜ୍ଞର ଶୁଭାରମ୍ଭ ହେଲା । ବ୍ୟାସ, ବଶିଷ୍ଠ ଆଦି ମୁନି ଋଷିଙ୍କ ସହିତ ଆର୍ଯ୍ୟାବର୍ତ୍ତର ସକଳ ରାଜା ଉପସ୍ଥିତ । ତ୍ରିଭୁବନ ବନ୍ଦ୍ୟ କୃଷ୍ଣଙ୍କୁ ଆଦ୍ୟ ଅର୍ଘ ସମର୍ପଣ କଲେ ଯୁଧିଷ୍ଠିର । ଶିଶୁପାଳଙ୍କ ତୀବ୍ର ପ୍ରତିବାଦ କିଛି କାମ

ଦେଲାନି । ସେ ନିଜ ମସ୍ତକ ହରାଇ ବସିଲେ ଗୋବିନ୍ଦଙ୍କ ସୁଦର୍ଶନ ଚକ୍ର ପ୍ରୟୋଗରେ । ଏସବୁ ଅଦ୍ଭୁତ ନାଟକର ଦୃଶ୍ୟ କିଏ କିଏ ଦେଖିଥିଲେ ସେତେବେଳେ ?

**ମୁନିଗଣ ନୃପବର୍ଯ୍ୟ ସଂକୁଳେଽନ୍ତଃ**

**ସଦସି ଯୁଧିଷ୍ଠିର ରାଜସୂୟ ଏଷାମ୍ ।**

**ଅର୍ହଣଂ ଉପପେଦ ଈକ୍ଷଣୀୟୋ**

**ମମ ଦୃଶିଗୋଚର ଏଷ ଆବିଃ ଆତ୍ମା ॥୪୧॥**

ଉତ୍ତର:ଏସବୁ ଘଟଣା ମୋ ନିଜ ଆଖି ଆଗରେ ଘଟିଗଲା । ସେଇ ଅଲୌକିକ, ମନୁଷ୍ୟ ବୁଦ୍ଧି ଅଗମ୍ୟ, ସର୍ବଶକ୍ତିମାନ, ନନ୍ଦନନ୍ଦନଙ୍କ ଶରଣରେ ମୋ ମନ ସର୍ବଦା ଲାଗି ରହୁ ।

ପ୍ରଶ୍ନ-୯୩: ଭକ୍ତରାଜ ଭୀଷ୍ମଦେବ ଏପର୍ଯ୍ୟନ୍ତ ପୂର୍ବବର୍ତ୍ତୀ ୯ ଟି ଶ୍ଳୋକରେ (୩୩-୪୧) ନବଧା ଭକ୍ତି ଅର୍ଘ୍ୟ ଅର୍ପଣ କଲେ । ଏମାନଙ୍କ ପୂର୍ବରୁ ୩୨ତମ ଶ୍ଳୋକରେ ସେ ସର୍ବ ସମର୍ପଣ କରିସାରିଛନ୍ତି । ତାଙ୍କ ପାଖରେ କେବଳ ଗୋଟିଏ କଥା ବାକି ରହିଛି । ଜୀବର ଅହଂକାର (ସ୍ୱ) । କୋଟି ଜନ୍ମର ଅର୍ଜିତ ସଂସ୍କାର । ସେଇଟିକୁ ମହାଭାଗବତ୍ ଭୀଷ୍ମଦେବ କି ଭଳି ଶବ୍ଦରେ ସମର୍ପଣ କରିଦେଲେ ?

**ତଂ ଇମଂ ଅହଂ ଅଜଂ ଶରୀରଭାଜାଂ**

**ହୃଦି ହୃଦି ଧିଷ୍ଠିତଂ ଆତ୍ମ କଳ୍ପିତାନାମ୍ ।**

**ପ୍ରତିଦୃଶଂ ଇବ ନ୍-ଏକଧା -ଅର୍କଂ ଏକଂ ସମାଧି**

**ଗତୋଽସ୍ମି ବିଧୂତ ଭେଦ ମୋହଃ ॥୪୨॥**

ଉତ୍ତର: ସଂସାରରେ ସୂର୍ଯ୍ୟ ଗୋଟିଏ । ଅନେକ ଜଳପାତ୍ରରେ ଅନେକ ପ୍ରତିବିମ୍ବ (ପ୍ରତିଦୃଶଂ) ଦେଖି ଆମେ ଭାବୁଛୁ ତାଙ୍କର ଅନେକ ରୂପ । ଠିକ୍ ସେହି ରୂପେ ଗୋବିନ୍ଦ ଏକ । ସେ ସ୍ୱଭାବତଃ ଅଜନ୍ମା କିନ୍ତୁ ଲୀଳା ପ୍ରକଟ ପାଇଁ ଭିନ୍ନ ଭିନ୍ନ ଦେହରେ ସେଇ ଗୋବିନ୍ଦ କେବଳ ଜୀବମାନଙ୍କ ହୃଦୟରେ ଅନେକ ଭଳି ଦିଶନ୍ତି । ତାଙ୍କରି କୃପାରୁ ଏ ରହସ୍ୟ ମୁଁ ଜାଣିପାରିଛି । ମୁଁ ବର୍ତ୍ତମାନ ସମ-ଆଧିସ୍ଥ । ଆଧି ଅର୍ଥ ଚଞ୍ଚଳ ମନ । ତାହା ସ୍ଥିର ହୋଇଛି। ଅନୁକୂଳ ବସ୍ତୁ-ବ୍ୟକ୍ତି-ପରିସ୍ଥିତି ପ୍ରତି ମୋର ରାଗ (ଭଲପାଇବା) ଦୂର (ବିଧୂତ) ହୋଇଛି । ପ୍ରତିକୂଳ ବସ୍ତୁ-ବ୍ୟକ୍ତି-ପରିସ୍ଥିତି ପ୍ରତି ମୋର ଦ୍ୱେଷ ମଧ୍ୟ ନାହିଁ । ଏକ ବାକ୍ୟରେ କହିଲେ ମୁଁ ସମ୍ପୂର୍ଣ୍ଣ

ସଂସାର ଆସକ୍ତି ହରାଇ ଶ୍ରୀକୃଷ୍ଣ ଆସକ୍ତ ହୋଇପଡ଼ିଛି । ଏହାହିଁ ମୋର ଅହଂକାରର ସମର୍ପଣ ବା ସର୍ବସ୍ୱ ସମର୍ପଣ । ତେଣିକି ଗୋବିନ୍ଦଙ୍କ ଇଚ୍ଛା । ଏହାହିଁ ଭଗବାନଙ୍କୁ ଭକ୍ତର ଅନ୍ତିମ ନୈବେଦ୍ୟ । ଭକ୍ତଠାରୁ ଭଗବାନଙ୍କର ପ୍ରାପ୍ୟ ମଧ୍ୟ ।

ପ୍ରଶ୍ନ-୯୪: ଭକ୍ତରାଜ ଭୀଷ୍ମ ଭଗବାନ ଶ୍ରୀକୃଷ୍ଣଙ୍କୁ ସମାଧି ମାଧ୍ୟମରେ କାୟ-ମନୋ-ବାଣୀ ଦ୍ୱାରା ନିଜକୁ କୃଷ୍ଣଙ୍କଠାରେ ଲୀନ କରାଇ ଦିବ୍ୟ ସ୍ତୁତି କଲେ । ଭୀଷ୍ମଙ୍କର ପ୍ରାଣବାୟୁର ଅବସ୍ଥା କ'ଣ ହେଲା ସେତେବେଳେ ?

**କୃଷ୍ଣ ଏବଂ ଭଗବତି ମନୋବାକ୍ ଦୃଷ୍ଟି ବୃତ୍ତିଭିଃ ।**
**ଆତ୍ମନି-ଆତ୍ମାନଂ ଆବେଶ୍ୟ ସୋଽନ୍ତଃ ଶ୍ୱାସ ଉପାରମତ୍ ।।୪୩।।**

ଉତ୍ତର: ଭୀଷ୍ମଙ୍କ ପ୍ରାଣବାୟୁ ସେହିଠାରେ ବିଶ୍ୱପ୍ରାଣ ବା ମହାପ୍ରାଣରେ ଲୀନ ହୋଇଗଲା । ଲୋକ ଲୋକାନ୍ତର ଯିବା ଦରକାର ପଡ଼ିଲା ନାହିଁ । ସେ ଶାନ୍ତ ହୋଇଗଲେ । ଦିବ୍ୟ ବସୁ ଦେହରେ ସେ ଫେରିଗଲେ ସ୍ୱର୍ଲୋକ । ଅପେକ୍ଷା କରି ରହିଲେ କୋଟି ବ୍ରହ୍ମାଣ୍ଡ ନାୟକଙ୍କର ପରବର୍ତ୍ତୀ ଦିବ୍ୟ ଲୀଳାରେ ଅଂଶଗ୍ରହଣ କରିବାକୁ । ମୁକ୍ତି ତାଙ୍କ ପାଇଁ ତୁଚ୍ଛା କାଇଁଚ ମାଳି ।

ପ୍ରଶ୍ନ-୯୫: ଦିନ ବିତିଗଲେ ସଂଧ୍ୟା ଆସେ । ପକ୍ଷୀମାନଙ୍କ କାକଳି କଳରବ ବନ୍ଦ ହୋଇଯାଏ । ସେହିଭଳି ଭୀଷ୍ମଦେବଙ୍କ ଦେହ ତ୍ୟାଗ କଲେ । ତାଙ୍କ ଚତୁର୍ଦ୍ଦିଗରେ ଘେରି ରହିଥିବା ସାଧୁ ସନ୍ଥ ମଣ୍ଡଳୀ ଚୁପ୍ ହୋଇଗଲେ । ସ୍ୱର୍ଗରେ ଦେବତାମାନେ ଏ ଦୃଶ୍ୟ ଦେଖି କ'ଣ କଲେ ?

**ତତ୍ର ଦୁନ୍ଦୁଭୟୋ ନେଦୁଃ ଦେବ ମାନବ ବାଦିତାଃ ।**
**ଶଶଂସୁଃ ସାଧବୋ ରାଜ୍ଞାଂ ଖାତ୍ ପେତୁଃ ପୁଷ୍ପବୃଷ୍ଟୟଃ ।।୪୫।।**

ଉତ୍ତର: ଦୂରରେ ଥାଇ ଦୃଶ୍ୟ ଦେଖୁଥିବା ହସ୍ତିନାପୁର ବାସୀ ନାନା ପ୍ରକାର ବାଜା ବଜାଇଲେ । ଜୟ ଜୟ କାର କଲେ । ଦେବତାମାନେ ସ୍ୱର୍ଗରେ ଦୁନ୍ଦୁଭି (ସ୍ୱର୍ଗବାଦୀ) ବଜାଇଲେ ଆନନ୍ଦରେ ସେଭଳି ସାଧୁପୁରୁଷଙ୍କ ଦେହତ୍ୟାଗ ନାଟକ ଦର୍ଶନ କରିବା ସୁଯୋଗ ପାଇ । ସେମାନେ ମଧ୍ୟ ଆକାଶରୁ (ଖାତ୍) କୁସୁମ ବୃଷ୍ଟିକରି ଭକ୍ତ-ଭଗବାନ-ଭକ୍ତି ଦେବୀଙ୍କର ଜୟଧ୍ୱନି କରିବାରେ ଲାଗିଲେ ।

ଯୁଧିଷ୍ଠିର ଭୀଷ୍ମଦେବଙ୍କର ଅନ୍ତ୍ୟେଷ୍ଟି କ୍ରିୟା ଶେଷ କଲେ । ମୁନିଋଷିମାନେ ଠାକୁରଜୀଙ୍କ ସ୍ତୁତି ପାଠ କରି କରି ସ୍ୱ ସ୍ୱ ଆଶ୍ରମକୁ ପ୍ରସ୍ଥାନ କଲେ ରାଜା ଯୁଧିଷ୍ଠିର

ଗୋବିନ୍ଦଙ୍କ ସାଙ୍ଗରେ ହସ୍ତିନା ଫେରି ଆସିଲେ । ଧୃତରାଷ୍ଟ୍ର ଗାନ୍ଧାରୀ ଆଦିଙ୍କୁ ପୁତ୍ର ବିରହ ଶୋକରେ ସମବେଦନା ଜଣାଇଲେ । ଧୃତରାଷ୍ଟ୍ରଙ୍କ ଆଜ୍ଞା ଓ ଗୋବିନ୍ଦଙ୍କ କୃପା ପ୍ରାପ୍ତ ହୋଇ ଜ୍ୟେଷ୍ଠ ପାଣ୍ଡବ ଯୁଧିଷ୍ଠିର ହସ୍ତିନାପୁର ସିଂହାସନରେ ଅଭିଷିକ୍ତ ହେଲେ ।

# ଅଥ ୧୦ମ ଅଧ୍ୟାୟଃ

## (ଭଗବାନ ଶ୍ରୀକୃଷ୍ଣଙ୍କ ଦ୍ୱାରକା ପ୍ରସ୍ଥାନ )

### ସୂତ ଉବାଚ

ପ୍ରଶ୍ନ-୯୬: ଧର୍ମରାଜ ଯୁଧିଷ୍ଠିର ଆଦୌ କାମଭୋଗ ପରାୟଣ ନଥିଲେ । ସେ ଧର୍ମ ମାର୍ଗରେ ପ୍ରଜା ପାଳନ କଲେ । ସଂସାରରେ ଅଧର୍ମର କ୍ଷୟ ହେବାରୁ ଧର୍ମରକ୍ଷକ ଭଗବାନ ଅତି ପ୍ରସନ୍ନ ହେଲେ । କୁରୁ ବଂଶର ଅନ୍ତର୍ଦ୍ୱନ୍ଦ ସମାପ୍ତ ହେଲା । ରାଜ୍ୟ ବାସୀ ଧର୍ମ ଅନୁଶାସନରେ କାଳ ଯାପନ କଲେ । ସର୍ବୋପରି ରାଜ୍ୟ ଓ ରାଜ୍ୟବାସୀଙ୍କ କି କି ପ୍ରକାର ଉନ୍ନତି ହେଲା ?

**କାମଂ ବବର୍ଷ ପର୍ଜନ୍ୟଃ ସର୍ବକାମ ଦୁଘା ମହୀ ।**
**ସିଷିଚୁଃ ସ୍ମ ବ୍ରଜାନ୍ ଗାବଃ ପୟସା-ଉଧସ୍ୱତୀଃ ମୁଦା ||୪||**

ଉତ୍ତର: ଅତିବୃଷ୍ଟି-ଅନାବୃଷ୍ଟି ରାଜ୍ୟରେ ବନ୍ଦ ହେଲା । କେବଳ ଶସ୍ୟ ଉତ୍ପାଦନ ଲାଗି ଯେତିକି ଦରକାର ଆବଶ୍ୟକତା ଅନୁସାରେ ସେତିକି ବର୍ଷା ହେଲା । ଏହି ଖୁସୀରେ ପୃଥିବୀ ମାତା ଭକ୍ତ ସନ୍ତାନମାନଙ୍କର ପାଳନ ପୋଷଣ ଲାଗି ଯଥେଷ୍ଟ ଶସ୍ୟ ଭରିଦେଲେ । ଗୋ ମହିଷାଦି ପଶୁମାନେ ଏତେ ଦୁଗ୍ଧ ଧାରଣ କରୁଥିଲେ ଯେ ସେମାନେ ଆନନ୍ଦରେ ଗୋ ଚାରଣ ଭୂଇଁରେ ମଧ୍ୟ ଦୁଗ୍ଧ କ୍ଷରଣ କରିପକାଉଥିଲେ । ଧନ୍ୟ ସେ ରାଜା । ଧନ୍ୟ ସେ ହସ୍ତିନାରାଜ୍ୟର ପ୍ରଜା ସକଳ । ଧନ୍ୟ ସେ କାଳ । ଧନ୍ୟ ସେ ଧର୍ମରାଜ ଯୁଧିଷ୍ଠିରଙ୍କର ଶାସନ ପ୍ରଣାଳୀ ।

ପ୍ରଶ୍ନ-୯୭: ସମଗ୍ର ପ୍ରକୃତିରାଣୀ ଅନୁକୂଳ ହେବାରୁ ଯୁଧିଷ୍ଠିରଙ୍କର ଆର୍ଯ୍ୟାବର୍ତ୍ତ ରାଜ୍ୟର ଅବସ୍ଥା କିପରି ସର୍ବଜନ ପ୍ରଶଂସନୀୟ ହେଲା ?

**ନଦ୍ୟଃ ସମୁଦ୍ରା ଗିରୟଃ ସ ବନସ୍ପତି ବୀରୁଧଃ ।**
**ଫଳନ୍ତି-ଔଷଧୟଃ ସର୍ବାଃ କାମଂ ଅନ୍ୱୃତୁ ତସ୍ୟ ବୈ ।।୫।।**

ଉତ୍ତରଃ ନଦ-ନଦୀ ସୁସ୍ୱାଦୁ ଜଳରେ ପୂରି ଉଠିଲେ । ସମଗ୍ର ରାଜ୍ୟରେ ଗିରି,ପର୍ବତ,ବନ-ଉପବନ ସବୁଜିମା ଭରିଦେଲେ । ପୃଥିବୀ ରାଣୀ ଶସ୍ୟ ଶ୍ୟାମଳା ହେଲେ । ବନସ୍ପତି, ଔଷଧ, ଲତା ଗୁଳ୍ମ ସମସ୍ତେ ପତ୍ର -ପୁଷ୍ପ-ଫଳ ଭାରାରେ ନଇଁ ପଡ଼ିଲେ ।

ପ୍ରଶ୍ନ-୯୮:ରାଜା ଯୁଧିଷ୍ଠିର (ଅଜାତଶତ୍ରୋଃ)ଙ୍କର ପ୍ରଜାମାନଙ୍କର ତ୍ରିତାପ ଜନିତ ଦୁଃଖ ଦୂର ହୋଇପାରିଲା କି ?

**ନ-ଆଧୟୋ ବ୍ୟାଧୟଃ କ୍ଲେଶା ଦୈବ-ଭୂତ-ଆତ୍ମ ହେତବଃ ।**
**ଅଜାତଶତ୍ରୋଃ ଅଭବନ୍ ଜନ୍ତୁନାଂ ରାଜ୍ଞି କର୍ହିଚିତ୍ ।।୬।।**

ଉତ୍ତରଃହସ୍ତିନାରାଜ୍ୟରେ ପ୍ରଜାମାନେ ନିଷ୍ପାପ ହୋଇଗଲେ । ମାନସିକ ପୀଡ଼ା (ଆଧୟଃ ) ଶାରୀରିକ ପୀଡ଼ା (ବ୍ୟାଧୟଃ) ତ୍ରିତାପ (କ୍ଲେଶାଃ) ମୁକ୍ତ ହୋଇ ଖାଲି ମାନବଜାତି କ'ଣ ଗୃହପାଳିତ ପଶୁପକ୍ଷୀ ଓ ବନ ଜଙ୍ଗଲସ୍ଥିତ ସକଳ ପ୍ରାଣୀ, ବୃକ୍ଷ ଲତା ଆଦି ସ୍ଥାବର ଜୀବଜନ୍ତୁ ଦୁଃଖ ଶୋକ ହୀନ ହୋଇଗଲେ କିନ୍ତୁ ସ୍ୱୟଂ ଯୁଧିଷ୍ଠିର ଜ୍ଞାତି ବଧ ଜନିତ ଶୋକରେ ପୀଡ଼ିତ ହେଲେ ।

ପ୍ରଶ୍ନ-୯୯:ଯୁଧିଷ୍ଠିରଙ୍କ ସୁଶାସନ ସହିତ ଜ୍ଞାତବଧ ପୀଡ଼ା ଦେଖି ଠାକୁରଜୀ କ'ଣ କଲେ ?

**ଉଷିତ୍ୱା ହାସ୍ତିନପୁରେ ମାସାନ୍ କତିପୟାନ୍ ହରିଃ ।**
**ସୁହୃଦାଂ ଚ ବିଶୋକାୟ ସ୍ୱସୁଃ ଚ ପ୍ରିୟ କାମ୍ୟୟା ।।୭।।**

ଉତ୍ତରଃଗୋବିନ୍ଦଙ୍କର ଅତିପ୍ରିୟ ପାଣ୍ଡବମାନଙ୍କୁ ଜ୍ଞାତିବଧ ଜନିତ ଶୋକରୁ ଉଦ୍ଧାର କରିବାକୁ, ନିଜ ଭଗିନୀ (ସ୍ୱସୁଃ) ସୁଭଦ୍ରାଙ୍କର କଲ୍ୟାଣ କରିବାକୁ ଭକ୍ତବତ୍ସଳ ଠାକୁରଜୀ କିଛିଦିନ ନୁହେଁ କେତେ ମାସ ଧରି ରହିଗଲେ ହସ୍ତିନାପୁରରେ ।

ପ୍ରଶ୍ନ-୧୦୦:ଶେଷରେ ଠାକୁରଜୀ ଦ୍ୱାରକା ଯିବାକୁ ଇଚ୍ଛା ପ୍ରକାଶ କଲେ । ରାଜା ଯୁଧିଷ୍ଠିର ଭାବପୂର୍ଣ୍ଣ ହୃଦୟରେ ବିଦାୟ ଅନୁମତି ଦେଲେ । ଶଙ୍ଖ,ମୃଦଙ୍ଗ, ଭେରୀ, ବୀଣା ଓ ଢ଼ୋଲକ ଆଦି ବାଜିଲା । ବ୍ରାହ୍ମଣମାନେ ବେଦଧ୍ୱନି କଲେ । ପ୍ରଜାଗଣ ହରିବୋଲ ଓ ଅନ୍ତଃପୁରବାସିନୀମାନେ ହୁଳହୁଳି ସହ ଜୟଧ୍ୱନି କଲେ ।

ହସ୍ତିନା ନଗରୀର ଗଗନ ପବନ କମ୍ପି ଉଠିଲା । ସମସ୍ତେ ଅଶ୍ରୁପୂର୍ଣ୍ଣ ନୟନରେ ବିଦାୟ ଦେଲେ ଗୋବିନ୍ଦଙ୍କୁ । ଭଗବାନ କିପରି ସେମାନଙ୍କର ବିଦାୟ ସମ୍ବର୍ଦ୍ଧନାର ପ୍ରତି ଉତ୍ତର ଦେଲେ ?

**ଏବଂ ବିଧା ଗଦନ୍ତୀନାଂ ସ ଗିରଃ ପୁରଯୋଷିତାମ୍ ।**
**ନିରୀକ୍ଷଣେନ-ଅଭିନନ୍ଦନ୍ ସସ୍ମିତେନ ଯଯୌ ହରିଃ ।।୩୧।।**

ଉତ୍ତର: ସମଗ୍ର ଭକ୍ତ ମଣ୍ଡଳିକୁ କୃତାର୍ଥ କଲେ ଗୋବିନ୍ଦ । କାହାକୁ ନିଜ ରୂପ ଦର୍ଶନ କରାଇ ବା କାହାକୁ ଇଷତ୍ ହାସ୍ୟ ଦ୍ୱାରା ଅଭିନନ୍ଦନ କରି ଭାବପୂର୍ଣ୍ଣ ବିଦାୟ ନେଲେ । ଗୋବିନ୍ଦଙ୍କ ନନ୍ଦିଘୋଷ ରଥ ଗଡ଼ି ଚାଲିଲା ଦ୍ୱାରକା ଅଭିମୁଖେ । ବାଟରେ କୁରୁ ଜାଙ୍ଗଳ,ପାଞ୍ଚାଳ, ଶୂରସେନ ଓ କୁରୁକ୍ଷେତ୍ର ରାଜ୍ୟ ପଡ଼ିଲା । ସ୍ଥାନେ ସ୍ଥାନେ ଭକ୍ତଗଣ ସଂକୀର୍ତ୍ତନ, ହୁଳହୁଳି ଓ ହରିବୋଲ ଧ୍ୱନି କରୁଥାନ୍ତି । ନାନା ଉପହାର ଭେଟି ଦିଅନ୍ତି । ସଂଧ୍ୟା ସମୟରେ ଠାକୁରଜୀ ରଥରୁ ଓହ୍ଲାଇ ସୂର୍ଯ୍ୟଙ୍କୁ ଅର୍ଘ୍ୟ ପ୍ରଦାନ କରନ୍ତି । ବାଟରେ ସଂଧ୍ୟା ବନ୍ଦନା କରି ରାଜ୍ୟବାସୀଙ୍କ ଭକ୍ତି-ପ୍ରେମ ସ୍ୱୀକାର କରୁଥାନ୍ତି ବିଶ୍ରାମ ନେବାବେଳେ ।

# ଅଥ ୧୧ଶ ଅଧ୍ୟାୟଃ

## (ଦ୍ୱାରକାରେ ଭଗବାନଙ୍କର ରାଜୋଚିତ ସ୍ୱାଗତ ସମ୍ବର୍ଦ୍ଧନା )

ପ୍ରଶ୍ନ-୧୦୧: ଶେଷରେ ଆନର୍ତ୍ତଦେଶ ବା ଦ୍ୱାରକା ରାଜ୍ୟରେ ପହଞ୍ଚିଲେ ଠାକୁରଜୀ । ସେତେବେଳେ ସେ ରାଜ୍ୟରେ ମହାରାଣୀ ଲକ୍ଷ୍ମୀ ବୈକୁଣ୍ଠ ତ୍ୟାଗ କରି ଡ଼େରା ପକାଇଥାନ୍ତି । ଉଦ୍ଦେଶ୍ୟ କୃଷ୍ଣ ସେବା କରି କୃଷ୍ଣ ପ୍ରେମର ସ୍ୱାଦୁ ଚାଖିବେ । ସୁତରାଂ ପ୍ରଜାମାନେ ନ ମାଗିଲେ ମଧ୍ୟ ଲକ୍ଷ୍ମୀଙ୍କ ଉପସ୍ଥିତି ହେତୁ ସକଳ ସମୃଦ୍ଧିରେ ସମ୍ପନ୍ନ ସେ ରାଇଜ । ଭଗବାନ ତାଙ୍କ ଦ୍ୱାରକା ରାଜ୍ୟରେ ପହଞ୍ଚି ସର୍ବପ୍ରଥମେ କ'ଣ କଲେ ?

ସୂତ ଉବାଚ

**ଆନର୍ତାନ୍ ସ ଉପବ୍ରଜ୍ୟ ସ୍ବୃଦ୍ଧାନ୍ ଜନପଦାନ୍ ସ୍ବକାନ୍ ।**
**ଦଧ୍ମୌ ଦରବରଂ ତେଷାଂ ବିଷାଦଂ ସମୟନ୍ ଇବ ।।୧।।**

ଉତ୍ତର: କୃଷ୍ଣ ବିରହରେ ଦ୍ୱାରକା ବାସୀ ସେତେବେଳକୁ ମାନସିକ ବେଦନା ପୀଡ଼ିତ ଥିଲେ । ଭଗବାନ ପହଞ୍ଚୁ ପହଞ୍ଚୁ ଦ୍ୱାରକାରେ ପଞ୍ଚଜନ୍ୟ ଶଙ୍ଖ ବାଦନ କଲେ । ଦ୍ୱାରକାବାସୀଙ୍କର ୫ କର୍ମେନ୍ଦ୍ରିୟ, ୫ଜ୍ଞାନେନ୍ଦ୍ରିୟ, ୫ତନ୍ମାତ୍ର, ୫ମହାଭୂତ, ମନ, ବୁଦ୍ଧି, ଚିତ୍ତ, ଅହଂକାର ସହିତ ଆତ୍ମା ଏହି ପଚିଶ ତତ୍ତ୍ୱ ଶଙ୍ଖଧ୍ୱନି ଶ୍ରବଣ କରି କୃଷ୍ଣ ତନ୍ମୟ ହୋଇଉଠିଲେ । ସେମାନଙ୍କ ମନୋବେଦନା ଉଭେଇଗଲା ।

ପ୍ରଶ୍ନ-୧୦୨: ସେ ଦିବ୍ୟ ଶଙ୍ଖର ନାଦ ଶ୍ରବଣ କରି ପ୍ରଜାମାନେ କି ପ୍ରତିକ୍ରିୟା ପ୍ରକାଶ କଲେ ?

**ତଂ ଉପଶ୍ରୁତ୍ୟ ନିନଦଂ ଜଗତ୍-ଭୟ ଭୟ-ଆବହମ୍ ।**
**ପ୍ରତିଯୟୁଃ ପ୍ରଜାଃ ସର୍ବା ଭର୍ତୃ ଦର୍ଶନ ଲାଳସାଃ ।।୩।।**

ଉତ୍ତର: କୃଷ୍ଣ ନ ଥିଲେ ମାୟା ଜୀବକୁ ଭୟ ଦେଖାନ୍ତି । ଜୀବର କୃଷ୍ଣ ଦର୍ଶନ ଲାଳସା ଲକ୍ଷଣମାନ ଦେଖିଲେ ସେଇ ମାୟା ମହାରାଣୀ ଓଢ଼ଣୀ ଟାଣି ଲୁଚି ପଡ଼ନ୍ତି । ଭକ୍ତର କି ଆନନ୍ଦମୟ ଅବସ୍ଥା । କାମୁଡ଼ା କୁକୁର ଉପଦ୍ରବରୁ ସେ ଆଶ୍ୱସ୍ତ ହୁଏ ।ସୁତରାଂ ଦ୍ୱାରକାବାସୀ ପ୍ରଜାଗଣ ଦୌଡ଼ିଲେ ଠାକୁରଜୀଙ୍କୁ ସପ୍ରେମ ସ୍ୱାଗତ କରିବା ଲାଗି । ମନରେ ଅପାର ଆନନ୍ଦ । କୃଷ୍ଣ ଦର୍ଶନରେ ନୟନ , ମନ ଧନ୍ୟ କରିବେ ସେମାନେ ।

ପ୍ରଶ୍ନ-୧୦୩: କ'ଣ ସବୁ ପ୍ରିୟ ସାମଗ୍ରୀ ଭେଟ ଦେଇ ଦ୍ୱାରକାର ପ୍ରଜାଗଣ ତ୍ରିଭୁବନ ନାଥକୁ ସ୍ୱାଗତ ସମ୍ଭାଷଣ କଲେ ?

**ତତ୍ର-ଉପନୀତ ବଳୟୋ ରବେଃ ଦୀପଂଇବ ଆଦୃତାଃ ।**
**ଆତ୍ମାରାମଂ ପୂର୍ଣ୍ଣକାମଂ ନିଜ ଲାଭେନ ନିତ୍ୟଦା ।।୪।।**

ଉତ୍ତର: ଭଗବାନ ଦେବକୀ ନନ୍ଦନ ଆତ୍ମାରାମ ଓ ପୂର୍ଣ୍ଣକାମ । ଭୌତିକ ଜିନିଷର ଅଭାବ ତାଙ୍କର କେବେ ବି ନଥାଏ । ମୁନଷ୍ୟ ପାଖରେ ଅନ୍ୟ ଜିନିଷ କ'ଣ ଅଛି ଯେ ଦେଇପାରିବ ତାଙ୍କୁ । ତଥାପି ଗଙ୍ଗାପୂଜନ ହୁଏ ଗଙ୍ଗାଜଳରେ । ସୂର୍ଯ୍ୟଙ୍କ ପୂଜା ଭକ୍ତ କରେ ଦୀପ ଦେଖାଇ । ଠିକ୍ ସେହିଭଳି ତାଙ୍କ ପ୍ରଦତ୍ତ ସଂସାରୀ

ଜିନିଷ ଧୂପ,ପୁଷ୍ପ,ଚନ୍ଦନ, ନୈବେଦ୍ୟ ଓ ମନ୍ତ୍ର ସଭକ୍ତିକ ସମର୍ପଣ କରି ସେମାନେ ସ୍ୱାଗତ କଲେ ଗୋଲକ ପତିଙ୍କୁ ।

ପ୍ରଶ୍ନ-୧୦୪: ଦ୍ୱାରକାବାସୀ ଗଦ୍‌ଗଦ ବାଣୀରେ ଗାଇଲେ କୃଷ୍ଣ ଲୀଳା ସ୍ମୃତି । ସନ୍ତାନ ପିତାଙ୍କଠାରେ କୃତଜ୍ଞତା ପ୍ରକାଶ କରିବା ଭଳି । ପ୍ରଜାମାନେ କହିଲେ -ହେ ସ୍ୱାମୀ କି ବାଣୀରେ ଆମେ ଆପଣଙ୍କ ବନ୍ଦନା କରିବୁ ?ଯେଉଁଠି ବ୍ରହ୍ମା, ଶଙ୍କରଙ୍କ ବାଣୀ କୁଣ୍ଠିତ । ବେଦ ନେତି ନେତି କହି ଚୁପ୍ ହେବାକୁ ପସନ୍ଦ କରନ୍ତି । ଆପଣଙ୍କର ବିରହ ଆମ ପାଇଁ କୋଟି ଯୁଗର ପ୍ରତୀକ୍ଷା ଭଳି ଲାଗୁଛି । ପାତାଳରେ ନାଗରାଜ ଯେପରି ଭୋଗବତୀ ପୁରକୁ ରକ୍ଷା କରନ୍ତି, ଆପଣ ସେଇଭଳି ଦ୍ୱାରକାପୁରୀର ଏହି ମଧୁ, ଭୋଜ, ଦଶାର୍ହ, ଅନ୍ଧକ ବୃଷ୍ଣି ଆଦି ଯଦୁ ବଂଶୀଙ୍କୁ ଚକ୍ଷୁ ପଲକକୁ ଘୋଡ଼େଇ ରଖିବା ଭଳି ରଖିଥାଆନ୍ତି । ଠାକୁରଜୀଙ୍କ ଆଗମନ ଲାଗି ଆଜି ପ୍ରକୃତି ମହାରାଣୀ ନୂତନ ବେଶରେ ସଜେଇ ହୋଇଛନ୍ତି । ନଦ-ନଦୀ, ଜଳାଶୟ ମଧୁର ଜଳପୂର୍ଣ୍ଣ । ପୁଷ୍କରିଣୀମାନ ପଦ୍ମ ବନରେ ମଣ୍ଡିତ । ଛଅ ଋତୁ ମଧ୍ୟରେ ହେଉଥିବା ଫଳ ପୁଷ୍ପ ଆଜି ଗୋଟିଏ ଋତୁରେ କୃଷ୍ଣ ସେବା ଲାଗି ପ୍ରତୀକ୍ଷା ରତ । ରାଜ ମାର୍ଗ, ବଜାର, ହାଟରେ ପ୍ରଚୁର ସୁଗନ୍ଧ ଜଳ ସିଞ୍ଚନ ହୋଇଛି । ଅନେକ ରଙ୍ଗ ବେରଙ୍ଗୀ ସୁନ୍ଦର ତୋରଣ ସ୍ୱାଗତ ଉତ୍ସବ ଲାଗି ନିର୍ମିତ ହୋଇଛି । ଏସବୁ ହେଲା ଦ୍ୱାରକାନଗରୀର ସାଜସଜ୍ଜା । ଦ୍ୱାରକା ବାସୀଗଣ ନିଜ ନିଜ ଗୃହ ବାହାରେ କିପରି ସାଜ୍‌ସଜ୍ଜା କରିଥିଲେ ?

**ଦ୍ୱାରି ଦ୍ୱାରି ଗୃହାଣାଂ ଚ ଦଧ୍ନ-ଅକ୍ଷତ ଫଳ-ଇକ୍ଷୁଭିଃ ।**
**ଅଳଂକୃତାଂ ପୂର୍ଣ୍ଣକୁମ୍ଭୈଃ ବଳିଭିଃ ଧୂପ ଦୀପକୈଃ ।।୧୫।।**

ଉତ୍ତର: ସମସ୍ତ ପ୍ରବେଶ ଦ୍ୱାର ପାଖରେ ପୂର୍ଣ୍ଣ କଳସ । ଦହି, ଅକ୍ଷତ, ଫୁଲ ଫଳ, ଆଖୁ ଖଣ୍ଡ ସବୁ ସଜା ହୋଇ ରହିଛି ପିତ୍ତଳ ବା ସୁନା ଥାଳିରେ । ସାଙ୍ଗକୁ ସଯତ୍ନରେ ସାଇତା ହୋଇ ରହିଛନ୍ତି ବସ୍ତ୍ର, ଅଳଂକାର ଆଭୂଷଣ ଧୂପ ଓ ଦୀପ ସାଦର ଅଭ୍ୟର୍ଥନା ଲାଗି । ସର୍ବତ୍ର ହସଖୁସୀ ଦିବ୍ୟ ଆନନ୍ଦର ଜୁଆର ।

**ପ୍ରଶ୍ନ-୧୦୫:** ଠାକୁରଜୀ ସହାସ୍ୟ ବଦନରେ ଗ୍ରହଣ କଲେ ଭକ୍ତର ଆକୁଳ, ସାଦର ନିବେଦନକୁ । ଗାଉଣା, ବାଜଣା, ନୃତ୍ୟ, ଗୀତ, ବେଦ ପାଠ, ହରିବୋଲ ହୁଳହୁଳି ନାଦରେ ଦ୍ୱାରକା ନଗରୀ କମ୍ପି ଉଠିଲା ଭକ୍ତମାନେ ମିଳିମିଶି ଦଳ ଦଳ

ହୋଇ କୃଷ୍ଣ ଲୀଳା ଗାନ କରୁଥାନ୍ତି । କୁଳନାରୀ ମାନେ ଉତ୍ତମ ଦର୍ଶନ ଲାଗି ନିଜ ନିଜ କୋଠାର ବାଲକୋନିରେ ଅପେକ୍ଷା କଲେ । କେହି କେହି ସ୍ଥାନ ନପାଇ କୋଠା ଉପରୁ ଦର୍ଶନ କଲେ । ଠାକୁରଜୀ ଭଗବାନ ତଳେ । ସେମାନେ ଭକ୍ତ ହୋଇ ଉପରେ ରହି ଦର୍ଶନ କରିବାକୁ କିପରି ଉଚିତ ମଣିଲେ ?

**ନିତ୍ୟ ନିରୀକ୍ଷ ମାଣାନାଂ ଯଦ୍ୟପି ଦ୍ୱାରକା -ଓକସାମ୍ ।**
**ନ ବିତୃପ୍ୟନ୍ତି ହି ଦୃଶଃ ଶ୍ରିୟୋ ଧାମ-ଅଙ୍ଗଂ ଅଚ୍ୟୁତମ୍ ।।୨୫।।**

ଉତ୍ତରଃ ସେମାନେ କୃଷ୍ଣ ପ୍ରେୟସୀ । କୃଷ୍ଣ ଦର୍ଶନରେ ତଙ୍କର ହୋସ୍ ରହୁନି । କ'ଣ କରନ୍ତେ ବିଚାରୀ ଦ୍ୱାରକା ନାରୀମାନେ । ଗୋପାଙ୍ଗନାମାନେ କେବଳ ତାଙ୍କୁ ୧୧ ବର୍ଷ ଦର୍ଶନ କରିପାରିଥିଲେ । ଏମାନେ ଏହା ପୂର୍ବରୁ ମଥୁରାରେ ୧୪ ବର୍ଷ ଦର୍ଶନ କରିସାରିଛନ୍ତି । ଆହୁରି ସେମାନଙ୍କର ୧୦୦ ବର୍ଷ ଦର୍ଶନର ସୁଯୋଗ ଅଛି । ଏଇ ତାଙ୍କର ମନମୋହନ ରୂପଶ୍ରୀର ଅଦ୍ଭୁତ ଆକର୍ଷଣ । ଯେତେ ଦେଖିଲେ ସେତେ ନୂଆ ଲାଗୁଥାଏ । ଆଖି ପକାଇଲେ ଆଖି ଲାଖି ରହିଯାଏ । ଆଦୌ ଲେଉଟେନା । ଅଚ୍ୟୁତ ଭଗବାନଙ୍କ ଅସରନ୍ତି କୃପାର ସତ୍‌ପାତ୍ର ସେମାନେ । ଦିବ୍ୟପ୍ରେମରେ ସଦା ଅତୃପ୍ତ ସେମାନଙ୍କର ମନ ଓ ଇନ୍ଦ୍ରିୟଗଣ । କାରଣ ଜୀବପାଇଁ କୃଷ୍ଣ ପ୍ରେମରେ ତୃପ୍ତିର ସୀମା ସରହଦ ନଥାଏ ।

ପ୍ରଶ୍ନ-୧୦୬: ପ୍ରାସାଦ ଭିତରେ ପ୍ରବେଶ କରି ଠାକୁରଜୀ ସର୍ବପ୍ରଥମେ ଦେବକୀ ଆଦି ସପ୍ତମାତୃକାଙ୍କର ଚରଣବନ୍ଦନା କଲେ । ତାଙ୍କଠାରୁ ଅନୁମତି ନେଇ ରାଣୀମହଲରେ ପ୍ରବେଶ କଲେ । ୧୬,୧୦୮ ରାଣୀ ପାଟରାଣୀଙ୍କ ଅଲଗା ଅଲଗା ମହଲ । ନିଜ ଯୋଗ ଶକ୍ତି ବଳରେ ସେ ସେତିକି ସଂଖ୍ୟକ କୃଷ୍ଣ ହୋଇ ଏକ ସମୟରେ ସମସ୍ତ ପତ୍ନୀଙ୍କୁ ଭେଟିଲେ । ସେ ତ ସ୍ୱୟଂ ଭଗବାନ । ସାମାନ୍ୟ ଜୀବ ସହ ତାଙ୍କର ପତି-ପତ୍ନୀ ସଂପର୍କ କିପରି ସମ୍ଭବ ହେବ ?

**ସ ଏଷ ନରଲୋକେଽସ୍ମିନ୍ ଅବତୀର୍ଣ୍ଣଃ ସ୍ୱମାୟୟା ।**
**ରେମେ ସ୍ତ୍ରୀ-ରତ୍ନ କୂଟସ୍ଥୋ ଭଗବାନ୍ ପ୍ରାକୃତୋ ଯଥା ।।୩୫।।**

ଉତ୍ତରଃହେ ଶୌନକଜୀ, ଭଗବାନ ସ୍ୱମହିମାରେ ଗୋଲୋକରେ ଅବଶ୍ୟ ସଦା ବିଦ୍ୟମାନ । କିନ୍ତୁ ଏବେ ନରଲୀଳା କରିବାକୁ ଅବତାର ନେଇଛନ୍ତି । ଯୋଗମାୟା ଆଢୁଆଳରେ ଅଭକ୍ତ ପାଇଁ ସିନା ଅଦୃଶ୍ୟ ପରମାତ୍ମା । ହେଲେ

ଅନ୍ୟମାନଙ୍କ ପାଇଁ ସତେ ଯେପରି ସେ ଭକ୍ତ ବାଞ୍ଛା କଳ୍ପତରୁ । ଯେ ଯେଉଁ ରୂପରେ ଚାହିଁଛି ସେ ରୂପରେ ସେ ତାଙ୍କୁ ପାଉଛି । ଯେଉଁ ପ୍ରେମ ଖୋଜୁଛି ସେ ସବୁ ତାର ହାତ ପାଆନ୍ତାରେ । ସେ ତ ଯୋଗେଶ୍ୱର,କୂଟସ୍ଥ, ଆତ୍ମାରାମ,ଆତ୍ମାକ୍ରୀଡ଼ । ମାୟାଧୀନ (ପ୍ରାକୃତ ଯଥା) ଜୀବ ପାଇଁ ସେ ସଂସାରୀ ପତି । ତେଣୁ ରମଣବିହାରୀଙ୍କ ରମଣ ମଧ୍ୟ ଅସମ୍ଭବ ହୋଇପାରେ ନା ସଚ୍ଚା ଭକ୍ତ ଲାଗି ।

ପ୍ରଶ୍ନ-୧୦୭: ଠାକୁରଜୀଙ୍କ ହୃଦୟ ମଧୁର, ବଚନ ମଧୁରା ଚରିତ ମଧୁର, ହାସ୍ୟ,ଲାସ୍ୟ ବିଳାସ ସବୁ ମଧୁରାତି ମଧୁର ଅର୍ଥାତ୍ ରାମ ବା ସୁନ୍ଦର । ଯାହାଙ୍କ ଦିବ୍ୟ ରୂପଶ୍ରୀ ଦର୍ଶନରେ ରାସଲୀଳା କାଳରେ ସ୍ୱୟଂ କାମଦେବ ଲଜ୍ଜିତ ହୋଇ ହାରିଗଲେ । ଧନୁଶର ଫିଙ୍ଗି ପଳାୟନ କଲେ । ପୁଣି ଦ୍ୱାରକାର ୧୬,୧୦୮ ରାଣୀ ମହାରାଣୀ କୃଷ୍ଣଙ୍କ ହୃଦୟରେ ଲେଶମାତ୍ର କାମଭାବ ଉଦ୍ରେକ କରିପାରିଲେନି । ଏ ସଂସାରୀ କବି, ଲେଖକ ବକ୍ତାମାନେ ତାଙ୍କ କାମଲୀଳା ଆଲୋଚନା କରିବାକୁ ସାହସ କରନ୍ତି କିପରି ?

**ତଂ ଅୟଂ ମନ୍ୟତେ ଲୋକୋ ହି-ଅସଙ୍ଗମଂ ଅପି ସଙ୍ଗିନମ୍ ।**
**ଆତ୍ମ-ଔପମ୍ୟେନ ମନୁଜଂ ବ୍ୟାପୃଣ୍ୱାନଂ ଯତୋଽବୁଧଃ ॥୩୭॥**

ଉତ୍ତର: ସଂସାରରେ ଆମେ ଯାହା ଦେଖୁ ସଂସାର ବାସ୍ତବରେ ତାହା ନୁହେଁ । ଆମେ ହିଁ ତାହା ଅଟୁ । ସେଥିପାଇଁ ବ୍ୟାସଦେବଙ୍କ ଆଦେଶରେ ରାଜା ଦୁର୍ଯ୍ୟୋଧନ ସାରା ହସ୍ତିନାପୁରରେ ଖୋଜି ଖୋଜି ଜଣେ ହେଲେ ସଦାଚାରୀ ଲୋକ ପାଇଲେନି । ଅପର ପକ୍ଷରେ ଧର୍ମନନ୍ଦନ ଯୁଧିଷ୍ଠିରଙ୍କ ଆଖିରେ ଜଣେ ହେଲେ ଅସଦାଚାରୀ ଲୋକ ପଡ଼ିଲେନି । ବୁଦ୍ଧିହୀନ (ଅବୁଧଃ) ଲୋକର ଦୃଷ୍ଟି କାମଲୀଳା ଦୋଷଯୁକ୍ତ ବୋଲି ତାକୁ ସେପରି ବୋଧହୁଏ ରମଣ ବିହାରୀଙ୍କ ରାସ ବିହାର । ସାଧୁ ବୈଷ୍ଣବଙ୍କ ଦୃଷ୍ଟିରେ ସେ ଲୀଳା ଦିବ୍ୟାତିଦିବ୍ୟ । ପୁଣି ମାନବ-ଦାନବ-ଦେବତାମାନଙ୍କ ମନ ବୁଦ୍ଧିରେ ଅଗମ୍ୟ । ତଥାପି ବେଦେଷୁ ସୁଦୁର୍ଲ୍ଲଭ୍ର ସୁଲଭଂ ଆତ୍ମଭକ୍ତୌ । ସେଥିପାଇଁ ତ କୃଷ୍ଣ ଆଜି ଭକ୍ତର ହାତ ପାଆନ୍ତାରେ !!

ପ୍ରଶ୍ନ-୧୦୮: ସନକାଦି ମୁନିବେଶ, ଦେବ ଦେବ ମହାଦେବ ଓ ଶୁକଦେବ ପରମହଂସଙ୍କ ଭଳି କୃଷ୍ଣ ଶରଣାଗତ ବୈଷ୍ଣବମାନେ ତ୍ରିଗୁଣମୟ ସଂସାରରେ ଥାଇ ମଧ୍ୟ ନିଜେ ଗୁଣାତୀତ ରହି ପାରନ୍ତି । ସ୍ୱୟଂ ଗୁଣାଧକ୍ଷ ନାରାୟଣଙ୍କ ପକ୍ଷରେ

କାମଲୀଳା ମଧ୍ୟରେ ନିଷ୍କାମ ରହିବା ଅସମ୍ଭବ କାହିଁକି ହେବ ? ସେତେବେଳେ କୃଷ୍ଣପତ୍ନୀମାନେ (ଅବଳା) ନିଷ୍କାମ କୃଷ୍ଣଙ୍କ ଲୀଳାକୁ କି ଦୃଷ୍ଟିରେ ବୁଝୁଥିଲେ ?

**ତଂ ମେନିରେଽବଳା ମୂଢ଼ାଃ ସ୍ତ୍ରୈଣଂ ଚ-ଅନୁବ୍ରତଂ ରହଃ ।**
**ଅପ୍ରମାଣ ବିଦୋ ଭର୍ତ୍ତୁଃ ଈଶ୍ୱରଂ ମତୟୋ ଯଥା ।।୩୯।।**

ଉତ୍ତରଃ ରୁକ୍ମିଣୀ ସତ୍ୟଭାମା ଆଦି ସମସ୍ତେ ଘୋର ମୂର୍ଖ (ମୂଢ଼ା) ଥିଲେ । କେବଳ ମୂର୍ଖମାନେ ନିଜ ଜ୍ଞାନବଳରେ ଈଶ୍ୱରଙ୍କୁ ନିଜ ଅଧୀନସ୍ଥ ମାନନ୍ତି । ଦେବକୀ,ଯଶୋଦା କେହି ହେଲେ ଜଣେ ରାସ ଲୀଳା, ମହାରାସ ଲୀଳା, ନିଭୃତ ନିକୁଞ୍ଜ ଲୀଳା ରହସ୍ୟ ଭେଦ କରିପାରିନଥିଲେ । ସେମାନେ ସକାମ ଭକ୍ତି ହେତୁ ନିଜକୁ ଭଗବାନଙ୍କର ମାତା, ପତ୍ନୀ ଇତ୍ୟାଦି ଭାବନା କରୁଥିଲେ । କୃଷ୍ଣଙ୍କୁ ଲମ୍ପଟ ଭାବୁଥିବା ଅବଳାମାନେ କ'ଣ ଆଉ ମନେ କରନ୍ତେ (ମେନିରେ) । ସେଇଥିପାଇଁ ତ ଗୋପବଧୂମାନଙ୍କୁ ଦ୍ୱାରକା ନାରୀଗଣ ସମସ୍ତେ ଈର୍ଷା କରୁଥିଲେ । ଥରେ ସେମାନେ ସୁଯୋଗ ପାଇ ରାଧାରାଣୀଙ୍କୁ ଗରମ ଦୁଧ ପିଆଇଲେ । କ୍ଷତି କଲେ ନିଜ ନିଜକାନ୍ତଙ୍କର । ଦେଖିଲେ ନିଜ ପରମ ପ୍ରିୟ ପତିଦେବଙ୍କ ଚରଣ କମଳରେ ଡାଡିଲା ଫୋଟକା । ରାଧାଙ୍କ ବକ୍ଷରେ ଗୋବିନ୍ଦ! ଧନ୍ୟ ତୁମ ଅଚିନ୍ତ୍ୟ, ଅଗମ୍ୟ ଲୀଳା! ଧନ୍ୟ ତୁମ ଠକାମି ! ତୁମର ଏକାନ୍ତ ଭକ୍ତରୂପୀ ପୁତ୍ର, ମାତା, ପିତା, ପତ୍ନୀ ସମସ୍ତଙ୍କୁ ଠକିଲ । ତୁମେଏକାଧାରରେ ପ୍ରେମିକ ଶ୍ରେଷ୍ଠ ଓ ଠକ ଶିରୋମଣି ।

**ନକ୍ଷତ୍ର ନବନୀତଃ** ଭଗବାନ ହସ୍ତିନାପୁରରୁ ପ୍ରସ୍ଥାନ କରିବା ପରେ ଭାଗବତ ଶ୍ରୋତାଙ୍କ ପ୍ରାକଟ୍ୟ ହେବ । କାଁରଣ ହେଲା ଭଗବାନଙ୍କ କୃପା ସର୍ବଦା ପରୋକ୍ଷରେ ଲୋକ ଲୋଚନର ଅନ୍ତରାଳରେ ହୋଇଥାଏ । ଜୀବ ଯେପରି ନ ଜାଣୁ ଯେ ସେ ଭଗବଦ୍ କୃପାରୁ ଜନ୍ମହୁଏ ଜୀବନ ପାଏ,ଜୀବନ ଅବସାନରେ ପୁଣି ତାଙ୍କ କୃପାକୁ ଆଶ୍ରୟ କରେ । ପରୀକ୍ଷିତ ଯେ ଭଗବାନଙ୍କ କୃପାପାତ୍ର ବୋଲି ମାତୃଗର୍ଭରକ୍ଷା ଦ୍ୱାରା ସ୍ୱୀକୃତ ଏକଥା ତାଙ୍କ ନାମକରଣରୁ ଜାଣି ହୁଏ । ଶ୍ରୀମଭାଗବତରେ ନିର୍ଗୁଣୀ ଶ୍ରୋତା ଓ ବକ୍ତାଙ୍କର ଅଧିକାରୀତ୍ୱ ଓ ଲକ୍ଷଣ ଆଦିର ବିସ୍ତୃତ ବର୍ଣ୍ଣନ ହେବ ପରବର୍ତ୍ତୀ ୪ର୍ଥ ନକ୍ଷତ୍ର ରୋହିଣୀ ପ୍ରସଙ୍ଗରେ ।

**ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ବୟାସିକ୍ୟାଂ ଅଷ୍ଟାଦଶ ସାହସ୍ର୍ୟାଂ ପାରମହଂସ୍ୟାଂ ସଂହିତାୟାଂ ପ୍ରଥମସ୍କନ୍ଧେ ଏକାଦଶୋଽଧ୍ୟାୟଃ ।**

**।। ହରିଃ ଓଁ ତତ୍‌ସତ୍ ।।**

**ଶ୍ରୀକୃଷ୍ଣାର୍ପଣଂ ଅସ୍ତୁ ।**

# ଚତୁର୍ଥ ନକ୍ଷତ୍ର-ରୋହିଣୀ

# ଅଥ ୧୨ଶ ଅଧ୍ୟାୟଃ

## (ନିର୍ଗୁଣୀ ଭାଗବତ ଶ୍ରୋତା ସମ୍ରାଟ୍ ପରୀକ୍ଷିତଙ୍କ ଜନ୍ମ)

### ଶୌନକ ଉବାଚ

ପ୍ରଶ୍ନ-୧: ପୃଥିବୀକୁ ଅପାଣ୍ଡବା କରିବାକୁ ଦୁର୍ଯ୍ୟୋଧନଙ୍କ ପ୍ରରୋଚନାରେ ଅଶ୍ୱତ୍ଥାମା ବ୍ରହ୍ମଶର ପ୍ରୟୋଗ କଲେ । ତାହା ଅତ୍ୟନ୍ତ ଶକ୍ତିଶାଳୀ ଅସ୍ତ୍ର ଥିଲା । ତଥାପି ଉତ୍ତରାବାଳୀଙ୍କ ଗର୍ଭନଷ୍ଟ ହେଲାନି କିପରି ?

**ଅଶ୍ୱତ୍ଥାମା-ଉପସୃଷ୍ଟେନ ବ୍ରହ୍ମଶୀର୍ଷ୍ଣା-ଉରତେଜସା ।**
**ଉତ୍ତରାୟା ହତୋ ଗର୍ଭଂ ଈଶେନ-ଆଜୀବିତଃ ପୁନଃ ||୧||**

ଉତ୍ତର: ଗର୍ଭ ମଧ୍ୟରେ ପରୀକ୍ଷିତ ଥିଲେ । ଠାକୁରଜୀ ସ୍ୱୟଂ ଈଶ୍ୱରଙ୍କର ଈଶ୍ୱର ପରମେଶ୍ୱର ସେ କର୍ତ୍ତୁଂ ସମର୍ଥ । ଅକର୍ତ୍ତୁଂ ସମର୍ଥ । ଅନ୍ୟଥା (ଓଲଟା) କର୍ତ୍ତୁଂ ସମର୍ଥ । ସେ ପୁନର୍ଜୀବନ ପ୍ରଦାନ କଲେ ଭକ୍ତ କୁଳର ମଉଡ଼ମଣି ପରୀକ୍ଷିତଙ୍କୁ । ସୁତରାଂ ଗର୍ଭ ନଷ୍ଟ ହେବ କିପରି ?

ପ୍ରଶ୍ନ-୨:ପରୀକ୍ଷିତଙ୍କ ଜନ୍ମବେଳେ ଠାକୁରଜୀ ସହାୟକ ହୋଇଥିଲେ । ପୁଣି ପରୀକ୍ଷିତଙ୍କ ମହାପ୍ରୟାଣ କିପରି ହେଲା ?

**ତସ୍ୟ ଜନ୍ମ ମହାବୁଦ୍ଧେଃ କର୍ମାଣି ଚ ମହାତ୍ମନଃ ।**
**ନିଧନଂ ଚ ଯଥା- ଏବ-ଆସୀଦ୍ ସଃ ପ୍ରେତ୍ୟ ଗତବାନ୍ ଯଥା ||୨||**

ଉତ୍ତର: ପରୀକ୍ଷିତ ମହାରାଜ କେବଳ ମହାନ୍ ବୁଦ୍ଧିମାନ (ମହାବୁଦ୍ଧେଃ) ନଥିଲେ । ସେ ମହାତ୍ମା ମଧ୍ୟ ଥିଲେ । କେବଳ ଧର୍ମ ଶାସ୍ତ୍ର ଜାଣିଥିବା ଲୋକ ଧର୍ମଜ୍ଞ ନଥିଲେ ବରଂ ଧର୍ମକୁ ପାଳନ କରୁଥିବା ମହାତ୍ମା ବା ଧର୍ମାତ୍ମା ଥିଲେ । ତାଙ୍କର ଏ ସଂସାରକୁ ଆସିବା ଯେପରି ଆଲୌକିକ, ଏ ମାୟାମୟ ସଂସାରରେ ଜୀବନ ଯାପନ ପ୍ରଣାଳୀ ଓ ସଂସାର ତ୍ୟାଗ ଉଭୟ ସେପରି ଚମକପ୍ରଦ ଓ ଶିକ୍ଷଣୀୟ ।

ପ୍ରଶ୍ନ-୩: ଶୌନକଜୀ କହିଲେ, ''ଆମ୍ଭେମାନେ ପରୀକ୍ଷିତ ମହାରାଜଙ୍କ ଭଳି ଜଣେ ମହାନୁଭବଙ୍କ ପବିତ୍ର ଚରିତ୍ର ଶ୍ରବଣ କରିବାକୁ ଶ୍ରଦ୍ଧାଳୁ । ଆପଣ ଯଦି ଆମ୍ଭମାନଙ୍କୁ ଉପଯୁକ୍ତ ପାତ୍ର ମନେ କରୁ ଥାଆନ୍ତି ସେ କଥା ଟିକିଏ ବର୍ଣ୍ଣନା କରନ୍ତୁ ।'' ଜୀବନର ଶେଷ ପର୍ଯ୍ୟାୟରେ ଶୁକଦେବ ପରମହଂସଙ୍କ ଠାରୁ ସେ ଭାଗବତ ଜ୍ଞାନ ଲାଭ କରିବାରୁ ତାଙ୍କର କି ଅଦ୍ଭୁତ ଲାଭ ହେଲା ?

**ତଦ୍ ଇଦଂ ଶ୍ରୋତୁଂ-ଇଚ୍ଛାମୋ ଗଦିତୁଂ ଯଦି ମନ୍ୟସେ ।**
**ବ୍ରୂହି ନଃ ଶ୍ରଦ୍ଦଧାନାନାଂ ଯସ୍ୟ ଜ୍ଞାନଂ ଅଦାଦ୍ ଶୁକଃ ॥୩॥**

ଉତ୍ତର: ପରୀକ୍ଷିତଙ୍କର ଅପୂର୍ଣ୍ଣ ଭଗବତ ଜ୍ଞାନ ପୂର୍ଣ୍ଣ ହେଲା । ଅପୂର୍ଣ୍ଣ ଭଗବତ ଭକ୍ତି ଓ ବୈରାଗ୍ୟ ଉଭୟେ ପୂର୍ଣ୍ଣତା ପ୍ରାପ୍ତ ହେଲେ । ଜନ୍ମ -ଜୀବନ-ମରଣ ସକଳ ଅମୃତ ମୟ ହେଲା ।

**ସୂତ ଉବାଚ**

ପ୍ରଶ୍ନ-୪: ପରୀକ୍ଷିତଙ୍କ ପିତାମହ ଯୁଧିଷ୍ଠିର ଜଣେ ବିଖ୍ୟାତ କୃଷ୍ଣ ଭକ୍ତ ଥିଲେ । ସେ ପ୍ରଜାମାନଙ୍କୁ ସନ୍ତାନ ଭଳି ପାଳନ କରୁଥିଲେ । ତାଙ୍କର ରାଜ୍ୟର ବିସ୍ତାର କେତେ ଥିଲା ?

**ସମ୍ପଦଃ କ୍ରତବୋ ଲୋକା ମହିଷୀ ଭ୍ରାତରୋ ମହୀ ।**
**ଜମ୍ବୁଦ୍ୱୀପ -ଆଧିପତ୍ୟଂ ଚ ଯଶଃ ଚ ତ୍ରିଦିବଂ ଗତମ୍ ॥୪॥**

ଉତ୍ତର: ସମଗ୍ର ଭାରତ ଭୂଖଣ୍ଡ ବା ଆର୍ଯ୍ୟାବର୍ତ୍ତ ତାଙ୍କର ସାମ୍ରାଜ୍ୟର ସୀମା । ସେ ପ୍ରଚୁର ଧନ ସଂପତ୍ତି ବ୍ୟୟ କରି ଅନେକ ଯଜ୍ଞ କରିଥିଲେ । ରାଜ୍ୟର ସକଳ ଲୋକ, ସକଳ ରାଣୀ, ସକଳ ଭାଇ ଓ ସମଗ୍ର ରାଷ୍ଟ୍ର (ମହୀ) ପ୍ରସନ୍ନ ଥିଲେ । ଏପରିକି ତାଙ୍କର ଯଶ ଭୂଃ -ଭୁବଃ-ସ୍ୱଃ ତ୍ରିଲୋକ ବ୍ୟାପିଯାଇଥିଲା ।

ପ୍ରଶ୍ନ-୫: ଯୁଧିଷ୍ଠିରଙ୍କ ପାଖରେ ଏତେ ଭୋଗ ସାମଗ୍ରୀ ଥିଲା ଯେ ସ୍ୱର୍ଗର ଦେବତାମାନେ ସେ ସବୁ ପାଇଁ ଲାଳାୟିତ ହେଉଥିଲେ । ରାଜା କିନ୍ତୁ ପୁରା ଭୋଗ ବିଳାସ ବିରୋଧୀ ନିସ୍ପୃହ ଜୀବନ କାଟୁଥିଲେ । କ୍ଷୁଧାର୍ତ୍ତ ଲୋକଙ୍କୁ ଭୋଜନ ଦ୍ରବ୍ୟ ହିଁ କେବଳ ପ୍ରିୟ ଲାଗେ । ଯୁଧିଷ୍ଠିର କୃଷ୍ଣ ପ୍ରେମ ପାଇଁ ସଦା ଆତୁର ରହୁଥିଲେ । ସେଇଭଳି ଜଣେ ନିସ୍ପୃହ ରାଜଚକ୍ରବର୍ତ୍ତୀଙ୍କ ପୌତ୍ର ପରୀକ୍ଷିତ ଗର୍ଭରେ ଥାଇ ବ୍ରହ୍ମାସ୍ତ୍ର ତେଜର ଆଳୁଆଳରେ କାହାକୁ ଦର୍ଶନ କଲେ ?

**ମାତୁଃ ଗର୍ଭଗତେ ବୀରଃ ସଃ ତଦା ଭୃଗୁନନ୍ଦନ ।**
**ଦଦର୍ଶ ପୁରୁଷଂ କଶ୍ଚିଦ୍ ଦହ୍ୟମାନୋଽସ୍ତ୍ରେ ତେଜସା ।।୭।।**

ଉତ୍ତର: ପରମ ପୁରୁଷ ଶ୍ରୀକୃଷ୍ଣଙ୍କୁ । ସେତେବେଳେ ସେ ବଂଶୀଧାରୀ ନଥିଲେ । ଥିଲେ ନାରାୟଣ ସ୍ୱରୂପରେ ଚକ୍ରଧାରୀ । ଅଙ୍ଗୁଷ୍ଠ ମାତ୍ର ପୁରୁଷ । ଚାରି ଦିବ୍ୟ ଅସ୍ତ୍ର ଚାରି ଭୁଜରେ ଶୋଭିତ । ହାତରେ ଗଦା ବୁଲାଇ ସେ ବ୍ରହ୍ମାସ୍ତ୍ରର ତେଜକୁ ଶାନ୍ତ କରୁଥିଲେ । ସୂର୍ଯ୍ୟ କିରଣରେ କ'ଣ କୁହୁଡ଼ି ରହିପାରେ ?

ପ୍ରଶ୍ନ-୬: ଭଗବାନ ତ ସ୍ୱୟଂଧର୍ମରକ୍ଷକ (ଧର୍ମ ଗୁପ୍) । ସେ ହିଁ ସକଳ ଜୀବଅନ୍ତରରେ ଆତ୍ମା ରୂପେ ବିଦ୍ୟମାନ ପରମାତ୍ମା (ଅମେୟ-ଆତ୍ମା) । ୧୦ ମାସର ଗର୍ଭସ୍ଥ ଶିଶୁକୁ ରକ୍ଷା କରିସାରି ସେ କ'ଣ କଲେ ?

**ବିଧୂୟ ତଦ୍ ଅମେୟ-ଆତ୍ମା ଭଗବାନ୍ ଧର୍ମଗୁପ୍ ବିଭୁଃ ।**
**ମିଷତୋ ଦଶ ମାସସ୍ୟ ତତ୍ର-ଏବ-ଅନ୍ତର୍ଦଧେ ହରିଃ ।।୧୧।।**

ଉତ୍ତର: ସେହି ଗର୍ଭ ମଧ୍ୟରେ ଅଦୃଶ୍ୟ ହୋଇଗଲେ ନିଜ ଅଚିନ୍ତ୍ୟ ଯୋଗ ଶକ୍ତି ବଳରେ ।

ପ୍ରଶ୍ନ-୭: ଅଶୁଭ ଗ୍ରହଙ୍କ ପ୍ରଭାବ ଶେଷ ହେଲା ଶୁଭ ଗ୍ରହ ନକ୍ଷତ୍ର ବେଳରେ ପରୀକ୍ଷିତ ଜନ୍ମ ନେଲେ । ସେ ଜନ୍ମରୁ ସର୍ବଗୁଣ ସମ୍ପନ୍ନ । ଜ୍ଞାନ,ଭକ୍ତି ଓ ବୈରାଗ୍ୟରେ ସଦା ଭରପୂର । ତାଙ୍କୁ ଦେଖି କେହି କେହି ମନେ କଲେ ବୋଧହୁଏ ପୁଣି ଥରେ ପାଣ୍ଡବକୂଳ ମୁକୁଟମଣି ମହାରାଜ ପାଣ୍ଡୁ ଜନ୍ମ ହୋଇଛନ୍ତି । ପରୀକ୍ଷିତଙ୍କ ଜନ୍ମରେ ଯୁଧିଷ୍ଠିର (ରାଜା) କ'ଣ କ'ଣ ସବୁ କଲେ ?

**ତସ୍ୟ ପ୍ରୀତମନା ରାଜା ବିପ୍ରୈଃ ଧୌମ୍ୟ କୃପ-ଆଦିଭିଃ ।**
**ଜାତକଂ କାରୟାମାସ ବାଚୟିତ୍ୱା ଚ ମଙ୍ଗଳମ୍ ।।୧୩।।**

ଉତ୍ତର: ମହା ଆନନ୍ଦରେ କୁଳଗୁରୁ ଧୌମ୍ୟ, ବେଦଗୁରୁ କୃପାଚାର୍ଯ୍ୟ ଆଦି ବୈଦିକ ବ୍ରାହ୍ମଣଙ୍କୁ ଡ଼କାଇ ସ୍ୱସ୍ତିବାଚନ କରାଇଲେ । ପରୀକ୍ଷିତଙ୍କ ଜନ୍ମ - ଜାତକ ତିଆରି କରାଇଲେ । ଭବିଷ୍ୟବାଣୀ ଶ୍ରବଣ କଲେ ବିଦ୍ୱାନ୍ ଜ୍ୟୋତିଷମାନଙ୍କ ଗଣନାରୁ । ତାଙ୍କ ନାମ କରଣ ମଧ୍ୟ କଲେ । କହିଲେ ଯେ-ଯେହେତୁ ଏ ଜଣେ ଶ୍ରେଷ୍ଠ କୃଷ୍ଣଭକ୍ତ । କାରଣ ମାଙ୍କ ଗର୍ଭରେ ଏହାଙ୍କର ପରୀକ୍ଷା ସରିଛି । ଅତଏବ ଏହାଙ୍କ ନାମ ପରୀକ୍ଷିତ ରଖାଯାଉ ।

**ବ୍ରାହ୍ମଣାଃ ଉଚୁଃ**

ପ୍ରଶ୍ନ-୮: ପ୍ରଜାମାନଙ୍କୁ ଭୂରି ଭୋଜନ, ଭୂଦାନ, ଗୋଦନ,ବସ୍ତ୍ରଦାନ, ସ୍ୱର୍ଣ୍ଣଦାନ, ଅଶ୍ୱ ହସ୍ତୀ ଆଦି ଦାନ ଦେଲେ । ସେମାନେ ଦାନ, ଭୋଜନ ଆଦି ବ୍ୟବହାରରେ ସନ୍ତୁଷ୍ଟ ହୋଇ ଶୁଭ ଆଶୀର୍ବାଦ ପ୍ରଦାନ କଲେ । କହିଲେ, "ହେ କୁରୁବଂଶ ଶିରୋମଣି ଯୁଧିଷ୍ଠିର, ବ୍ରହ୍ମାସ୍ତ୍ର ପ୍ରୟୋଗ ଫଳରେ ଆପଣଙ୍କର ବଂଶ ଲୋପ ହେବାକୁ ଯାଉଥିଲା । ଭଗବାନ ଆପଣଙ୍କର ଏ ପୌତ୍ରଙ୍କୁ କୃପାକରି ରକ୍ଷା କଲେ । ଏହାଙ୍କ ନାମ ବିଷ୍ଣୁରାତ ହେଉ । ଏ ଜଣେ ମହାନ ବିଷ୍ଣୁଭକ୍ତ ହେବେ । ଏହାଙ୍କ ଯଶ ସାରା ସଂସାର ବ୍ୟାପିଯିବ ।ପ୍ରଜାପାଳନରେ ଏ ସୂର୍ଯ୍ୟ ବଂଶୀ ରାଜା ଇକ୍ଷ୍ୱାକୁଙ୍କ ଭଳି ବ୍ରାହ୍ମଣ ପାଳକ ଓ ସତ୍ୟରକ୍ଷାରେ ଶ୍ରୀରାମଙ୍କ ଭଳି ହେବେ ।" ଶରଣଦାତା ଭାବରେ ଓ ଯଜ୍ଞକାରୀମାନଙ୍କ ମଧ୍ୟରେ କାହା ସଦୃଶ ହେବେ ?

**ଏଷ ଦାତା ଶରଣ୍ୟଃ ଚ ଯଥା ହି-ଔଷିନରଃ ଶିବିଃ ।**
**ଯଶୋ ବିତନିତା ସ୍ୱାନାଂ ଦୌଷ୍ୟନ୍ତିଃ ଇବ ଯଜ୍ୱନାମ୍ ॥୨୦॥**

ଉତ୍ତର: ଶରଣଦାତା ଭାବରେ ରାଜା ଶିବିଙ୍କ ଭଳି ଓ ଯଯମାନଙ୍କ ମଧ୍ୟରେ ଦୁଷ୍ୟନ୍ତ ପୁତ୍ର ରାଜା ଭରତଙ୍କ ସଦୃଶ ହେବେ ପରୀକ୍ଷିତ ।

ପ୍ରଶ୍ନ-୯: ଧନୁର୍ଦ୍ଧାରୀ ମଧ୍ୟରେ କାର୍ତ୍ତବୀର୍ଯ୍ୟାର୍ଜୁନ ଓ ପାର୍ଥଙ୍କ ସଦୃଶ ହେବେ । ଅଗ୍ନିଙ୍କ ଭଳି ଦୁର୍ଦ୍ଧର୍ଷ,ସମୁଦ୍ର ଭଳି ଦୁସ୍ତର, ସିଂହ ଭଳି ବଳବାନ୍ ହିମାଳୟ ସଦୃଶ ଆଶ୍ରୟ ନେବା ଯୋଗ୍ୟ ହେବେ । ତିତିକ୍ଷା ଓ ସହିଷ୍ଣୁତାରେ କାହାଭଳି ହେବେ ?

**ମୃଗେନ୍ଦ୍ର ଇବ ବିକ୍ରାନ୍ତୋ ନିଷେବ୍ୟୋ ହିମବାନ୍ ଇବ ।**
**ତିତିକ୍ଷୁଃ ବସୁଧା-ଇବ-ଅସୌ ସହିଷ୍ଣୁଃ ପିତରୌ-ଇବ ॥୨୨॥**

ଉତ୍ତର: ତିତିକ୍ଷାରେ ପୃଥିବୀ, ସହିଷ୍ଣୁତାରେ ପିତା-ମାତା,ସମତାରେ ସୃଷ୍ଟିକର୍ତ୍ତା ବ୍ରହ୍ମାଜୀ, କୃପା କରିବାରେ ଆଶୁତୋଷ ଶଙ୍କରଜୀ ଓ ଆଶ୍ରୟ ଦେବାରେ ସର୍ବାଶ୍ରୟ ନାରାୟଣଙ୍କ ଭଳି ହେବେ ।

ପ୍ରଶ୍ନ-୧୦: ଏ ମହାତ୍ମା କୃଷ୍ଣଙ୍କର ଅନନ୍ୟ ଭକ୍ତ ହେବେ । ଉଦାରତା ଓ ଧାର୍ମିକତାରେ ପରୀକ୍ଷିତ କାହାର ସଦୃଶ ହେବେ ?

**ସର୍ବ ସଦ୍‌ଗୁଣ ମାହାତ୍ମ୍ୟେ ଏଷ କୃଷ୍ଣଂ ଅନୁବ୍ରତଃ ।**
**ରନ୍ତିଦେବ ଇବ-ଉଦାରୋ ଯଯାତିଃ ଇବ ଧାର୍ମିକଃ ॥୨୪॥**

ଉତ୍ତର: ଏ ମହାତ୍ମା ସର୍ବ ସଦ୍‌ଗୁଣ ମଣ୍ଡିତ ହେବେ । ଉଦାରତାରେ ରାଜା ରନ୍ତିଦେବ ଓ ଧାର୍ମିକତାରେ ରାଜା ଯଯାତି ଭଳି ହେବେ । ଧୈର୍ଯ୍ୟରେ ରାଜା ବଳୀଙ୍କ ଭଳି,ହରି ଭକ୍ତିରେ ପ୍ରହ୍ଲାଦଙ୍କ ଭଳି ହେବେ । ରାଜତ୍ୱ କାଳରେ ଅନେକ ଅଶ୍ୱମେଧ ଯଜ୍ଞ ଅନୁଷ୍ଠାନ କରିବେ । ବୃଦ୍ଧ-ବୃଦ୍ଧାଙ୍କର ସେବକ ହେବେ ।

ପ୍ରଶ୍ନ-୧୧: ପରୀକ୍ଷିତ ମହାରାଜାଙ୍କର ପୁତ୍ର ମଧ୍ୟ ଜଣେ ରାଜର୍ଷି ହେବେ । ରାଜାହେଲେ ମଧ୍ୟ ପରୀକ୍ଷିତ ସ୍ୱଧର୍ମ ପାଳନ ବିମୁଖ ଲୋକଙ୍କୁ ଅଯଥା ଦୟା ନ ଦେଖାଇ ଉଚିତ ଦଣ୍ଡବିଧାନ କରିବେ । ଧରଣୀ ମାତା ଓ ଧର୍ମଙ୍କ ରକ୍ଷା କାରଣରୁ କଳିଯୁଗର ଉଦ୍ଦଣ୍ଡତାକୁ ମଧ୍ୟ ଦମନ କରିବେ । ରାଜା ପରୀକ୍ଷିତଙ୍କର ଶେଷଗତି କ'ଣ ହେବ ?

**ତକ୍ଷକାଦ୍ ଆତ୍ମନୋ ମୃତ୍ୟୁଂ ଦ୍ୱିଜପୁତ୍ର-ଉପସର୍ଜିତାଦ୍ ।**
**ପ୍ରପଦ୍‌ସ୍ୟତ ଉପଶ୍ରୁତ୍ୟ ମୁକ୍ତସଙ୍ଗଃ ପଦଂ ହରେଃ ॥୨୭॥**

ଉତ୍ତର: କଳିଯୁଗ ପ୍ରତିହିଂସା ପରାୟଣ ହୋଇ ରାଜାଙ୍କର ବ୍ରହ୍ମଶାପର କାରଣ ହେବ ।ତକ୍ଷକ ଦଂଶନରେ ମୃତ୍ୟୁ ସୁନିଶ୍ଚିତ ଜାଣି ପରୀକ୍ଷିତ ରାଜ ସିଂହାସନ ତ୍ୟାଗ କରିବେ । ପ୍ରାୟୋପବେଶନରେ ଗଙ୍ଗାକୂଳରେ ବସି ସଦ୍‌ସଙ୍ଗ କରିବେ । ମୁନି, ଋଷିମେଳରେ ସନ୍ଥ ମୁଖରୁ ହରିକଥା ଶ୍ରବଣ କରି ଶ୍ରୀହରିଙ୍କ ଚରଣ କମଳ ଆଶ୍ରିତ ହେବେ ।

ପ୍ରଶ୍ନ-୧୨: ଗଙ୍ଗାକୂଳରେ ଏକ ମହାନ୍ ସଦ୍‌ସଙ୍ଗ ଅଧିବେଶନ ଆୟୋଜନ କରିବେ ପରୀକ୍ଷିତ । ବ୍ୟାସ ନନ୍ଦନ ଶୁକଦେବ ବିନା ନିମନ୍ତ୍ରଣରେ ଆସି ସେଠାରେ ପହଞ୍ଚିବେ । ରାଜା ତାଙ୍କୁ ତାଙ୍କର ଅବଶିଷ୍ଟ ଜୀବନ ଅବଧି ସାତ ଦିନ ମଧ୍ୟରେ କିପରି ଜୀବର ପରମ ଶ୍ରେୟସାଧିତ ହେବ ବୋଲି ପ୍ରଶ୍ନ କରିବେ । ତାଙ୍କୁ ଅଭୟ ଆଶ୍ୱାସନା ଦେବେ ଶୁକଦେବ ପରମହଂସ । ହରିକଥା ଶ୍ରବଣ କରି ଏହି ପରୀକ୍ଷିତ ମୃତ୍ୟୁ ପୂର୍ବରୁ ଅମୃତତ୍ତ୍ୱ ଆସ୍ୱାଦନ କରିବେ । କଳି ଯୁଗ ମଣିଷ ପାଇଁ ତାହା ହେବ ଏକ ଆଦର୍ଶ ମରଣ । ପରୀକ୍ଷିତଙ୍କ ଏପରି ନାମକରଣର କାରଣ କ'ଣ ?

**ସ ଏଷ ଲୋକ ବିଖ୍ୟାତଃ ପରୀକ୍ଷିଦ୍ ଇତି ଯଦ୍ ପ୍ରଭୁଃ ।**
**ପୂର୍ବଂ ଦୃଷ୍ଟଂ-ଅନୁଧ୍ୟାୟନ୍ ପରୀକ୍ଷେତ ନରେଷୁ ଇହ ॥୩୦॥**

ଉତ୍ତର: ଏକେ ତ ସେ ଭଗବାନଙ୍କର ଜଣେ ପରମ ଭକ୍ତ ବୋଲି ମାତାଙ୍କ ଗର୍ଭରେ ପରୀକ୍ଷିତ ହୋଇ ସାରିଛନ୍ତି । ଦ୍ୱିତୀୟରେ ଜନ୍ମପରେ ସାରା ଜୀବନ ଯାକ ଗର୍ଭରେ ଦର୍ଶନ କରିଥିବା ଭଗବାନଙ୍କୁ ପ୍ରତ୍ୟେକ ପ୍ରାଣୀମଧ୍ୟରେ ଅଛନ୍ତି କି ନାହିଁ

ପରୀକ୍ଷା କରିଚାଲିବେ । ପୌତ୍ର ପରୀକ୍ଷିତଙ୍କ ସମ୍ବନ୍ଧରେ ଏ ଭବିଷ୍ୟବାଣୀ ରାଜା ଯୁଧିଷ୍ଠିର ଶ୍ରବଣ କରି ଆନନ୍ଦିତ ହେଲେ । ସେ ଧର୍ମ ମାର୍ଗରେ ପ୍ରଜାପାଳନ କଲେ । ଜ୍ଞାତି ବଧଜନିତ ତ୍ରିତାପରୁ ମୁକ୍ତି ଲାଗି ୩ ଅଶ୍ୱମେଧ ଯଜ୍ଞ ଅନୁଷ୍ଠାନ କଲେ । ସବୁକାମ ଶେଷ ହେବାରେ ଭଗବାନ ଶ୍ରୀକୃଷ୍ଣ ଦ୍ୱାରକା ଫେରି ଆସିଥିଲେ।

## ଅଥ ୧୩ଶ ଅଧ୍ୟାୟଃ

### (ବିଦୁରଙ୍କ ଉପଦେଶରେ ଗାନ୍ଧାରୀ-ଧୃତରାଷ୍ଟ୍ରଙ୍କ ବନଗମନ)

### ସୂତ ଉବାଚ

ପ୍ରଶ୍ନ-୧୩: ମହାଭାରତ ଯୁଦ୍ଧ ପୂର୍ବରୁ ମହାତ୍ମା ବିଦୁରଜୀ ତୀର୍ଥଯାତ୍ରାରେ ଗଲେ । ସେହି ୩୬ ବର୍ଷ ତୀର୍ଥଭ୍ରମଣର ଶେଷ ସମୟରେ ମୈତ୍ରେୟ ଋଷିଙ୍କ ଠାରୁ ଭାଗବତ ଜ୍ଞାନ ପ୍ରାପ୍ତ କଲେ । ଏଥିରେ ବିଦୁରଜୀଙ୍କ କି ଲାଭ ହେଲା ?

**ବିଦୁରଃ ତୀର୍ଥଯାତ୍ରାୟାଂ ମୈତ୍ରେୟାତ୍ ଆତ୍ମନୋ ଗତିମ୍ ।**
**ଜ୍ଞାତ୍ୱା-ଅଗାତ୍-ହସ୍ତିନାପୁରଂ ତୟା-ଅବାପ୍ତ ବିବିତ୍ସିତଃ ॥୧॥**

ଉତ୍ତର: ବିଦୁରଜୀଙ୍କ ଜୀବନରେ ଆଗରୁ କରିବା (କୃତ କୃତ୍ୟତା)ରେ ପୂର୍ଣ୍ଣଛେଦ ପଡ଼ିଥିଲା । ଏବେ ସେ ଜ୍ଞାତ-ଜ୍ଞାତବ୍ୟ ଓ ପ୍ରାପ୍ତ -ପ୍ରାପ୍ତବ୍ୟ ହେଲେ । ଅନ୍ୟାର୍ଥରେ ସେ ବୁଝିଗଲେ (ବିବିତ୍ସିତଃ) ଭଗବଦ୍ ପ୍ରେମ ବୋଇଲେ କାହାକୁ ବୁଝାଏ ।

ପ୍ରଶ୍ନ-୧୪: ବିଦୁରଜୀ କ୍ଷତା ମୈତ୍ରେୟ ମୁନିଙ୍କୁ (କୌଷାରବ) କେବଳ ବ୍ରହ୍ମଜ୍ଞାନ, ଭକ୍ତି, ବୈରାଗ୍ୟ ସମ୍ବନ୍ଧୀୟ ପ୍ରଶ୍ନମାନ କଲେ । ଗୁରୁକୃପାରୁ ଭଗବାନ ଭକ୍ତି ମହାରାଣୀଙ୍କ ସହିତ ଅଦୃଶ୍ୟ ଅବସ୍ଥାରୁ ହୃଦୟ କମଳରେ ତାଙ୍କୁ ଦୃଶ୍ୟମାନ ହେବାରୁ ତାଙ୍କ ଅବସ୍ଥା କ'ଣ ହେଲା?

**ଯାବତ୍ କୃତବାନ୍ ପ୍ରଶ୍ନାନ୍ କ୍ଷତା କୌଷାରବ-ଅଗ୍ରତଃ ।**
**ଜାତ -ଏକ ଭକ୍ତିଃ ଗୋବିନ୍ଦେ ତେଭ୍ୟଃ ଚ-ଉପରରାମ ହ ॥୨॥**

ଉତ୍ତର: ବିଦୁରଜୀଙ୍କ ହୃଦୟ କମଳରେ ରାଧା-ଗୋବିନ୍ଦଙ୍କ ପ୍ରତି ଅନନ୍ୟ ଭକ୍ତିର ଉଦ୍ରେକ ହେଲା । ଫଳରେ ଆଉ ପ୍ରଶ୍ନ ପଚାରି ବୁଝିବା ଅଦରକାର ହେଲା । ମାଲାମାଲ ହୋଇ ହସ୍ତିନା ଫେରିଲେ ବିଦୁରଜୀ । ସେ ଭାବିଲେ ଏ ସବୁ ତୀର୍ଥଯାତ୍ରାର କମାଲ୍ ।

ପ୍ରଶ୍ନ-୧୫: ବିଦୁରଜୀ ଆସି ହସ୍ତିନାରେ ପହଞ୍ଚିଲେ । ଏକଥା ଦେଖି ଯୁଧିଷ୍ଠିର,ଭୀମ ,ଅର୍ଜୁନ, ନକୁଳ, ସହଦେବ, ଧୃତରାଷ୍ଟ୍ର, ଯୁଯୁତ୍ସୁ, କୃପ ଆଚାର୍ଯ୍ୟ, କୁନ୍ତୀ ଇତ୍ୟାଦି ପାଣ୍ଡବ ପରିବାରର ସଦସ୍ୟ ମାନେ କ'ଣ କଲେ ?

**ତଂ ବନ୍ଧୁଂ ଆଗତଂ ଦୃଷ୍ଟ୍ୱା ଧର୍ମପୁତ୍ରଃ ସହ-ଅନୁଜଃ ।**
**ଧୃତରାଷ୍ଟ୍ରୋ ଯୁଯୁତ୍ସୁଃ ଚ ସୂତଃ ଶାରଦ୍ୱତଃ ପୃଥା ॥୩॥**

ଉତ୍ତର: ମୃତ୍ୟୁପରେ ଦେହକୁ କୌଣସି କାରଣରୁ ପ୍ରାଣ ଫେରି ଆସିଲେ ଇନ୍ଦ୍ରିୟମାନେ ଖୁସି ହୁଅନ୍ତି । ସେଇଭଳି ବିଦୁରଙ୍କର ତୀର୍ଥଭ୍ରମଣ ସମାପ୍ତ ହୁଅନ୍ତେ ପାଣ୍ଡବମାନେ ତାଙ୍କୁ ସାଦର ସତ୍କାର କରି ଉଚ୍ଚ ଆସନରେ ବସାଇଲେ । ତାଙ୍କ ଚାରିପଟେ ଘେରି ବସିଲେ । ତୀର୍ଥଯାତ୍ରାର ଦିବ୍ୟ ଅନୁଭୂତି ସଂପର୍କରେ ସମସ୍ତେ ତାଙ୍କୁ ପ୍ରଶ୍ନ ପରେ ପ୍ରଶ୍ନ ପଚାରି ବସିଲେ ।

ପ୍ରଶ୍ନ-୧୬: ବିଦୁରଜୀଙ୍କ ଦୀର୍ଘ ବିରହରେ ପାଣ୍ଡବମାନେ ଅତ୍ୟନ୍ତ ଦୁଃଖାର୍ତ୍ତ ଥିଲେ । ସୁତରାଂ ତାଙ୍କ ସାମ୍ନାରେ ବସି ପାଣ୍ଡବ ପରିବାରର ସଦସ୍ୟଗଣ ପ୍ରେମ ଅଶ୍ରୁ ବର୍ଷଣ କଲେ । ଯୁଧିଷ୍ଠିର ସର୍ବପ୍ରଥମେ କି ପ୍ରଶ୍ନକଲେ ସମସ୍ତଙ୍କ ଉପସ୍ଥିତିରେ ?

**ଯୁଧିଷ୍ଠିର ଉବାଚ**

**ଅପି ସ୍ମରଥ ନୋ ଯୁଷ୍ମଦ୍ ପକ୍ଷଦ୍ ଛାୟା ସମେଧିତାନ୍ ।**
**ବିପଦ୍‌ଗଣାଦ୍-ବିଷ ଅଗ୍ନି-ଆଦେଃ ମୋଚିତା ଯଦ୍ ସମାତୃକାଃ ॥୮॥**

ଉତ୍ତର: ଦାଦା ବୋଲି ସମ୍ବୋଧନ କରି ରାଜା ପଚାରିଲେ -ଭୀମଙ୍କୁ ବିଷ ଲଡ୍ଡୁ ଖାଇବା ବିପଦରୁ, ଜତୁ ଗୃହରୁ ମା'ଙ୍କ ସହିତ ଆମ ପାଞ୍ଚଭାଇଙ୍କୁ ଅଗ୍ନିଦାହ ଆଦି ବିପଦରୁ ଆପଣ ବଞ୍ଚାଇଛନ୍ତି । ଆପଣ ଆମର ବାସ୍ତବିକ୍ ସୁହୃଦ୍ । ୩୬ ବର୍ଷ ଧରି ତୀର୍ଥଯାତ୍ରାରେ ଭ୍ରମଣ କଲେ ।ସେତେବେଳେ କ'ଣ ଆପଣ ଆମମାନଙ୍କୁ ମନେ ପକାଉଥିଲେ ?

ପ୍ରଶ୍ନ-୧୭: ତୀର୍ଥଯାତ୍ରା ସମୟରେ ଆପଣ କ'ଣ ଖାଇ ଜୀବନ ନିର୍ବାହ

କରୁଥିଲେ ? କେଉଁ କେଉଁ ତୀର୍ଥସବୁ ଭ୍ରମଣ କଲେ ? କିଭଳି ମଧୁର ଶବ୍ଦରେ ବିଦୁରଙ୍କ ମାହାତ୍ମ୍ୟକୁ ମଧ ପ୍ରଶଂସାରୂପେ ପ୍ରକାଶ କଲେ ରାଜା ଯୁଧିଷ୍ଠିର ?

**ଭବତ୍ ବିଧା ଭାଗବତାଃ ତୀର୍ଥଭୂତାଃ ସ୍ୱୟଂ ବିଭୋ ।**
**ତୀର୍ଥୀ କୁର୍ବନ୍ତି ତୀର୍ଥାନି ସ୍ୱାନ୍ତସ୍ଥେନ ଗଦାଭୃତା ।।୧୦।।**

ଉତ୍ତର: କହିଲେ, ''ହେ ଦାଦା, ଆପଣ ଗଦାଧର ଭଗବାନଙ୍କୁ ମନରେ ଶୟନେ, ସ୍ୱପନେ, ସଦା ସର୍ବଦା ଧାରଣ କରିଥାନ୍ତି । ଆପଣ ସ୍ୱୟଂ ଚଳନ୍ତି ତୀର୍ଥ ସ୍ୱରୂପ । ପୁଣି ଗୋବିନ୍ଦଙ୍କର ମହାନ୍ ଭକ୍ତ ବା ମହାଭାଗବତ । ଆପଣମାନଙ୍କ ଭଳି ସାଧୁସନ୍ଥମାନେ ବିରାଜମାନ କରିଥିବାରୁ ସିନା କୌଣସି ସ୍ଥାନ ତୀର୍ଥରେ ଗଣାଯାଏ । ତୀର୍ଥର ଗୌରବ ବୃଦ୍ଧି ହୁଏ ଆପଣଙ୍କ ଭଳି ସାଧୁସନ୍ଥଙ୍କର ଚରଣ ରଜ ପ୍ରାପ୍ତିରେ ।''

ପ୍ରଶ୍ନ-୧୮: ରାଜା ପୁଣି ପଚାରିଲେ - ହେ ଦାଦା, ଆପଣ ନିଶ୍ଚୟ ଦ୍ୱାରକା ଯାଇଥିବେ । ଦେବକୀ ନନ୍ଦନ ଶ୍ରୀକୃଷ୍ଣ ସପରିବାର କୁଶଳରେ ଅଛନ୍ତି ତ ? ଉତ୍ତରରେ ବିଦୁରଜୀ ଉଦ୍ଧବଙ୍କ ଠାରୁ ଯାହା ଶୁଣିଥିଲେ ସେ ସବୁ କହିଲେ । କେବଳ ରାମ-ଗୋବିନ୍ଦଙ୍କ ସ୍ୱଧାମଗମନ ଲୀଳାଟି କହିଲେ ନାହିଁ । ହଠାତ୍ ପ୍ରିୟତମଙ୍କ ବିୟୋଗ କଥାଟି ପ୍ରକାଶ କଲେ ହୁଏତ କିଛି ଅଘଟଣ ଘଟିପାରେ, ଏଇ ଆଶଙ୍କାରେ । ବିଦୁରଜୀ ଯେ ସ୍ୱୟଂ ଯମ ଦେବତା, ମାଣ୍ଡବ୍ୟ ଋଷିଙ୍କ ଅଭିଶାପ ହେତୁ କେତେ ବର୍ଷ ଏ ଶୂଦ୍ରଜୀବନ କଟାଇବେ ଏକଥା ରାଜା କିଭଳି ଉପସ୍ଥାପନ କଲେ ?

**ଅବିଭ୍ରଦ୍ ଅର୍ଯ୍ୟାମା ଦଣ୍ଡଂ ଯଥାବଦ୍ ଅଘକାରିଷୁ ।**
**ଯାବଦ୍ ଦଧାର ଶୂଦ୍ରତ୍ୱଂ ଶାପାଦ୍ ବର୍ଷ ଶତଂ ଯମଃ ।।୧୫।।**

ଉତ୍ତର: ସିଧାସଳଖ ପ୍ରକାଶ କରିଦେଇ କହିଲେ -ଆପଣ ୧୦୦ ବର୍ଷ କଟାଇବେ ଏ ମର୍ତ୍ତ୍ୟ ଲୋକରେ । ଆପଣଙ୍କ ଆସିବାପରେ ଯମଲୋକ ଖାଲି ପଡ଼ିଛି । ଯମରାଜଙ୍କ ଅନୁଚର ଅର୍ଯ୍ୟମା ଦଣ୍ଡଧାରଣ ପୂର୍ବକ ତାଙ୍କ ଅନୁପସ୍ଥିତିରେ କାମ ଚଳାଉଛନ୍ତି ବୋଲି ଯୁଧିଷ୍ଠିର ନିଃସଂକୋଚରେ ସମସ୍ତଙ୍କ ଉପସ୍ଥିତରେ ପ୍ରକାଶ କରିଦେଲେ ।

ପ୍ରଶ୍ନ-୧୯: ମହାଭାରତ ଯୁଦ୍ଧରେ କୌରବଗଣ ପରାଜିତ ହେଲେ । ଯୁଧିଷ୍ଠିର ତାଙ୍କ ରାଜ୍ୟ ଫେରି ପାଇଲେ । ହସ୍ତିନା କଟକର ରାଜଚକ୍ରବର୍ତ୍ତୀ ହେଲେ ଜ୍ୟେଷ୍ଠ ପାଣ୍ଡବ ଯୁଦ୍ଧିଷ୍ଠିର । ସେ କି ପ୍ରକାରେ ଆଦର୍ଶମୟ ରାଜ୍ୟ ଶାସନ କଲେ ?

**ଯୁଧିଷ୍ଠିରୋ ଲବ୍ଧ ରାଜ୍ୟୋ। ଦୃଷ୍ଟ୍ୱା ପ୍ରୌତ୍ରଂ କୁଳଂ ଧରମ୍ ।**
**ଭ୍ରାତୃଭିଃ ଲୋକପାଳଭିଃ ମୁମୁଦେ ପରୟା ଶ୍ରିୟା ॥୧୬॥**

ଉତ୍ତରଃ ଯୁଧିଷ୍ଠିର ଦେଖିଲେ ନାତି ପରୀକ୍ଷିତ ତାଙ୍କର କୁରୁକୁଳର ଜଣେ ସୁଯୋଗ୍ୟ ଦାୟାଦ । ସ୍ୱର୍ଗରେ ଦେବତାମାନେ ଇନ୍ଦ୍ରଙ୍କୁ ଓ ସୃଷ୍ଟିରେ ଇନ୍ଦ୍ରାଦି ଦଶଦିଗପାଳ ପରମେଶ୍ୱରଙ୍କୁ ଶାସନ କାର୍ଯ୍ୟରେ ସହାୟତା କରିଥାନ୍ତି । ଠିକ୍ ସେହିପ୍ରକାରେ ଅର୍ଜୁନ ଆଦି ପାଣ୍ଡବ ମାନେ ଯୁଧିଷ୍ଠିରଙ୍କ ରାଜ୍ୟ ଶାସନରେ ସମୁଚିତ ସହଯୋଗ ସହାୟକ ହେଲେ । ଅତ୍ୟନ୍ତ ସମୃଦ୍ଧିଶୀଳ (ପରୟାଶ୍ରିୟା) ରାଜ୍ୟରେ ପାଣ୍ଡବମାନେ ମହାଆନନ୍ଦରେ କାଳ କାଟିଲେ (ମୁମୁଦେ)।

ପ୍ରଶ୍ନ-୨୦ଃ ସାରାଜୀବନ ଭଗବତ୍ ଆଶ୍ରିତ ପାଣ୍ଡବମାନେ ଗୃହସ୍ଥ ଧର୍ମରେ ଆସକ୍ତ ହୋଇପଡ଼ିଲେ । ଦୁର୍ଲ୍ଲଙ୍ଘ୍ୟ ମହାକାଳ ପାଣ୍ଡମାନଙ୍କର ଅନ୍ତିମ ସମୟର ସୂଚନା ଦେଲେ । ଏକଥା କେହି ଜାଣିପାରୁ ନଥାନ୍ତି କିନ୍ତୁ ସ୍ୱୟଂ ଯମଙ୍କ ଅବତାର ବିଦୁରଙ୍କୁ ଏକଥା ଅଛପା ରହିପାରିଲା ନାହିଁ । ସେ ଗୃହସ୍ଥର ଆଦର୍ଶ ଦେହତ୍ୟାଗର ବିଧି ପାଣ୍ଡମାନଙ୍କୁ ଜଣାଇଦେବାକୁ ଏକ ଉପାୟ ପାଞ୍ଚିଲେ । କୁଳବୃଦ୍ଧ ଧୃତରାଷ୍ଟ୍ରଙ୍କୁ ମୃତ୍ୟୁ ଭୟ ବିଷୟରେସତର୍କ କରାଇଦେଲେ । ତାଙ୍କୁ ଗୃହରେ ଦେହ ତ୍ୟାଗ ନକରି ହରିଭଜନ କରିବା ଅବସ୍ଥାରେ ବଣ ଜଙ୍ଗଲରେ ଦେହ ତ୍ୟାଗ କରିବାକୁ କି ଭଳି ଉପଦେଶ ଦେଲେ ?

**ବିଦୁରଃ ତତ୍ ଅଭିପ୍ରେତ୍ୟ ଧୃତରାଷ୍ଟ୍ରଂ ଅଭାଷତ ।**
**ରାଜନ୍ ନିର୍ଗମ୍ୟତାଂ ଶୀଘ୍ରଂ ପଶ୍ୟ-ଇଦଂ ଭୟଂ ଆଗତମ୍ ॥୧୮॥**

ଉତ୍ତରଃ ବିଦୁରଜୀ କହିଲେ- ହେ ରାଜନ୍, ଆପଣଙ୍କ ପାଇଁ ଭୟଙ୍କର ମୃତ୍ୟୁ ସମୟ ମାଡ଼ିଆସୁଛି । ଆପଣ ଜୀବନରେ କେବେ ବି ହରିଭଜନ କରିନାହାନ୍ତି । ଜୀବନ ଯୁଦ୍ଧରେ ଆପଣ ଜଣେ ପରାସ୍ତ ସୈନିକ । ବୈଷ୍ଣବ ମାନଙ୍କର ସିନା ମୃତ୍ୟୁ ଭୟ ନଥାଏ । ଆପଣ ମୃତ୍ୟୁକୁ ଭୟ କରୁଛନ୍ତି । ସୁତରାଂ ବିନାଶ କାଳରେ ହେଲେ କିଛି ପରଜନ୍ମ ପରକାଳ ସୁଧାରିବା ଉପାୟ କରନ୍ତୁ । ଅବିଳମ୍ବେ ମୋ କଥା ମାନି ଗୃହ ତ୍ୟାଗ କରନ୍ତୁ ।

ପ୍ରଶ୍ନ-୨୧ଃ ହେଲେ ହତଭାଗ୍ୟ ଧୃତରାଷ୍ଟ୍ରଙ୍କର ସଂସାର ବୈରାଗ୍ୟ କାହିଁ ? ବିଦୁର କହିଲେ-ହେ ଜ୍ୟେଷ୍ଠ ଭ୍ରାତ, ଯିବାବେଳେ ମହାକାଳ ଜୀବର ଧନ, ଜନ,

ଦେହ ଏପରିକି ନିଜ ପରମପ୍ରିୟ ପ୍ରାଣକୁ ଛଡ଼ାଇ ରଖେ । ଆପଣ ଏବେ ଧନ,ଜନ, ପ୍ରିୟ ପଦାର୍ଥ ରାଜ୍ୟ ଆଦି ହରାଇ ସାରିଛନ୍ତି । ଆପଣ ସର୍ବହରା । ଆପଣଙ୍କ ଆୟୁଷ ଶେଷ ପ୍ରାୟ । ଦେହ ଜରାଜୀର୍ଣ୍ଣ ଓ ଇନ୍ଦ୍ରିୟ ସକଳ ଅତ୍ୟନ୍ତ ଦୁର୍ବଳ । ପର ଆଶ୍ରୟରେ ପର ଗୃହରେ ପରଧନରେ ଓ ପର ସେବାରେ ପ୍ରତିପାଳିତ । ଶେଷରେ ଧୃତରାଷ୍ଟ୍ରଙ୍କୁ କି ଅପ୍ରିୟ ସତ୍ୟ କଟୂବାଣୀର ଅସ୍ତ୍ର ପ୍ରୟୋଗ କଲେ ବିଦୁରଜୀ ?

**ଅନ୍ଧଃ ପୁରା -ଏବ ବଧିରୋ ମନ୍ଦ ପ୍ରଜ୍ଞାଃ ଚ ସାଂପ୍ରତମ୍ ।**
**ବିଶିର୍ଣ୍ଣଦନ୍ତୋ ମନ୍ଦ-ଅଗ୍ନିଃ ସରାଗଃ କଫଂଉଦ୍ ବହନ୍ ॥୨୨॥**

ଉତ୍ତର: ବିଦୁରଜୀ କହିଲେ- ଆପଣ ଆଗରୁ ନେତ୍ର -ଅନ୍ଧ ଓ ଜ୍ଞାନ-ଅନ୍ଧ ଉଭୟ ଥିଲେ । ଜରା ଆସିବାରୁ ଏବେ ବଧିର ଓ ଅଳ୍ପବୁଦ୍ଧି ହେଲେଣି । ଆପଣଙ୍କ ଦାନ୍ତ ହଲିଲାଣି । ଖାଉଥିବା ଖାଦ୍ୟ ମଧ୍ୟ ହଜମ କରିବାରେ ଆପଣ ଅସମର୍ଥ । କଣ୍ଠରେ କଫ ଭର୍ତ୍ତି । ଭଲରେ ନିଃଶ୍ୱାସଟିଏ ନେଇପାରୁ ନାହାନ୍ତି । ତଥାପି ବଂଚିବାର ଆଶା ଜାବୁଡ଼ି ଧରି ବସିଛନ୍ତି !!! ହାୟରେ କପାଳ !!

ପ୍ରଶ୍ନ-୨୨: ପୁଣି ବିଦୁରଜୀ କହିଲେ-ଆପଣ ଭୀମଙ୍କ ହାତ ଫୋପଡ଼ା ରୁଟିକୁ ବୁଲା କୁକୁର ଭଳି ଚାହିଁ ବସିଛନ୍ତି । ଅତି ଦୁଃଖରେ କହିଲେ-ହାୟରେ ବିଧାତା, ମଣିଷର ବଂଚିବାର ଇଚ୍ଛା ପୁଣି ଏତେ ବଳୀୟସୀ !! ଏ ପୁଣି ସେଇ ପାଣ୍ଡବ, ଯାହାଙ୍କୁ ଆପଣ କପଟରେ ଅଗ୍ନି ଦାହ କରିବାକୁ ଚେଷ୍ଟା କରିଥିଲେ, ବିଷ ଲଡ୍ଡୁ ଦେଇଥିଲେ, ଏକବସ୍ତ୍ର ଅବସ୍ଥାରେ ଯାହାଙ୍କର ପତ୍ନୀଙ୍କ କେଶାକର୍ଷଣ କରାଇଥିଲେ, ଶାଳକ ମନ୍ଦ ବୁଦ୍ଧି ଶକୁନି ସାହାଯ୍ୟରେ କପଟ ଜୁଆ ଖେଳେଇ ରାଜ୍ୟ ଓ ସଂପତ୍ତି ହରଣ କରିଥିଲେ । ଆଜି ତାଙ୍କରି ହାତ ଟେକା ରୁଟିକୁ ଏକ୍‌ଟକ୍ ଚାହିଁ ବସୁଛନ୍ତି !! ଶେଷରେ ବିଦୁରଜୀ ତାଙ୍କୁ ଦେହ ତ୍ୟାଗ ପାଇଁ କି ସଦୁପଦେଶ ଦେଇଥିଲେ ?

**ଯଃ ସ୍ୱକାତ୍ ପରତୋ ବା-ଇହ ଜାତନିର୍ବେଦ ଆତ୍ମବାନ୍ ।**
**ହୃଦିକୃତ୍ୱା ହରିଂ ଗେହାତ୍ ପ୍ରବ୍ରଜେତ୍ ସ ନରୋତ୍ତମଃ ॥୨୭॥**

ଉତ୍ତର: କାହାରି ନିଜ ସାଧନା ବଳରେ ବା ଅନ୍ୟ କାହାରି ଭଗବତ୍ କୃପାରୁ ଜଣେ ସାଧୁଙ୍କ ନିର୍ଦ୍ଦେଶରେ ସଂସାର ବୈରାଗ୍ୟ ଉତ୍ପନ୍ନ ହୋଇଥାଏ । ଥରେ ପରା ବୈରାଗ୍ୟ ଆସିଗଲେ ସ୍ୱହୃଦୟ ସିଂହାସନରେ ଶ୍ରୀହରି ପ୍ରକଟ ହୁଅନ୍ତି । ସେଭଳି

କ୍ଷେତ୍ରରେ ଯେଉଁ ସାଧକ ଗୃହତ୍ୟାଗ କରି ବଣ ଜଙ୍ଗଲରେ 'ହାୟ ଗୋବିନ୍ଦ କହି' ଦେହ ଛାଡ଼ିପାରେ ତାର ଜୀବନ ଧନ୍ୟ ଅତି ଧନ୍ୟ, ଭାଇ, !

ପ୍ରଶ୍ନ-୨୩: ଭାଗ୍ୟବାନ୍ ଥିଲେ ଧୃତରାଷ୍ଟ୍ର । କଥା ମାନିଲେ ମହାତ୍ମା ବିଦୁରଙ୍କର । ସାଧୁ କୃପାରୁ ତାଙ୍କ ଜ୍ଞାନ ନେତ୍ର ଖୋଲିଗଲା । ସେଇ ଦିନ ନିଶାର୍ଦ୍ଧରେ ବିଦୁରଙ୍କ ସହିତ ସେ ଗୃହତ୍ୟାଗ କରିଦେଲେ । ଘୋର ଜଙ୍ଗଲରେ ପ୍ରବେଶ କଲେ । ଚାଲିଲେ ଉତ୍ତର ଦିଗକୁ । ପତିପ୍ରାଣା ସୁବଳ ରାଜାଙ୍କ ପୁତ୍ରୀ ଗାନ୍ଧାରୀ ମଧ୍ୟ ତାଙ୍କର ଅନୁଗମନ କଲେ । ପରଦିନ ସକାଳେ ଅଜାତଶତ୍ରୁ ଯୁଦ୍ଧିଷ୍ଠିର ନିତ୍ୟକର୍ମ ଶେଷରେ ଧୃତରାଷ୍ଟ୍ର-ଗାନ୍ଧାରୀଙ୍କୁ ଦର୍ଶନ କରିବାକୁ ଆସି ରାଜମହଲରେ ନଦେଖି କିପରି ବ୍ୟାକୁଳ ହେଲେ ?

**ପିତରି -ଉପରତେ ପାଣ୍ଡୌ ସର୍ବାନ୍ ନଃ ସୁହୃଦଃ ଶିଶୂନ୍ ।**
**ଅରକ୍ଷତାଂ ବ୍ୟସନତଃ ପିତୃବ୍ୟୌ କ୍ୱ ଗତୌ - ଇତଃ ||୩୪||**

ଉତ୍ତର: ଯୁଦ୍ଧିଷ୍ଠିର ପିତୃବ୍ୟ ବିରହ ଦୁଃଖ ଯନ୍ତ୍ରଣାରେ କହିଉଠିଲେ - ଆମେମାନେ ଶିଶୁଥିବା ବେଳେ ଆମେ ପିତା ପଣ୍ଡୁଙ୍କୁ ହରାଇଥିଲୁ । ଆମଭଳି ଅନାଥଙ୍କୁ ଯେଉଁ ଦୁଇ ଚାଚା କଷ୍ଟରେ ପାଳିଥିଲେ ବୃଦ୍ଧ ଅସହାୟ ଅବସ୍ଥାରେ ସେ ଦୁଇଜଣ କୁଆଡ଼େ ଚାଲିଗଲେ !!!

ପ୍ରଶ୍ନ-୨୪: ମହାରାଜ ଯୁଦ୍ଧିଷ୍ଠିରଙ୍କ ଏ ମାନସିକ ଦୂରବସ୍ଥା ବେଳେ ଦେବର୍ଷି ନାରଦ ତୁମ୍ବୁରଙ୍କ ସହିତ ସେଠାରେ ପ୍ରକଟ ହେଲେ (ଆଜଗାମ) । ଯୁଦ୍ଧିଷ୍ଠିର ଦେବର୍ଷି ନାରଦଙ୍କୁ ଦେଖି କ'ଣ କଲେ ?

**ଅଥ-ଆଜଗାମ ଭଗବାନ୍ ନାରଦଃ ସହ ତୁମ୍ବୁରୁଃ ।**
**ପ୍ରତ୍ୟୁତ୍ଥାୟ ଅଭିବାଦ୍ୟ-ଆହ ସ-ଅନୁଜୋଽଭ୍ୟର୍ଚ୍ଚନ୍ ମୁନିମ୍ ||୩୮||**

ଉତ୍ତର: ମୁନିଦ୍ୱୟଙ୍କୁ ନିଜ ଭାଇମାନଙ୍କ ସହ ମିଶି ଚରଣଧୌତ କରି ପଦ ପୂଜନ କଲେ । ଉଚିତ୍ ସତ୍କାର କରି ଆସନରେ ବସାଇଲେ ।

**ଯୁଦ୍ଧିଷ୍ଠିର ଉବାଚ**

ପ୍ରଶ୍ନ-୨୫: ନାରଦଜୀଙ୍କୁ ସାଦର ଅଭ୍ୟର୍ଥନା କରି ଆସନରେ ବସାଇଲେ । ଅଜାତଶତ୍ରୁ ରାଜା ଯୁଦ୍ଧିଷ୍ଠିର ତ୍ରିକାଳଦର୍ଶୀ ନାରଦ ମୁନିଙ୍କୁ କ'ଣ ପଚାରିଲେ ?

**ନ-ଅହଂ ବେଦ ଗତିଂ ପିତ୍ରୋଃ ଭଗବନ୍ କ୍ୱ ଗତୌ ଇତଃ ।**
**ଅମ୍ବା ବା ହତ ପୁତ୍ରା-ଆର୍ତ୍ତା କ୍ୱ ଗତା ଚ ତପସ୍ୱିନୀ ||୩୯||**

ଉତ୍ତର: କହିଲେ, "ହେ ମହର୍ଷେ, ମୁଁ ଜାଣିପାରୁନାହିଁ ମୋ ବଡ଼ ବାବା ଧୃତରାଷ୍ଟ୍ର କୁଆଡ଼େ ଚାଲିଗଲେ ବୋଲି । ମୋ ବଡ଼ ମାମା ଗାନ୍ଧାରୀଦେବୀ ମଧ୍ୟ ଘରେ ନାହାନ୍ତି । ସେମାନେ ଉଭୟେ ପୁତ୍ରହରା ଶୋକରେ ଅଧୀରା । ସେଥିପାଇଁ ସେମାନେ ଗଭୀର ଦୁଃଖିତ ଓ ବ୍ୟାକୁଳ । କିପରି ପାଇବି ସେ ଦୁହିଁଙ୍କୁ ?"

**ନାରଦ ଉବାଚ**

ପ୍ରଶ୍ନ-୨୬: ଦେବର୍ଷି ନାରଦ ଯୁଧିଷ୍ଠିରଙ୍କୁ କହିଲେ - ହେ ରାଜନ୍, ସେଥିରେ ତୁମର ଶୋକ କରିବାର କ'ଣ ଅଛି ? ତୁମେ କ'ଣ ତାଙ୍କର ଯୋଗ କ୍ଷେମ ବହନ କର୍ତ୍ତା କି ?

**ମା କ ଂଚନ ଶୁଚୋ ରାଜନ୍ ଯଦ୍ ଈଶ୍ୱର ବଶଂ ଜଗଦ୍ ।**
**ଲୋକାଃ ସ ପାଳାଃ ଯସ୍ୟ-ଇମେ ବହନ୍ତି ବଳିଂ ଈଶିତୁଃ ।।**
**ସ ସଂଯୁନକ୍ତି ଭୂତାନି ସଃ ଏବ ବିଯୁନକ୍ତି ଚ ।।।୪୧।।।**

ଉତ୍ତର: କଦାପି ନୁହେଁ । ଈଶ୍ୱର ହିଁ କେବଳ ସକଳ ପ୍ରାଣୀଙ୍କର ଏପରିକି ଦେବୀ ଦେବତା ଓ ଇନ୍ଦ୍ରାଦି ଲୋକ ପାଳମାନଙ୍କର ସ୍ରଷ୍ଟା ଓ ରକ୍ଷାକର୍ତ୍ତା । ସାରା ସଂସାର ପରମେଶ୍ୱରଙ୍କ କର୍ତ୍ତୃତ୍ୱାଧୀନ । ସେଇ ସେଇ ଦେବତାମାନେ ଈଶ୍ୱରଙ୍କ ତରଫରୁ କେବଳ ଯଜ୍ଞଭାଗ ଗ୍ରହଣ କରନ୍ତି (ବହନ୍ତି ବଳିଂ) । ଈଶ୍ୱରଙ୍କ ପାଖରେ ସେ ସବୁକୁ ପହଞ୍ଚାନ୍ତି । ସେମାନେ ସ୍ୱୟଂ କୌଣସି ଲୋକହିତକର କାର୍ଯ୍ୟର କର୍ତ୍ତା କିମ୍ବା ଯଜ୍ଞ ବଳିର ଭୋକ୍ତା ନୁହନ୍ତି । ଜୀବ ସହ ଜୀବର ସଂଯୋଗ ବିଯୋଗ (ବିଯୁନକ୍ତି) ଉଭୟ ସେଇ ପରମେଶ୍ୱରଙ୍କ କାର୍ଯ୍ୟ ମାତ୍ର ।

ପ୍ରଶ୍ନ-୨୭: ଏ ସମ୍ବନ୍ଧରେ ଦେବର୍ଷି ନାରଦ କିଭଳି ଦୃଷ୍ଟାନ୍ତ ଦେଇ ଧୃତରାଷ୍ଟ୍ରଙ୍କୁ ବିଷୟଟିକୁ ପ୍ରାଞ୍ଜଳ ଭାବରେ ବୁଝାଇବାକୁ ଚେଷ୍ଟା କଲେ ?

**ଯଥା ଗାବୋ ନସି ପ୍ରୋତାଃ ତନ୍ତ୍ୟାଂ ବଦ୍ଧାଃ ଚ ଦାମଭିଃ ।**
**ବାକ୍ ତନ୍ତ୍ୟାଂ ନାମଭିଃ ବଦ୍ଧାଃ ବହନ୍ତି ବଳିଂ ଈଶିତୁଃ ।।୪୨।।**

ଉତ୍ତର:ବଳଦଙ୍କ ମାଲିକ ତାଙ୍କ ନାକ ଫୁଟାଇ ଦଉଡ଼ି ଲଗାଇ କ୍ଷେତ ଚାଷ କରାଏ । ଶଗଡ଼ ଗାଡ଼ିରେ ଯୋଚି ଭାର ବୁହାଏ । ବଳଦ ମାନେ କେବଳ କାମ କରିବାରେ ଅଧିକାରୀ । ଫଳ ସେମାନେ ଦାବୀ କରିପାରନ୍ତି ନାହିଁ । ଠିକ୍ ସେଇଭଳି ମଣିଷମାନେ ବର୍ଣ୍ଣ ଧର୍ମ- ଆଶ୍ରମ ଧର୍ମ ପାଳନ କରିବାକୁ ବାଧ୍ୟ । ନକଲେ ଦଣ୍ଡ

ମିଳିବ । ତେଣୁ ସେମାନଙ୍କୁ ନାସିକା ବିଦ୍ଧ ବଳଦ ବୋଲି ଜାଣ । ବେଦ ମାର୍ଗ ରୂପକ ରସିରେ ସେମାନେ ବନ୍ଧ । ଉଚ୍ଛୃଙ୍ଖଳ ହେଲେ ଧର୍ମ ନାଶ ଜନିତ ପାପ ହେବ । ଇହଲୋକରେ ଦୁଃଖ । ମରିଗଲେ ମଧ୍ୟ ପରଲୋକରେ ଅସହ୍ୟ ନର୍କ ଯନ୍ତ୍ରଣା ଭୋଗିବାକୁ ପଡ଼େ ଯୁଧିଷ୍ଠିର । ସେମାନଙ୍କୁ ତାଙ୍କ ଦୁଃଖ ସୁଖ ରୂପୀ କର୍ମଫଳ ଭୋଗିବାକୁ ଛାଡ଼ି ଦିଅ । ତୁମର ତାଙ୍କ ପାଇଁ ଶୋକ କରିବା ଅନୁଚିତ୍ ।

ପ୍ରଶ୍ନ-୨୮: ଦେବର୍ଷି ନାରଦ ଯୁଧିଷ୍ଠିରଙ୍କୁ କ'ଣ କହି ତାଙ୍କର ନିଜ ଭୁଲ ଦେଖାଇଲେ ?

**ତସ୍ମାଦ୍ ଜହି -ଅଙ୍ଗ ବୈକ୍ଲବ୍ୟଂ ଅଜ୍ଞାନ କୃତଂ ଆତ୍ମନଃ ।**
**କଥଂ ତ୍ୱ-ଅନାଥାଃ କୃପଣା ବର୍ତ୍ତେରନ୍ ତେ ଚ ମାଂ ବିନା ।।୪୫।।**

ଉତ୍ତର: କହିଲେ -ହେ ଯୁଧିଷ୍ଠିର, ତୁମେ ଦେହକୁ ମୁଁ ଭାବି ସେ ଦୁଇଜଣଙ୍କୁ ମୋର ଭାବୁଛ । ନିଜକୁ ସେମାନଙ୍କ ଆଶ୍ରୟଦାତା ଭାବୁଛ । ସେଥିପାଇଁ ମନେ କରୁଛ ମୋ ବିନା ସେ ଅନ୍ଧ-ଅନ୍ଧୁଣୀ ବଂଚିବେ କିପରି!!! ଏତ ଏକ ମହାନ୍ ଆଶ୍ଚର୍ଯ୍ୟ କଥା । ଭୁଲ ବୁଝାମଣା ।

ପ୍ରଶ୍ନ-୨୯: ଯୁଧିଷ୍ଠିର ସ୍ୱୟଂ ଯେ କାଳସର୍ପଗ୍ରସ୍ତ ଏକଥା ତାଙ୍କୁ ନାରଦଜୀ ବୁଝାଇଲେ କିପରି?

**କାଳ କର୍ମ ଗୁଣ-ଅଧୀନୋ ଦେହୋଽୟଂ ପାଞ୍ଚ ଭୌତିକଃ ।**
**କଥଂ-ଅନ୍ୟାନ୍ ତୁ ଗୋପାୟେଦ୍ ସର୍ପଗ୍ରସ୍ତୋ ଯଥା ପରମ୍ ।।୪୬।।**

ଉତ୍ତର: ଜୀବର ପାଞ୍ଚ ଭୌତିକ ଶରୀର ସର୍ବଦା ସତ୍ୱ,ରଜ, ତମୋ ଗୁଣରେ ନିର୍ମିତ । ତାର କର୍ମ ମଧ୍ୟ ସେହିଭଳି ସାତ୍ତ୍ୱିକ, ରାଜସିକ ଓ ତାମସିକ । ସେ କରୁଥିବା ପୁଣ୍ୟ, ପାପ ଓ ମିଶ୍ର କର୍ମର ଫଳ ସେ ନିଜେ ଭୋଗିବାକୁ ବାଧ୍ୟ । ତୁମେ ଏବେ ବି ଶୋକ କରୁଚ କାରଣ ତୁମେ ଅଜ୍ଞେୟ କାଳ ସର୍ପଗ୍ରସ୍ତ ବୋଲି । ଜଣେ ଯେତେବେଳେ ନିଜେ ସର୍ପ ମୁଖରେ ପଶିଛି, ସେତେବେଳେ ସେ କିପରି ଆଶା କରିପାରିବ ଯେ ସେ ଆଉ ଜଣକୁ ସର୍ପମୁଖରୁ ଉଦ୍ଧାର କରିପାରିବ ବୋଲି । ଏହା ତ ଅତ୍ୟନ୍ତ ଅସମ୍ଭବ କଥା ।

ପ୍ରଶ୍ନ-୩୦: ଯୁଧିଷ୍ଠିର ଶତଚେଷ୍ଟା କଲେ ମଧ୍ୟ ସେ ଦୁହିଁଙ୍କୁ କିଛି ସାହାଯ୍ୟ କରିପାରିବେନି ବୋଲି କେଉଁ ଦୃଷ୍ଟାନ୍ତ ଦ୍ୱାରା ନାରଦଜୀ ଦର୍ଶାଇଲେ ?

**ଅହସ୍ତାନି ସହସ୍ତାନାଂ ଅପଦାନି ଚତୁଷ୍ପଦାମ୍ ।**
**ଫଲଗୁନି ତତ୍ର ମହତାଂ ଜୀବୋ ଜୀବସ୍ୟ ଜୀବନମ୍ ।।୪୭।।**

ଉତ୍ତର: ନାରଦ ମହର୍ଷି ପୁଣି କହିଲେ, ‘‘ହସ୍ତ ନଥିବା ପଶୁ ପକ୍ଷୀ ମାନଙ୍କୁ ହସ୍ତଥିବା ମନୁଷ୍ୟ, ପାଦ ନଥିବା ସ୍ଥାବର ବୃକ୍ଷ,ଲତା, ତୃଣ, ଗୁଳ୍ମଙ୍କୁ ଚତୁଷ୍ପାଦ ବିଶିଷ୍ଟ ପଶୁ (ଗାଇ, ମହିଷି, ହାତୀ, ହରିଣ ଆଦି ) ଏବଂ ଛୋଟ ଛୋଟ (ଫଲ୍‌ଗୁନି) ଜୀବ ବେଙ୍ଗ, ସରୀସୃପ କୀଟ ପତଙ୍ଗଙ୍କୁ ବଡ଼ ବଡ଼ (ମହତ୍) ଜୀବ ସର୍ପ, ବ୍ୟାଘ୍ର, ସିଂହ ଆଦି ଖାଇ ନିଜ ନିଜ ପ୍ରାଣ (ଜୀବନ) ରକ୍ଷା କରୁଛନ୍ତି । ଯଦିଚ ସକଳ ଜୀବ ମଧ୍ୟରେ ସେଇ ଏକ ନାରାୟଣ ବିଦ୍ୟମାନ । ସୁତରାଂ ଦେବତା, ମନୁଷ୍ୟ ବ୍ୟତୀତ ଇତର ପଶୁପକ୍ଷୀଙ୍କ ଜୀବନ ଧାରଣ ଲାଗି ଇତର ଜୀବର ଜୀବ ଭକ୍ଷଣ କର୍ମରେ ପାପ ହୁଏନା । ସଂସାରର ସମସ୍ତେ ବିଷ୍ଣୁମାୟା ଶକ୍ତିଦ୍ୱାରା ସୁନିୟନ୍ତ୍ରିତ । ବରଂ ତୁମେ ତାଙ୍କ ବିୟୋଗ ପାଇଁ ଶୋକ ନକରି ନିଜ ଉଦ୍ଧାର ଲାଗି ଏବେଠୁ ଯତ୍ନବାନ ହୁଅ । ଜ୍ଞାତି ବିରହ ଶୋକ ତ୍ୟାଗ କରି ହରି ଭଜନରେ ମନ ଦିଅ । ଲାଗିପଡ଼ ଏବେଠାରୁ ।’’

ପ୍ରଶ୍ନ-୩୧ : ଭଗବାନଙ୍କ ଶ୍ରୀକୃଷ୍ଣ ଅବତାର ରହସ୍ୟଟି ଏଥର ଦେବର୍ଷି ନାରଦ ରାଜାଙ୍କ ସମ୍ମୁଖରେ ପ୍ରକଟ କରିଦେଲେ । ସେ ଦେବତାମାନଙ୍କ ଦୁଃଖ ଲାଘବ କରିବାକୁ ମହାକାଳ ହିଁ କୃଷ୍ଣ ଅବତାର ସ୍ୱୀକାର କରିଛନ୍ତି । ଉଦ୍ଦେଶ୍ୟ ଦୁଷ୍ଟ ଦଳନ, ସନ୍ଥ ପାଳନ ଓ ଧର୍ମ ସଂସ୍ଥାପନ । ତାଙ୍କର ପ୍ରାୟ ସମସ୍ତ କର୍ମ (ଲୀଳା) ଶେଷ ହୋଇ ଆସିଲାଣି । ଅଳ୍ପ କିଛି ବାକି ଅଛି। ସେ ପର୍ଯ୍ୟନ୍ତ ତୁମେ ହରିଭଜନ କରୁଥାଅ । ପ୍ରତୀକ୍ଷା କରୁଥାଅ । ନାରଦଜୀ ଏଭଳି ସଦୁପଦେଶ ଦେଇସାରି ଧୃତରାଷ୍ଟ୍ର ଓ ଗାନ୍ଧୀରୀଙ୍କ ଅବସ୍ଥା ବିଷୟରେ କ’ଣ କହିଲେ ?

**ଧୃତରାଷ୍ଟ୍ରଃ ସହ ଭ୍ରାତା ଗାନ୍ଧାର୍ଯ୍ୟା ଚ ସ୍ୱଭାର୍ଯ୍ୟୟା।**
**ଦକ୍ଷିଣେନ ହିମବତ ଋଷିଣାଂ ଆଶ୍ରମଂ ଗତଃ ।।୫୧।।**

ଉତ୍ତର: ତ୍ରିକାଳଦର୍ଶୀ ମୁନି ତାଙ୍କ ଯୋଗଶକ୍ତି ବଳରେ ଜାଣିପାରି କହିଲେ ଯେ-ହିମାଳୟ ପର୍ବତର ଦକ୍ଷିଣ ପ୍ରଦେଶରେ ଯେଉଁଠାରେ ପବିତ୍ର ଗଙ୍ଗାନଦୀ ସାତଟି ସ୍ରୋତ (ଭାଗିରଥୀ, ଅଳକାନନ୍ଦା ଆଦି ) ରେ ବିଭକ୍ତ ହୋଇ ପ୍ରବହମାନ ସେହିଠାରେ ଧୃତରାଷ୍ଟ୍ର ଅଛନ୍ତି । ତାଙ୍କ ସାଙ୍ଗରେ ଅଛନ୍ତି ତାଙ୍କ ସାନ ଭାଇ ମହାତ୍ମା

ବିଦୁର ଓ ଗାନ୍ଧାରୀ । ସେମାନେ ଏକ ଋଷି ଆଶ୍ରମରେ ରହି ଦେହତ୍ୟାଗ ପାଇଁ ନିଭୃତରେ ସାଧନା କରୁଛନ୍ତି । ସମସ୍ତେ କ୍ଷୁଧା ତୃଷା ଜୟ କରିଛନ୍ତି । ଷଡ଼ଇନ୍ଦ୍ରିୟ ତାଙ୍କର ସଂଯମିତ । ପ୍ରାଣାୟାମ ଦ୍ୱାରା ସେ ତ୍ରିଗୁଣାତୀତ ହୋଇ ସାରିଲେଣି । ସନ୍ଥ ବିଦୁରଙ୍କ କୃପାରୁ ସେମାନେ ଶ୍ରୀହରିଙ୍କୁ ହୃଦୟ କମଳରେ ଦର୍ଶନ କରୁଛନ୍ତି ।

ପ୍ରଶ୍ନ-୩୨ :କେବେ ଧୃତରାଷ୍ଟ୍ରଙ୍କ ଦେହତ୍ୟାଗ ହେବ ବୋଲି ନାରଦ ମହର୍ଷି ତାଙ୍କୁ ଜଣାଇଲେ?

**ସ ବା ଅଦ୍ୟତନାତ୍ ରାଜନ୍ ପରତଃ ପଞ୍ଚମେଽହନି ।**
**କଳେବରଂ ହାସ୍ୟତି ସ୍ୱଂ ତତ୍ ଚ ଭସ୍ମୀ ଭବିଷ୍ୟତି ।।୫୭।।**

ଉତ୍ତର:ସେଇଦିନଠାରୁ ୫ମ ଦିନରେ ସେ ଦେହତ୍ୟାଗ (ହାସ୍ୟତି) କରିବେ । ତାପରେ ସେ ଦେହ ଜଳିଯାଇ ଭସ୍ମରେ ପରିଣତ ହୋଇଯିବ ।

ପ୍ରଶ୍ନ-୩୩:ଧୃତରାଷ୍ଟ୍ରଙ୍କ ଦେହ ଭସ୍ମ ହେବାପରେ ଗାନ୍ଧାରୀ ଦେବୀ କ'ଣ କରିବେ ବୋଲି ନାରଦଜୀ କହିଲେ ?

**ଦହ୍ୟମାନେଽଗ୍ନିଭିଃ ଦେହେ ପତ୍ୟୁଃ ପତ୍ନୀ ସହ-ଉଟଜେ ।**
**ବହିଃସ୍ଥିତା ପତିଂ ସାଧ୍ୱୀ ତଂ ଅଗ୍ନିଂ-ଅନୁ ବେକ୍ଷ୍ୟତି ।।୫୮।।**

ଉତ୍ତର:ଏହା ଦେଖି ରହୁଥିବା ପତ୍ରକୁଡ଼ିଆ (ଉଟଜ) ସହିତ ଗାନ୍ଧାରୀ ନିଜେ ଅଗ୍ନିରେ ପ୍ରବେଶ କରି ଦେହ ତ୍ୟାଗ କରିଦେବେ । ସେ ପତିବ୍ରତା, ସାଧ୍ୱୀ ଏବଂ ସତୀ ସୁତରାଂ ତାଙ୍କର ଦେହ ତ୍ୟାଗ ବରଂ ସହଜ ହେବ ।

ପ୍ରଶ୍ନ-୩୪: ଏ ସବୁ ଘଟିସାରିବା ପରେ ମହାତ୍ମା ବିଦୁର ପୁଣି କ'ଣ କରିବେ ?

**ବିଦୁରଃ ତୁ ତତ୍ ଆଶ୍ଚର୍ଯ୍ୟଂ ନିଶାମ୍ୟ କୁରୁନନ୍ଦନ ।**
**ହର୍ଷ ଶୋକ ଯୁତଃ ତସ୍ମାତ୍ ଗନ୍ତା ତୀର୍ଥ ନିଷେବକଃ ।।୫୯।।**

ଉତ୍ତର: ହେ ଧର୍ମରାଜ (କୁରୁନନ୍ଦନ), ସେ ଦୁଇଜଣଙ୍କର ଏତେ ଅଳ୍ପସମୟରେ ମୋକ୍ଷପ୍ରାପ୍ତି ଦେଖି ଦେଖି ବିଦୁରଜୀ ଆଶ୍ଚର୍ଯ୍ୟ ହେବେ । ଜଣେ ଦେହ ଧର୍ମୀ ଲୋକର ଉଦ୍ଧାର ଦେଖି ତାଙ୍କ ମନରେ ହର୍ଷ ଜାତ ହେବ । ପୁନଶ୍ଚ ଜ୍ଞାତି ବିୟୋଗ ହେତୁ ତାଙ୍କ ମନରେ ସାମାନ୍ୟ ଶୋକ ମଧ ହେବ । ସୁତରାଂ ସେ ଜୀବନର ଅବଶିଷ୍ଟ ସମୟ ତୀର୍ଥ ଦର୍ଶନ କରି କଟାଇଦେବେ । ଏହା କହି ନାରଦ

ବୀଣା ବଜାଇ ହରିଭଜନ କରି କରି ତୁମ୍ବୁରୁ ଋଷିଙ୍କ ସହିତ ସେଠାରୁ ଅଦୃଶ୍ୟ ହୋଇଗଲେ । ଧର୍ମରାଜ ଯୁଦ୍ଧିଷ୍ଠିର ଏବେ ସଂପୂର୍ଣ୍ଣ ଶୋକମୁକ୍ତ ହୋଇଗଲେ ।

# ଅଥ ୧୪ଶ ଅଧ୍ୟାୟଃ

## (ଭଗବାନଙ୍କ ଲୀଳା ସମ୍ବରଣ ଓ ଶରୀର ଅପ୍ରାକଟ୍ୟ)

### ସୂତ ଉବାଚ

ପ୍ରଶ୍ନ-୩୫: କୃଷ୍ଣ ସଖା ଅର୍ଜୁନ (ଜିଷ୍ଣୌ) କି ଉଦ୍ଦେଶ୍ୟରେ ଦ୍ୱାରକା ଯାଇଥିଲେ ?

**ସଂପ୍ରସ୍ଥିତେ ଦ୍ୱାରକାୟାଂ ଜିଷ୍ଣୌ ବନ୍ଧୁ ଦିଦୃକ୍ଷୟା ।**
**ଜ୍ଞାତୁଂ ଚ ପୁଣ୍ୟଶ୍ଳୋକସ୍ୟ କୃଷ୍ଣସ୍ୟ ଚ ବିଚେଷ୍ଟିତମ୍ ।।୧।।**

ଉତ୍ତର: ବନ୍ଧୁଦର୍ଶନ ଲାଗି (ଦିଦୃକ୍ଷୟା) । ପୁଣି ସୁନ୍ଦର ପୁଣ୍ୟ ଶ୍ଳୋକ ଦ୍ୱାରା ଯେଉଁ କୃଷ୍ଣଙ୍କ ସ୍ତୁତି କରିନ୍ତି ଋଷିମୁନି ସାଧୁ ସନ୍ଥଗଣ, ତାଙ୍କ ଲୀଳା (ବିଚେଷ୍ଟିତମ୍) ଜାଣିବା ପାଇଁ ।

ପ୍ରଶ୍ନ-୩୬: ଅର୍ଜୁନଙ୍କ ଦ୍ୱାରକା ଯିବାର ଅନେକ ମାସ ବିତି ଗଲାଣି । ସେ ଫେରି ଆସିନଥାନ୍ତି । ଏହି ଅବସରରେ ହସ୍ତିନାପୁରରେ କ'ଣ ଅଘଟଣ ମାନ ଘଟିଲା ?

**ବ୍ୟତୀତାଃ କତିଚିତ୍ ମାସାଂ ତଦା ନ ଆୟାତ୍ ତତୋଽର୍ଜୁନଃ ।**
**ଦଦର୍ଶ ଘୋରରୂପାଣି ନିମିତ୍ତାନି କୁରୁଦ୍ୱହଃ ।।୨।।**

ଉତ୍ତର: ଯୁଦ୍ଧିଷ୍ଠିର ମହାରାଜଙ୍କୁ ତାଙ୍କ ରାଜ୍ୟରେ ଅନେକ ଅପଶକୁନ ବା ଅଶୁଭ ଲକ୍ଷଣ ଦେଖାଗଲା ।

ପ୍ରଶ୍ନ-୩୭: ଦେଖାଗଲା ବଡ଼ ଭୟଙ୍କର କାଳ ଉପସ୍ଥିତ । ଋତୁମାନଙ୍କରେ ବିପରୀତ କ୍ରିୟା ଦେଖାଯଉଛି । ପ୍ରଜାମାନେ ଅତ୍ୟନ୍ତ କାମୁକ, କ୍ରୋଧୀ, ଅସତ୍ୟ ପରାୟଣ ହୋଇଗଲେଣି । ଜୀବନ ନିର୍ବାହ ଲାଗି ପାପାଚାର, ଅନାଚାର, ଦୁରାଚାର କଲେଣି । ସମସ୍ତେ କପଟୀ, କଳହ, ଝଗଡ଼ାରେ ବ୍ୟସ୍ତ । ଭୟଙ୍କର କଳିକାଳ ପହଞ୍ଚିବାରୁ ଲୋକଙ୍କର ସ୍ୱଭାବରେ କି କି ପରିବର୍ତ୍ତନ ଦେଖାଦେଲା ?

**ନିମିତ୍ତାନି-ଅତି-ଅରିଷ୍ଟାନି କାଳେ ତୁ- ଅନୁଗତେ ନୃଣାମ୍ ।**
**ଲୋଭ -ଆଦି -ଅଧର୍ମ ପ୍ରକୃତିଂ ଦୃଷ୍ଟ୍ୱା-ଉବାଚ- ଅନୁଜଂ ନୃପଃ ।।୫।।**

ଉତ୍ତର: ସମସ୍ତେ ଲୋଭୀ, ଦମ୍ଭୀ, ଅଧର୍ମୀ ହୋଇଗଲେଣି । ଏଭଳି ଅପଶକୁନ ଦେଖି ରାଜା ଯୁଧିଷ୍ଠିର ସାନ ଭାଇ ଭୀମସେନଙ୍କୁ ପାଖକୁ ଡ଼ାକି କାରଣ ସମ୍ବନ୍ଧରେ ତାଙ୍କୁ ପ୍ରଶ୍ନ କଲେ ।

**ଯୁଧିଷ୍ଠିର ଉବାଚ**

ପ୍ରଶ୍ନ-୩୮: କହିଲେ ହେ ଭୀମସେନ, ଆମ୍ଭେମାନେ ଅର୍ଜୁନଙ୍କୁ ଦ୍ୱାରକା ଖବର ବୁଝିବାକୁ ପଠାଇଲେ । ସାତ ମାସ ବିତିଗଲାଣି । ସେ ନ ଫେରିବାର କାରଣ କିଛି ବୁଝାପଡୁନି । ସେତେବେଳେ ଯୁଧିଷ୍ଠିରଙ୍କ ମନରେ କି ପ୍ରକାର ଆଶଙ୍କା ସବୁ ଉପୁଜିଲା ?

**ଅପି ଦେବର୍ଷିଣା- ଆଦିଷ୍ଟଃ ସ କାଳୋଽୟଂ ଉପସ୍ଥିତଃ ।**
**ଯଦା- ଆତ୍ମନୋଽଙ୍ଗଂ ଆକ୍ରୀଡ଼ଂ ଭଗବାନ୍ ଉତ୍ ସିସୃକ୍ଷତି ।।୮।।**

ଉତ୍ତର: ହେ ପ୍ରିୟ ଭ୍ରାତା ଭୀମସେନ (ଅଙ୍ଗ), ଥରେ ଦେବର୍ଷି ନାରଦ ତାଙ୍କୁ କହୁଥିଲେ ଦିନେ ଏଭଳି ସମୟ ଆସି ପହଞ୍ଚିବ ଯେ ଯଶୋଦା ନନ୍ଦନ କୃଷ୍ଣ ହଠାତ୍ ତାଙ୍କ ଲୀଳା ସମ୍ବରଣ କରିବେ (ଉତ୍ ସିସୃକ୍ଷତି) । ଏବେ କ'ଣ ସେଇ ସମୟ ଆସି ପହଞ୍ଚିଗଲା କି ?

ପ୍ରଶ୍ନ-୩୯: ଆମ୍ଭେମାନେ ସେଇ କୃଷ୍ଣ ବାସୁଦେବଙ୍କର କୃପାରୁ ଏ ରାଜ୍ୟ, ସମ୍ପତ୍ତି, ସନ୍ତାନ ଓ ଶତ୍ରୁଙ୍କ ଉପରେ ବିଜୟ ପ୍ରାପ୍ତ ହୋଇଛେ । ଏବେ ଦେଖ ଭୀମସେନ -ଆକାଶରେ ଉଲ୍କା, ପୃଥିବୀରେ ଭୂମିକମ୍ପ ଦୃଶ୍ୟ ହେଉଛି । ମୋର ବାମ ଜଙ୍ଘ, ଚକ୍ଷୁ ଓ ବାହୁ ସ୍ଫୁରିତ ହେଉଛନ୍ତି । କୁକୁର, ବିଲୁଆଗଣ ଦିନବେଳେ ଅଯଥା ବୋବାଳି ଛାଡୁଛନ୍ତି । ଆକାଶରେ ସୂର୍ଯ୍ୟମଣ୍ଡଳ ଓ ଚନ୍ଦ୍ରମଣ୍ଡଳ ଦୃଶ୍ୟ ହେଉଛି । ମେଘରୁ ଜଳଧାରା ସହିତ ରକ୍ତଧାରା ବର୍ଷା ହେଉଛି। ସୂର୍ଯ୍ୟ ଦେବ ଓ ଗ୍ରହମାନଙ୍କର ଗତିବିଧି ବିଷୟରେ ଧର୍ମରାଜ ଯୁଧିଷ୍ଠିର କ'ଣ ଲକ୍ଷ୍ୟ କଲେ ?

**ସୂର୍ଯ୍ୟଂ ହତପ୍ରଭଂ ପଶ୍ୟ ଗ୍ରହମର୍ଦ୍ଦଂ ମିଥୋ ଦିବି ।**
**ସ ସଂକୁଳୈଃ ଭୂତଗଣୈଃ ଜ୍ୱଳିତେ ଇବ ରୋଦସୀ ।।୧୭।।**

ଉତ୍ତର: କହିଲେ- ଦେଖ ଭୀମସେନ-ସୂର୍ଯ୍ୟଙ୍କ ପ୍ରଭା ମଳିନ

ଦେଖାଗଲାଣି । ଆକାଶରେ ଗ୍ରହମାନେ ପରସ୍ପର (ମିଥୋ) ସଂଘର୍ଷ (ଗ୍ରହମର୍ଦ୍ଦଂ) ଆଡ଼କୁ ମୁହାଁଇଲେଣି । କ୍ଷତି-ଅପ୍-ତେଜ ଆଦି ପଞ୍ଚମହାଭୂତ ପରସ୍ପର ସଂଘର୍ଷ କରି ଅଗ୍ନି ଉଦ୍‌ଗିରଣ କଲେଣି ।

ପ୍ରଶ୍ନ-୪୦:ଗାଈମାନେ ତଳକୁ ମୁଖ କରି ଅଶ୍ରୁମୋଚନ କରୁଛନ୍ତି । ବାଛୁରୀମାନେ କ୍ଷୁଧାର୍ତ୍ତ ହେଲେ ମଧ୍ୟ ଦୁଗ୍‌ଧ ପାନ କରୁନାହାନ୍ତି । ମନ୍ଦିରମାନଙ୍କରେ ଶ୍ରୀବିଗ୍ରହଙ୍କ ଦେହରୁ ସ୍ୱେଦବାରି ଓ ଅଶ୍ରୁ ଝରୁଛି । ସକଳ ଗ୍ରାମ, ପୁର, ଉଦ୍ୟାନ, ଆଶ୍ରମ ଆଜି ଶ୍ରୀହୀନ ଦିଶୁଛି । ଏସବୁ ମହାଉତ୍ପାତ ଲକ୍ଷଣ ସବୁ ଦେଖି ଧର୍ମରାଜ ଯୁଧିଷ୍ଠିର ନିଜେ କି ଅନୁମାନ କଲେ ?

**ମନ୍ୟେ ଏତୈଃ ମହା-ଉତ୍ପାତୈଃ ନୂନଂ ଭଗବତଃ ପଦୈଃ ।**
**ଅନନ୍ୟ ପୁରୁଷ ଶ୍ରୀଭିଃ ହୀନା ଭୂଃ ହତ ସୌଭଗା ।।୨୧।।**

ଉତ୍ତର: ରାଜା ଭାବିଲେ ବୋଧହୁଏ ଧରଣୀ ରାଣୀ ସେ କୋଟି ବ୍ରହ୍ମାଣ୍ଡ ନାୟକ ଶ୍ରୀ କୃଷ୍ଣଙ୍କ ଚରଣ କମଳ ଚିହ୍ନରୁ ବଂଚିତ ହେଲେଣି । ପୃଥିବୀ ଏବେ ଅତ୍ୟନ୍ତ ହତଭାଗିନୀ । କୃଷ୍ଣ ବାସୁଦେବଙ୍କ ଲୀଳା ସମାପ୍ତ ହୋଇଗଲା ଭଳି ଲାଗୁଛି ।

ପ୍ରଶ୍ନ-୪୧: ହେ ଶୌନକଜୀ (ବ୍ରହ୍ମନ୍), ଯୁଧିଷ୍ଠିର ଏଇଭଳି ଗଭୀର ଚିନ୍ତାମଗ୍ନ ଥିବାବେଳେ ରାଜସଭାରେ କିଏ ଉପସ୍ଥିତ ହେଲେ ଜାଣ ?

**ସୂତ ଉବାଚ**

**ଇତି ଚିନ୍ତୟତଃ ତସ୍ୟ ଦୃଷ୍ଟ-ଅରିଷ୍ଟେନ ଚେତସା ।**
**ରାଜ୍ଞଃ ପ୍ରତ୍ୟାଗମଦ୍ ବ୍ରହ୍ମନ୍ ଯଦୁପୁର୍ଯ୍ୟାଃ କପିଧ୍ୱଜଃ ।।୨୨।।**

ଉତ୍ତର:କପିଧ୍ୱଜ ରଥ ଆରୋହଣ କରି ଦ୍ୱାରକାରୁ ଫେରିଆସିଲେ ଗାଣ୍ଡୀବଧାରୀ ଅର୍ଜୁନ ।

ପ୍ରଶ୍ନ-୪୨: ଧର୍ମରାଜ ଦେଖୁଛନ୍ତି-ଅର୍ଜୁନଙ୍କ ମୁଖମଣ୍ଡଳ ବିଷାଦଗ୍ରସ୍ତ । ଚକ୍ଷୁ ଲୋତକଯୁକ୍ତ । ଦେହରେ କ୍ଷତ୍ରିୟ ତେଜ ବିଲକୁଲ୍ ଅଦୃଶ୍ୟ । ଏପରି ଅବସ୍ଥାରେ ଅର୍ଜୁନ ତାଙ୍କୁ ଦଣ୍ଡବତ୍ ପ୍ରଣାମ କରିବା ଦେଖି କ'ଣ ପଚାରିଲେ ତାଙ୍କୁ ?

**ଯୁଧିଷ୍ଠିର ଉବାଚ**

**କଚ୍ଚିତ୍ ଆନର୍ତ୍ତପୁର୍ଯ୍ୟାଂ ନଃ ସ୍ୱଜନାଃ ସୁଖଂ ଆସତେ ।**
**ମଧୁ ଭୋଜ ଦଶାର୍ହ-ଆର୍ହ ସାତ୍ୱତ- ଅନ୍ଧକ ବୃଷ୍ଣୟଃ ।।୨୫ ।।**

ଉତ୍ତର:ପ୍ରିୟ ଭାଇ ଅର୍ଜୁନ, ଆମ ସ୍ୱଜନ ସମ୍ବନ୍ଧୀୟମାନେ ଦ୍ୱାରକାରେ (ଆନର୍ତ୍ତପୁର୍ଯ୍ୟାଂ) ମଙ୍ଗଳରେ ଅଛନ୍ତି ତ ? ମଧୁ, ଭୋଜ, ଦଶାର୍ହ, ଆର୍ହ, ସାତ୍ୱତ, ଅନ୍ଧକ ଓ ବୃଷ୍ଣି ବଂଶୀମାନଙ୍କର ସର୍ବ କୁଶଳ ତ ?

ପ୍ରଶ୍ନ-୪୩: ମାମା ବସୁଦେବଙ୍କର ଖବର ଭଲ ତ? ତାଙ୍କର ୭ ପତ୍ନୀ ଆମର ୭ ମାଇଁ ସେମାନଙ୍କ ପିଲାପିଲିଙ୍କୁ ଧରି କୁଶଳରେ ଅଛନ୍ତି ତ ? ଭଗବାନଙ୍କ ଅତି ପ୍ରିୟ ସଖା ଉଦ୍ଧବ, ନନ୍ଦ, ସୁନନ୍ଦ ଆଦି ପ୍ରଧାନ ଯଦୁବଂଶୀମାନେ ଖୁସୀରେ ଅଛନ୍ତି ତ ? ସର୍ବଶେଷରେ ବ୍ରାହ୍ମଣ ପ୍ରିୟ, ଭକ୍ତବତ୍ସଳ ଭଗବାନ ଗୋବିନ୍ଦଙ୍କ ବିଷୟରେ ସେ ଅର୍ଜ୍ଜୁନଙ୍କୁ କିଭଳି ଶବ୍ଦରେ ପ୍ରଶ୍ନ କଲେ?

**ଭଗବାନ୍ ଅପି ଗୋବିନ୍ଦୋ ବ୍ରହ୍ମଣ୍ୟୋ ଭକ୍ତ ବତ୍ସଳଃ ।**
**କଚ୍ଚିତ୍ ପୁରେ ସୁଧର୍ମାୟାଂ ସୁଖଂ ଆସ୍ତେ ସୁହୃଦ୍‌ବୃତଃ ।।୩୪।।**

ଉତ୍ତର: ପୁତ୍ର, ପୌତ୍ର ସୁହୃଦ୍ ପ୍ରିୟ ପରିଜନଙ୍କ ଗହଣରେ ଆମର ପ୍ରିୟ ଗୋବିନ୍ଦ ସୁଧର୍ମା ସଭାରେ ସକୁଶଳରେ ବିରାଜମାନ କରୁଛନ୍ତି ତ ?

ପ୍ରଶ୍ନ-୪୪: ଏତେ ପ୍ରଶ୍ନ ପଚାରିବା ପରେ ମଧ ଅର୍ଜ୍ଜୁନଙ୍କ ଦୂରବସ୍ଥା, ତେଜହୀନତାର କାରଣ କିପରି ଶବ୍ଦରେ ପଚାରିଲେ ?

**କଚ୍ଚିତ୍ ତ୍ୱଂ ବ୍ରାହ୍ମଣଂ ବାଳଂ ଗାଂ ବୃଦ୍ଧଂ ରୋଗିଣଂ ସ୍ତ୍ରିୟମ୍ ।**
**ଶରଣଂ ଉପସୃତଂ ସତ୍ତ୍ୱଂ ନ-ଅତ୍ୟାକ୍ଷୀଃ ଶରଣଂ ପ୍ରଦଃ ।।୪୧।।**

ଉତ୍ତର: କହିଲେ, "ହେ ଗାଣ୍ଡୀବଧାରୀ ଅର୍ଜୁନ, ତୁମେ ତ ନିରାଶ୍ରୟକୁ ସର୍ବଦା ନିଜ ବାହୁବଳରେ ଆଶ୍ରୟ ଦେଇଥାଅ ଶରଣାର୍ଥୀକୁ ଶରଣ ଦେଇପାର । ତେବେ କ'ଣ ତୁମେ କୌଣସି ଶରଣ ଆଶ୍ରୟ ପ୍ରାର୍ଥୀ ବ୍ରାହ୍ମଣ, ବାଳକ, ଗାଈ, ବୃଦ୍ଧ ରୋଗୀକୁ ଶରଣ ଦେଇପାରିନାହିଁ ? ସେଇ ସବୁ କାରଣରୁ ତୁମର ଏ ଦୁରବସ୍ଥା ହୋଇଛି କି ?"

# ଅଥ ୧୫ଶ ଅଧ୍ୟାୟଃ

## (ପରୀକ୍ଷିତଙ୍କୁ ସିଂହାସନ ଦେଇ ପାଣ୍ଡବମାନଙ୍କ ମହାପ୍ରସ୍ଥାନ )

### ସୂତ ଉବାଚ

ପ୍ରଶ୍ନ-୪୫: ଶ୍ରୀକୃଷ୍ଣଙ୍କର ପ୍ରିୟ ସଖା ଅର୍ଜୁନ କୃଷ୍ଣ ବିରହରେ ଅତ୍ୟନ୍ତ ଦୁଃଖିତ ଥିଲେ । ତାଙ୍କର ଶୁଷ୍କ ମୁଖ ଓ ନୀରବତା ଲକ୍ଷ୍ୟକରି ଧର୍ମରାଜଙ୍କ ଆଶଙ୍କା ଆହୁରି ବଢ଼ିଗଲା । ତେବେ କ'ଣ ପାଇଁ ଅର୍ଜୁନ ରାଜାଙ୍କୁ ଉତ୍ତର ଦେବାରେ ଅସମର୍ଥ ହେଲେ ?

**ଶୋକେନ ଶୁଷ୍ୟନ୍ ବଦନ ହୃତ୍-ସରୋଜଃ ହତପ୍ରଭଃ ।**
**ବିଭୁଂ ତଂ ଏବ-ଅନୁସ୍ମରନ୍ ନ ଅଶକ୍ନୋତ୍ ପ୍ରତିଭାଷିତୁମ୍ ॥୨॥**

ଉତ୍ତର:ଅର୍ଜୁନଙ୍କ ମନ୍ ଭଗବାନ (ବିଭୁଂ) ଙ୍କ ଲୀଳା,ଗୁଣ କୃପା ଇତ୍ୟାଦି ସ୍ମରଣରେ ସଂପୂର୍ଣ୍ଣ ବୁଡ଼ି ଯାଇଥିଲା । ସୁତରାଂ ଅର୍ଜୁନ ନୀରବ ରହିଗଲେ ।

ପ୍ରଶ୍ନ-୪୬:ଅର୍ଜୁନ ମନେ ପକାଇବାରେ ଲାଗିଥିଲେ ଶ୍ରୀକୃଷ୍ଣଙ୍କର ସଖ୍ୟ, ମୈତ୍ରୀ, ସୁହୃଦପଣିଆ ଓ ସାରଥ୍ୟ ଆଦି । ସେ ଚକ୍ଷୁର ଲୋତକ ପୋଛି ବାଷ୍ପ ଗଦ୍ ଗଦ କଣ୍ଠରେ ବଡ଼ଭାଇଙ୍କୁ କି ସମ୍ବାଦ ଦେଲେ ?

### ଅର୍ଜୁନ ଉବାଚ

**ବଂଚିତୋଽହଂ ମହାରାଜ ହରିଣା ବନ୍ଧୁରୂପିଣା ।**
**ଯେନ ମେଽପହୃତଂ ତେଜୋ ଦେବ ବିସ୍ମାପନଂ ମହତ୍ ॥୫॥**

ଉତ୍ତର: ମହାରାଜ, ଗୋବିନ୍ଦ ମୋତେ ଶେଷରେ ଠକିଦେଲେ । ତାଙ୍କ ପ୍ରଦତ୍ତ ଯେଉଁ ତେଜ ବା ବିଷ୍ଣୁ କଳା ଯୋଗୁଁ ବଡ଼ ବଡ଼ ଦେବତାମାନେ ମୋତେ ଦେଖି ଆଶ୍ଚର୍ଯ୍ୟ ହୋଇ ଡ଼ରୁଥିଲେ (ଦେବ ବିସ୍ମାପନଂ) ଗୋବିନ୍ଦ ମୋ ଠାରୁ ସେ ତେଜ ହରଣ କରି ନେଲେ ତାଙ୍କ ଇହଲୀଳା ସମ୍ବରଣ କରି । ଏବେ ମୁଁ ସଂପୂର୍ଣ୍ଣ ଶ୍ରୀହୀନ ଓ ସର୍ବହରା ସାମାନ୍ୟ ମଣିଷ ମାତ୍ର ।

ପ୍ରଶ୍ନ-୪୭: ପ୍ରାଣ ଚାଲିଗଲେ ଶରୀରର କିଛି ମୂଲ୍ୟ ନଥାଏ । ତାକୁ ଶବ ବୋଲି କହି ଲୋକେ ତାକୁ ପୋଡ଼ିବା ପୋତିବା ବ୍ୟବସ୍ଥା କରନ୍ତି । ବିଷ୍ଣୁ ତେଜ

ଗଲାପରେ ମୋର ଠିକ୍ ସେଇ ଅବସ୍ଥା ହୋଇଛି । ଯେଉଁ କୃଷ୍ଣଙ୍କର କୃପା ଯୋଗୁଁ ମୁଁ ଦ୍ରୁପଦଙ୍କ ସ୍ୱୟମ୍ବରରେ ଦ୍ରୌପଦୀଙ୍କୁ ଜିଣିପାରିଥିଲି, ଯୁଦ୍ଧରେ ଇନ୍ଦ୍ର ଆଦି ସକଳ ଦେବତାଙ୍କୁ ହରାଇ ଅଗ୍ନିଦେବଙ୍କୁ ଖାଣ୍ଡବ ବନ ଭକ୍ଷଣ ଲାଗି ଭେଟି ଦେଇପାରିଥିଲି, ଯାହାଙ୍କ ଆଲୌକିକ ଯୋଗ ଶକ୍ତି ଯୋଗୁଁ ଆମେ ଦୁର୍ବାସାଙ୍କ କୋପରୁ ରକ୍ଷା ପାଇଥିଲେ, ମୁଁ ଦେବ ଦେବ ମହାଦେବଙ୍କୁ, ମା ପାର୍ବତୀଙ୍କୁ ପ୍ରସନ୍ନ କରି ଅକ୍ଷୟ ତୁଣୀର ଓ ପାଶୁପତ ଅସ୍ତ୍ର ପ୍ରାପ୍ତ ହୋଇଥିଲି, ଆଜି ମୁଁ ସେହି ତେଜ ହରାଇ ବସିଛି । ଭାଇଙ୍କ ଆଗରେ କୃଷ୍ଣଙ୍କ ଅବସ୍ଥା ବିଷୟରେ ଅର୍ଜୁନ କ'ଣ ସବୁ କହିଲେ ?

**ରାଜନ୍ ତ୍ୱୟା ଅନୁପୃଷ୍ଟାନାଂ ସୁହୃଦାଂ ନଃ ସୁହୃତ୍ ପୁରେ ।**
**ବିପ୍ରଶାପ ବିମୂଢ଼ାନାଂ ନିଘ୍ନତାଂ ମୁଷ୍ଟିଭିଃ ମିଥଃ ।।୨୨।।**

ଉତ୍ତରଃ କହିଲେ, "ହେ ରାଜନ୍, ଆପଣ କୁଶଳ ମଙ୍ଗଳ ପଚାରୁଥିବା ଦ୍ୱାରକାର ସୁହୃତ ସମ୍ବନ୍ଧୀ ମାନେ ଆଉ ପ୍ରାୟ ଏ ସଂସାରରେ ନାହାନ୍ତି । ମୁନି,ଋଷି ଓ ବ୍ରାହ୍ମଣ ଶାପଗ୍ରସ୍ତ ହୋଇ ଯଦୁବଂଶୀମାନେ ବାରୁଣୀ ପାନ କଲେ । ପରସ୍ପର ମରାମରି ହୋଇ ପ୍ରାୟ ସମସ୍ତେ ନଷ୍ଟ ହୋଇଗଲେ । ଏବେ ବଂଚିଛନ୍ତି କେବଳ ୪-୫ ଜଣ ଯଦୁବଂଶୀ ବୀର ।"

ପ୍ରଶ୍ନ-୪୮ଃ ହୁଏତ ଧର୍ମରାଜ ପ୍ରଶ୍ନ କରିପାରନ୍ତି ସେମାନେ ଏପରି ବୁଦ୍ଧିଭ୍ରଷ୍ଟ ହେଲେ କିପରି ? ସେମାନେ ସମସ୍ତେ ଗୋବିନ୍ଦ ଆଶ୍ରିତ ପରମ ଭକ୍ତ ଥିଲେ ! ଅର୍ଜୁନ କହିଲେ- ଜ୍ୟେଷ୍ଠ ଭ୍ରାତା, ଏସବୁ ତାଙ୍କରି ମଣିଷ ଅବୁଝା ଦିବ୍ୟ ଲୀଳା । ଜଳ ମଧ୍ୟରେ ଛୋଟ ଜୀବଟିକୁ ବଡ଼ ଜନ୍ତୁଟିଏ ଗିଳିପକାଏ । ବଳବାନ ପ୍ରାଣୀ ଦୁର୍ବଳ ପ୍ରାଣୀକୁ ଆତ୍ମସାତ୍ କରେ । ସେହି ପ୍ରକାରେ ବଳବାନ ଯଦୁବଂଶୀଙ୍କ ସାହାଯ୍ୟରେ ଭଗବାନ କୃଷ୍ଣ ପ୍ରଥମେ ଅସୁର, ରାକ୍ଷସ ପ୍ରକୃତିର ଲୋକଙ୍କୁ ବିନାଶ କଲେ । ଶେଷରେ ନିଜ ଅଚିନ୍ତ୍ୟ ଶକ୍ତି ବଳରେ ବିପ୍ରଶାପ ଦ୍ୱାରା ଯଦୁବଂଶୀଙ୍କୁ ମଧ୍ୟ ସଂହାର କରି ସେମାନଙ୍କ ଦିବ୍ୟ ଆତ୍ମାମାନଙ୍କୁ ସାଙ୍ଗରେ ନେଇ ଗୋଲୋକ ପ୍ରସ୍ଥାନ କଲେ । ଏଭଳି ବର୍ଣ୍ଣନା କଲାବେଳେ ଅର୍ଜୁନ କଅଣ ସବୁ କରୁଥିଲେ ?

**ସୂତ ଉବାଚ**

**ଏବଂ ଚିନ୍ତୟତୋ ଜିଷ୍ଣୋଃ କୃଷ୍ଣପାଦ ସରୋରୁହମ୍ ।**
**ସୌହାର୍ଦ୍ଦେନ-ଅତି ଗାଢ଼େନ ଶାନ୍ତା-ଆସୀତ୍ ବିମଳା ମତିଃ ।।୨୮।।**

ଉତ୍ତରଃହଁ ଅର୍ଜ୍ଜୁନ ସେତେବେଳେ ଗୋବିନ୍ଦଙ୍କର ଚରଣ କମଳ ଦ୍ୱୟର ଚିନ୍ତନ କରୁଥିଲେ । ଗଭୀର ପ୍ରେମରେ ଶ୍ରୀକୃଷ୍ଣ ଚରଣ କମଳ ଚିନ୍ତନ କରିବାରୁ ତାଙ୍କର ମନ ଓ ବୁଦ୍ଧି ଉଭୟ ନିର୍ମଳ ହୋଇଗଲା । ସେ ପରମ ଶାନ୍ତି ପ୍ରାପ୍ତ ହେଲେ । ମନେ ପଡ଼ିଲା ସଂଗ୍ରାମ ଭୂମିରେ ଶ୍ରବଣ କରିଥିବା ଗୀତା ଜ୍ଞାନ ଉପଦେଶ । ଶେଷରେ ଦୁଃଖ ଶୋକ ବିଷାଦ ସବୁ ଉଭେଇ ଗଲା ।

ପ୍ରଶ୍ନ-୪୯ଃ ନିଜ ପାରିଷଦ ମାନଙ୍କ ସହିତ ଗୋବିନ୍ଦଙ୍କ ସ୍ୱଧାମ ଗମନ ସମ୍ବାଦ ଶ୍ରବଣ କରି ଧର୍ମରାଜ କ'ଣ ନିଶ୍ଚୟ (ମତିଂ ଚକ୍ରେ ) କଲେ ?

**ନିଶମ୍ୟ ଭଗବଦ୍ ମାର୍ଗଂ ସଂସ୍ଥାଂ ଯଦୁକୁଳସ୍ୟ ଚ ।**
**ସ୍ୱଃ ପଥାୟ ମତିଂ ଚକ୍ରେ ନିଭୃତ-ଆତ୍ମା ଯୁଦ୍ଧିଷ୍ଠିରଃ ।।୩୨।।**

ଉତ୍ତରଃ ମହାପ୍ରସ୍ଥାନ/ସ୍ୱର୍ଗାରୋହଣ ପାଇଁ ପ୍ରସ୍ତୁତ ହେଲେ ।

ପ୍ରଶ୍ନ-୫୦ଃ ଯଦୁକୁଳ ସଂହାରକୁ ଧର୍ମରାଜ କ'ଣ ଭାବି ଏତେ ସହଜ ଭାବରେ ଗୋବିନ୍ଦଙ୍କର ଲୀଳା ସମ୍ବରଣ କର୍ମକୁ ସଂପୂର୍ଣ୍ଣ ନିର୍ଦ୍ଦୋଷ ନିଷ୍ପାପ ବୋଲି ଗ୍ରହଣ କରିନେଲେ ?

**ଯୟା-ଅହରଦ୍ ଭୁବୋ ଭାରଂ ତାଂ ତନୁ ବିଜହୌ-ଅଜଃ ।**
**କଣ୍ଟକଂ କଣ୍ଟକେନ୍-ଇବ ଦ୍ୱୟଂ ଚ-ଅପି-ଈଶିତୁଃ ସମମ୍।।୩୪।।**

ଉତ୍ତରଃ ପାଦରେ କଣ୍ଟାଟିଏ ଫୁଟିଲେ ଲୋକେ ଆଉ ଗୋଟିଏ କଣ୍ଟା ବାହରୁ ଆଣି ତା ଦ୍ୱାରା ଫୁଟିଥିବା କଣ୍ଟାକୁ ବାହାର କରନ୍ତି । ଶେଷରେ ଦୁଇ କଣ୍ଟାକୁ ଫିଙ୍ଗିବାକୁ ହୁଏ । ନଚେତ ଏ ନୂଆ କଣ୍ଟା ବି ପୀଡ଼ାର କାରଣ ହୋଇପାରେ । ଯୁଦ୍ଧିଷ୍ଠିର ବୁଝିଗଲେ ଯେ ଗୋବିନ୍ଦଙ୍କ ଯଦୁକୁଳ ସଂହାର କରିବା ମଧ୍ୟ ସେହିଭଳି ଧର୍ମରକ୍ଷା କର୍ଯ୍ୟର ଅନ୍ତର୍ଗତ ।

ପ୍ରଶ୍ନ-୫୧ଃ ମହାପ୍ରସ୍ଥାନରେ ଯିବା ପୂର୍ବରୁ ଧର୍ମରାଜ ହସ୍ତିନା ସିଂହାସନରେ (ଗଜାହ୍ୱୟେ) କାହାକୁ ଅଭିଷେକ କଲେ ?

**ସ୍ୱରାଟ୍ ପୌତ୍ରଂ ବିନୟିନଂ ଆତ୍ମନଃ ସୁସମଂ ଗୁଣୈଃ ।**
**ତୋୟନୀବ୍ୟାଃ ପତିଂ ଭୂମେଃ ଅଭ୍ୟଷିଂଚଦ୍ ଗଜ-ଆହ୍ୱୟେ ।।୩୮।।**

ଉତ୍ତରଃତାଙ୍କ ପୌତ୍ର ଅଭିମନ୍ୟୁଙ୍କ ପୁତ୍ର ପରୀକ୍ଷିତ ଅତ୍ୟନ୍ତ ବିନୟୀ ଥିଲେ । ତାଙ୍କଭଳି ସର୍ବଗୁଣ ସମ୍ପନ୍ନ, ଧାର୍ମିକ ଓ ବୈରାଗ୍ୟବାନ ମଧ୍ୟ ଥିଲେ । ଚତୁର୍ଦ୍ଦିଗରେ

ସମୁଦ୍ର ଘେରାହୋଇ ଯେଉଁ ଅଖଣ୍ଡ ପୃଥିବୀ ତାଙ୍କର ଶାସିତ ରାଜ୍ୟର ସୀମା ନିର୍ଦ୍ଧାରଣ କରୁଥିଲା ତାର ଶାସନ ଭାର ସୁଯୋଗ୍ୟ ଦାୟାଦ ପରୀକ୍ଷିତଙ୍କୁ ସମର୍ପଣ କରି ଦେଲେ ।

ପ୍ରଶ୍ନ-୫୨: ଦ୍ୱାରକା ସେତେବେଳକୁ ସମୁଦ୍ର ଗର୍ଭରେ ଲୀନ ହୋଇସାରିଥିଲା । ସୁତରାଂ ଉଗ୍ରସେନଙ୍କ ଶାସିତ ଆନର୍ତ୍ତ ରାଷ୍ଟ୍ରର ରାଜଧାନୀ ମଥୁରାରେ ସ୍ଥାପିତ ହେଲା । ତେବେ ମଥୁରା ସିଂହାସନ କାହା ହସ୍ତରେ ଧର୍ମରାଜ ଯୁଧିଷ୍ଠିର ସମର୍ପଣ କଲେ ?

**ମଥୁରାୟାଂ ତଥା ବଜ୍ରଂ ଶୂରସେନ ପତିଂ ତତଃ ।**
**ପ୍ରାଜାପତ୍ୟାଂ ନିରୂପ୍ୟ-ଇଷ୍ଟିଂ ଅଗ୍ନୀନ୍ ଅପୀବତ୍ ଈଶ୍ୱରଃ ॥୩୯॥**

ଉତ୍ତର: ଶ୍ରୀକୃଷ୍ଣଙ୍କ ପୁତ୍ର ପ୍ରଦ୍ୟୁମ୍ନ । ପ୍ରଦ୍ୟୁମ୍ନଙ୍କ ପୁତ୍ର ଅନିରୁଦ୍ଧ । ଅନିରୁଦ୍ଧଙ୍କ ପୁତ୍ର ବଜ୍ରନାଭ । ସେହି ବଜ୍ରନାଭଙ୍କୁ ମଥୁରା ସିଂହାସନରେ ଅଭିଷିକ୍ତ କଲେ । ଅବଶେଷରେ ସ୍ୱୟଂ ପ୍ରାଜାପତ୍ୟ ଯଜ୍ଞ ଅନୁଷ୍ଠାନ କରି ଆହବନୀୟ ଅଗ୍ନିଙ୍କୁ ନିଜ ଆତ୍ମାରେ ଲୀନ କଲେ । ଏହି ପରି ସେ ସମସ୍ତ ଗୃହସ୍ଥ ଆଶ୍ରମ କର୍ମ ସମାପନ କରି ବୀର ସନ୍ନ୍ୟାସ ଗ୍ରହଣ କଲେ । ମହାପ୍ରସ୍ଥାନ ଯାତ୍ରାରେ ବାହାରିଲେ ।

ପ୍ରଶ୍ନ-୫୩:ଗୃହସ୍ଥାଶ୍ରମର ବେଶ ପୋଷାକ ଓହ୍ଲାଇ ଦେଲେ । ପ୍ରାଣାୟାମ ଦ୍ୱାରା ବହିର୍ମନକୁ ଅନ୍ତର୍ମୁଖୀ କରିଦେଲେ । ସନ୍ନ୍ୟାସ ବେଶ ପୋଷାକ ଧାରଣ କଲେ । ଅନ୍ନ ଜଳ ତ୍ୟାଗ କରି ମୌନ ବ୍ରତ ଅବଲମ୍ବନ କଲେ । ଗୋଟିଏ ମୂର୍ଖ, ପାଗଳ ପିଶାଚ ଭଳି ଦିଶୁଥିଲେ ସେ ଦିନର ମହାରାଜା ଯୁଧିଷ୍ଠିର । ଗୃହ ତ୍ୟାଗ କଲା ପରେ ରାଜା ଗଲେ କୁଆଡ଼େ ?

**ଉଦୀଚୀଂ ପ୍ରବିବେଶ-ଆଶାଂ ଗତପୂର୍ବାଂ ମହାତ୍ମଭିଃ ।**
**ହୃଦି ବ୍ରହ୍ମ ପରଂ ଧ୍ୟାୟନ୍ ନ-ଆବର୍ତ୍ତେତ ଯତୋ ଗତଃ ॥୪୪॥**

ଉତ୍ତର: କୁରୁବଂଶର ପୂର୍ବ ପୂର୍ବର ମହାପୁରୁଷମାନେ କେବେହେଲେ ଗୃହରେ ପଡ଼ି ପଡ଼ି ପ୍ରାଣ ତ୍ୟାଗ କରନ୍ତି ନାହିଁ । ଉତ୍ତର ଦିଗ ସ୍ଥିତ ଦେବତାତ୍ମା ହିମାଳୟରେ ଦେହ ତ୍ୟାଗ କରିବା ତାଙ୍କ ବଂଶଗତ ବିଧି ପରମ୍ପରା । ସୁତରାଂ ହୃଦୟରେ ଶ୍ରୀ ହରିଙ୍କ ରୂପ ଧ୍ୟାନ କରିକରି ସେଇ ହିମାଳୟ ତୁଷାର ରାଶିରେ ପ୍ରବେଶ କଲେ । ଯେଉଁଠିକି ଗଲେ ଆଉ କେହି ଲେଉଟି ଆସେନା ।

ପ୍ରଶ୍ନ-୫୪:ଯୁଦ୍ଧିଷ୍ଠିରଙ୍କ ସହ ପତ୍ନୀ ଦ୍ରୌପଦୀ ଓ ଅନ୍ୟ ଚାରିଜଣ ପାଣ୍ଡବ ତାଙ୍କର ଅନୁଗମନ କଲେ । ସେମାନେ ସମସ୍ତେ କୃଷ୍ଣପ୍ରାପ୍ତ ହେଲେ । ମହାତ୍ମା ବିଦୁରଙ୍କ ଅନ୍ତିମ ଗତି କ'ଣ ହେଲା ?

**ବିଦୁରୋଽପି ପରିତ୍ୟଜ୍ୟ ପ୍ରଭାସେ ଦେହଂ ଆତ୍ମବାନ୍**
**କୃଷ୍ଣ-ଆବେଶେନ ତଦ୍‌ଚିତ୍ତଃ ପିତୃଭିଃ ସ୍ୱକ୍ଷୟଂ ଯମୌ ॥୪୯॥**

ଉତ୍ତର:ବିଦୁରଜୀ କୃଷ୍ଣଲୀଳା ଚିନ୍ତନ କରି କରି ପ୍ରଭାସ ତୀର୍ଥକ୍ଷେତ୍ରରେ ନିଜ ଦେହ ତ୍ୟାଗ କରିଦେଲେ । ପିତୃଲୋକରୁ ଓ ଯମଲୋକରୁ ତାଙ୍କୁ ପାଛୋଟି ନେବାକୁ ତାଙ୍କ ପୂର୍ବପୁରୁଷଗଣ ଓ ଯମ ପାର୍ଷଦ ଗଣ ବ୍ରହ୍ମଶାପର ଅବଧି ସମାପ୍ତ ହେଲା । ପାଣ୍ଡବ ମହାରାଣୀ ଦ୍ରୌପଦୀ କୃଷ୍ଣଲୀଳା ଚିନ୍ତନ କରି କରି ସେହି ହିମାଳୟରେ ଦେହ ଛାଡ଼ିଲେ । ତାଙ୍କର ଜୀବନରେ ମଧ୍ୟ କୃଷ୍ଣ ପ୍ରେମ ପ୍ରାପ୍ତି ଘଟିଲା ।

# ଅଥ ୧୬ଶ ଅଧ୍ୟାୟଃ

## (ପରୀକ୍ଷିତଙ୍କ ଦିଗ୍‌ବିଜୟ ଯାତ୍ରା ଓ କଳିଙ୍କ ସହ ଭେଟ)

### ସୂତ ଉବାଚ

ପ୍ରଶ୍ନ-୫୫:ହେ ଶୌନକଜୀ, ପାଣ୍ଡବମାନଙ୍କ ମହାପ୍ରୟାଣ ପରେ ରାଜା ପରୀକ୍ଷିତ ରାଜ୍ୟ ସୁଶାସନରେ ମନ ଦେଲେ । ସେ ତାଙ୍କର ଅନନ୍ୟ କୃଷ୍ଣଭକ୍ତିକୁ ସମ୍ବଳ କଲେ । ସେ ନିଜେ ବ୍ରାହ୍ମଣ ବୈଷ୍ଣବଙ୍କ ଅନୁଶାସନରେ ରହିଲେ । ପୂର୍ବେ ଜ୍ୟୋତିଷୀମାନେ ତାଙ୍କ ବିଷୟରେ ଯାହା ଭବିଷ୍ୟବାଣୀ କରିଥିଲେ ସବୁ କଥା ସତ ହେଲା । ସେ ବିରାଟ ରାଜ୍ୟର ଉତ୍ତର କୁମାରଙ୍କ କନ୍ୟା ମାମୁଁ ଝିଅ ଭଉଣୀ ଇରାବତୀକୁ ବିବାହ କଲେ । ତାଙ୍କର ଜନ୍ମେଜୟ ଆଦି ଚାରିପୁତ୍ର ହେଲେ । କୃପାଚାର୍ଯ୍ୟଙ୍କୁ (ଶାରଦ୍‌ବତଂ) ଗୁରୁ ପଦରେ ଗ୍ରହଣ କରି ସେ କିକି ଯଜ୍ଞାନୁଷ୍ଠାନ କଲେ ?

**ଆଜହାର-ଅଶ୍ୱମେଧାନ୍ ତ୍ରୀନ୍ ଗଙ୍ଗାଂୟାଂ ଭୂରି ଦକ୍ଷିଣାନ୍ ।**
**ଶାରଦ୍‌ବତଂ ଗୁରୁଂ କୃତ୍ୱା ଦେବା ଯତ୍ର-ଅକ୍ଷିଗୋଚରାଃ ॥୩॥**

ଉତ୍ତର:ଗଙ୍ଗାକୂଳରେ ୩ ଅଶ୍ୱମେଧ ଯଜ୍ଞ ସଂପନ୍ନ କଲେ । ପ୍ରତ୍ୟେକ ଯଜ୍ଞରେ ବ୍ରାହ୍ମଣ, ବୈଷ୍ଣବଙ୍କୁ ତୃପ୍ତ କଲାଭଳି ଯଥେଷ୍ଟ ଦକ୍ଷିଣା ଦେଇଥିଲେ ରାଜା ପରୀକ୍ଷିତ । ସେ ସବୁ ଯଜ୍ଞରେ ଦେବତାମାନେ ସ୍ୱୟଂ ପ୍ରକଟ ହୋଇ ନିଜ ନିଜର ଯଜ୍ଞ ଭାଗ ଗ୍ରହଣ କରିଥିଲେ ।

ପ୍ରଶ୍ନ-୫୬:ଏଣେ ବ୍ରଜଧାମରେ ଉଦ୍ଧବଜୀ ଶ୍ରୀମଦ୍ଭାଗବତ ପାରାୟଣ ପ୍ରବଚନ ସଂକଳ୍ପ କଲେ । କଳି ଯୁଗ ସେଥିରେ ବିଘ୍ନ କରିବା ସମ୍ଭାବନା ଥିଲା । ସୁତରାଂ ଉଦ୍ଧବଜୀଙ୍କ ଆଦେଶରେ ରାଜା ପରୀକ୍ଷିତ ଦିଗ୍‌ବିଜୟରେ ବାହାରିଲେ । କଳିଯୁଗ ପତିତ ଶୂଦ୍ର ରାଜା ରୂପ ଧରି ଦଣ୍ଡରେ ଗୋଟିଏ ଦୁଃଖାର୍ତ୍ତ ଗାଈ ଓ ଗୋଟିଏ ଗୋଡ଼ରେ ଚାଲୁଥିବା ବୃଷଭକୁ ପାଦପ୍ରହାର କରୁଥିବା ଦେଖିଲେ । ଏଭଳି ଘୋର ଅନ୍ୟାୟ ସହିନପାରି ନିଜ ଓଜ (ଯୋଗ ଶକ୍ତି) ବଳରେ କଳିଙ୍କୁ ଦମନ କଲେ । ପରମ କୃଷ୍ଣଭକ୍ତ କଳିଯୁଗକୁ ଦଣ୍ଡଦେବାକୁ ଚାହିଁଲେ କାହିଁକି ?

**ଶୌନକ ଉବାଚ**

**କସ୍ୟ ହେତୋଃ ନିଜଗ୍ରାହ କଳିଂ ଦିଗ୍‌ବିଜୟେ ନୃପଃ ।**
**ନୃଦେବ ଚିହ୍ନ ଧୃକ୍ ଶୂଦ୍ରକୋ ଅସୌ ଗାଂ ଯଃ ପଦା-ଅହନଦ୍ ॥୫॥**

ଉତ୍ତର: ଗୋ ମିଥୁନଙ୍କୁ ଗୋଇଠା ମାରିବା କ'ଣ ସାନ ଅପରାଧ ?

ପ୍ରଶ୍ନ-୫୭: ସତ୍ୟ, ତ୍ରେତୟା, ଦ୍ୱାପର କଳି ସକଳ ଯୁଗରେ ହରିକଥା ଶ୍ରବଣ କୀର୍ତ୍ତନରେ ମନୁଷ୍ୟ ଜୀବନ କଟାଇବା କଥା । ହରି ଭଜନ ଛାଡ଼ି ଅନ୍ୟ ଯେକୌଣସି କର୍ମ କରିବା ବ୍ୟର୍ଥ କର୍ମ ଅଟେ । କଳିଯୁଗରେ କେଉଁ କାରଣରୁ ଲୋକମାନେ ହରିଭଜନ କରିବାରେ ଅସମର୍ଥ ହୁଅନ୍ତି ।

**ମନ୍ଦସ୍ୟ ମନ୍ଦ ପ୍ରଜ୍ଞସ୍ୟ ବୟୋ ମନ୍ଦ-ଆୟୂଷଃ ଚ ବୈ ।**
**ନିଦ୍ରୟା ହ୍ରିୟତେ ନକ୍ତଂ ଦିବା ଚ ବ୍ୟର୍ଥ କର୍ମଭିଃ ॥୯॥**

ଉତ୍ତର: ଲୋକେ ଅଳସୁଆ ଓ ତମୋଗୁଣୀ ହୋଇଥିବା ହେତୁ ସେମାନଙ୍କ ଆୟୁଷ ଅଳ୍ପ । ବୁଦ୍ଧି ବିଷୟ ଚିନ୍ତନ ଓ ଭୋଗ-ସଂଗ୍ରହ ଅଭିମୁଖୀ । ସ୍ୱଭାବ ଦୂଷିତ ସଂସ୍କାରରେ ଭରପୂର । ଏଭଳି ଅବସ୍ଥାରେ କଳିଯୁଗରେ ଲୋକେ ରାତି କଟାନ୍ତି ଆରାମରେ ଶୋଇବାରେ ଓ ଦିନ କଟାନ୍ତି ବିଳାସ ସାମଗ୍ରୀ ପାଇବା ପାଇଁ ବ୍ୟର୍ଥକର୍ମ କରି କରି । ହରିଭଜନ କରିବାକୁ ସମୟ, ସୁଯୋଗ କାହିଁ ?

ପ୍ରଶ୍ନ-୫୮: ରାଜା ପରୀକ୍ଷିତ ତାଙ୍କ ଶାସନ କାଳରେ କେଉଁ କେଉଁ ଦେଶ ସବୁ ଜୟ କଲେ ?

**ଭଦ୍ରାଶ୍ୱଂ କେତୁମାଳଂ ଚ ଭାରତଂ ଚ-ଉତ୍ତରାନ୍ କୁରୂନ୍ ।**
**କିଂ ପୁରାଷାଦୀନି ବର୍ଷାଣି ବିଜିତ୍ୟ ଜଗୃହେ ବଳିମ୍ ।।୧୨।।**

ଉତ୍ତର:ଭଦ୍ରାଶ୍ୱ, କେତୁମାଳ, ଭାରତ, ଉତ୍ତର କୁରୁ ଓ କିଂ ପୁରୁଷ ଆଦି ଜୟ କଲେ । ସେଠାକାର ରାଜାମାନେ ଅନେକ ଧନ ସମ୍ପତ୍ତି ଉପହାର ସ୍ୱରୂପ ଦେଇଥିଲେ ରାଜା ପରୀକ୍ଷିତଙ୍କୁ ।

ପ୍ରଶ୍ନ-୫୯: ସେ ବିଜିତ ରାଜାମାନଙ୍କଠାରୁ ନିଜ ପୂର୍ବ ପୁରୁଷମାନଙ୍କ ବିଷୟରେ କ'ଣ ସବୁଶୁଣିବାକୁ ପାଇଲେ ?

**ତତ୍ର ତତ-ଉପାଶୃଣ୍ୱାନଃ ସ୍ୱ ପୂର୍ବେଷାଂ ମହାତ୍ମନାମ୍ ।**
**ପ୍ରଗୀୟମାଣଂ ଚ ଯଶଃ କୃଷ୍ଣ ମାହାତ୍ମ୍ୟ ସୂଚକମ୍ ।।୧୩।।**

ଉତ୍ତର: ପୂର୍ବପୁରୁଷମାନଙ୍କ ଉଜ୍ଜ୍ୱଳ ଯଶ କୀର୍ତ୍ତି ସବୁ ଶୁଣି ରାଜା ପରୀକ୍ଷିତ ବହୁତ ପ୍ରସନ୍ନ ହେଲେ । କାରଣ ସେସବୁ କଥା ଶ୍ରୀକୃଷ୍ଣଙ୍କ ଭକ୍ତିସୂଚକ ଥିଲା ।

ପ୍ରଶ୍ନ-୬୦: ରାଜା ଦିଗ୍‌ବିଜୟ ଯାତ୍ରାରେ ଥିବା ବେଳେ ଦିନେ କି ଅଦ୍‌ଭୁତ ଆଶ୍ଚର୍ଯ୍ୟଜନକ ଘଟଣା ଘଟିବା ଦେଖିଲେ ?

**ଧର୍ମଂ ପଦା-ଏକେନ ଚରନ୍ ବିଚ୍ଛାୟାଂ ଉପଲଭ୍ୟ ଗାମ୍ ।**
**ପୃଚ୍ଛତି ସ୍ମ-ଅଶ୍ରୁବଦନାଂ ବିବତ୍ସାଂ ଇବ ମାତରଂମ୍ ।।୧୮।।**

ଉତ୍ତର:ରାଜା ନିଜ ଯୋଗବଳରେ ଦେଖିପାରିଲେ ସ୍ୱୟଂ ଧର୍ମଦେବ ବୃଷଭ ରୂପ ଧରିଛନ୍ତି । ତପ, ଶୌଚ, ଦୟା, ଓ ସତ୍ୟ, ଧର୍ମଙ୍କର, ୪ ପାଦ ବୋଲି ଶାସ୍ତ୍ରରୁ ସେ ଜାଣନ୍ତି କିନ୍ତୁ ଏଠାରେ ଧର୍ମଙ୍କର କେବଳ ଗୋଟିଏ ପାଦ ସତ୍ୟ ରୂପରେ ଦୃଶ୍ୟମାନ । ପୁଣି ମା ଧରଣୀ (ଗାମ୍) ଗୋଟିଏ ବାଛୁରୀ ହରା ଗାଈ ଭଳି ଲୋତକ ବିସର୍ଜନ କରୁଛି ମହା ଦୁଃଖିନୀ ହୋଇ । ଧର୍ମଦେବ ଗୋମାତାଙ୍କ ଦୁଃଖ ସହି ନପାରି ତାଙ୍କୁ ସମବେଦନା ମୂଳକ ପ୍ରଶ୍ନ ସବୁ ପଚାରୁଥାନ୍ତି ।

ପ୍ରଶ୍ନ-୬୧: ଧର୍ମ ପଚାରିଲେ-ହେ କଲ୍ୟାଣୀ, ତୁମର ଦୁଃଖର କାରଣ କ'ଣ ?. ତୁମେ ମୋ (ଧର୍ମର) ଦୁରବସ୍ଥା ପାଇଁ ଦୁଃଖିନୀ କି ? କାରଣ ମୋର ତପ,ଶୌଚ,ଦୟାରୂପୀ ତିନିପାଦ ଏ ଯୁଗରେ ଲୁପ୍ତ ହୋଇଯାଇଛନ୍ତି । ଏଯୁଗର ରାଜାମାନେ କ୍ଷତ୍ରିୟ ତେଜହୀନ । ପୁଣି ଶୂଦ୍ର ବର୍ଣ୍ଣର । ରାଜ୍ୟରେ ଯଜ୍ଞ,ଦାନ ଆଦି ଲୁପ୍ତ ପ୍ରାୟ । ସ୍ୱର୍ଗରେ ଦେବତାମାନେ ବଳି ଯଜ୍ଞଭାଗ ନପାଇ ଦୁଃଖିତ । ବ୍ରାହ୍ମଣ,

ବୈଷ୍ଣବମାନେ ଦୁଷ୍ଟମାନଙ୍କ ଦ୍ୱାରା ସଦା ପୀଡ଼ିତ । । ଲୋକ ଅଧର୍ମରେ ଚଳିବାକୁ କଟିବଦ୍ଧ । ତେବେ ତୁମେ କ'ଣ ଶ୍ରୀକୃଷ୍ଣଙ୍କ ଲୀଳା ସ୍ମରଣରେ ବିଷାଦ ଗ୍ରସ୍ତ କି ? ଏସବୁ ପ୍ରଶ୍ନ ଧୈର୍ଯ୍ୟର ସହିତ ଶ୍ରବଣ କରି ମା' ଧରିତ୍ରୀ କି ଉତ୍ତର ଦେଲେ ?

**ଧରଣୀ ଉବାଚ**

**ଭବାନ୍ ହି ବେଦ ତଦ୍ ସର୍ବଂ          ଯଦ୍ ମାଂ ଧର୍ମ-ଅନୁପୃଚ୍ଛସି ।**
**ଚତୁର୍ଭି ବର୍ତସେ ଯେନ          ପାଦୈଃ ଲୋକ ସୁଖ-ଆବହୈଃ ।।୨୫।।**

ଉତ୍ତର:ଧର୍ମ ବୃଷଭଙ୍କୁ ଧରଣୀ ମାତା କହିଲେ - ମୋତେ ଯାହାସବୁ ଆପଣ ପ୍ରଶ୍ନ କଲେ ସେ ସବୁ ତ ଆପଣ ସ୍ୱୟଂ ଜାଣନ୍ତି । ମନୁଷ୍ୟକୁ ସୁଖୀ କରିବା ପାଇଁ ଆପଣ ଯେଉଁସବୁ ଗୁଣ ଯଥା- ପବିତ୍ରତା, ଦୟା, କ୍ଷମା, ତ୍ୟାଗ, ସନ୍ତୋଷ ସରଳତା, ସଂଯମ, ଧୈର୍ଯ୍ୟ ଆଦି ଧାରଣ କରିଥାନ୍ତି ଆଜି ସେ ସବୁ କାହାନ୍ତି ? ସମସ୍ତେ ଅନାଚାର , ଅତ୍ୟାଚାର, ପାପାଚାରରେ ଆକଣ୍ଠ ମଗ୍ନ । ସଦା ଦୁଃଖୀ ସକଳ ସନ୍ତାନଗଣ ମୋର । ଏଥିରେ ମୁଁ ଦୁଃଖିନୀ ହେବିନି ଆଉ ହେବ କିଏ ?

ପ୍ରଶ୍ନ-୬୨ :ବସୁମାତାଙ୍କର ଦୁଃଖ କାହାପାଇଁ ବୋଲି ସେ ଧର୍ମ ଦେବଙ୍କୁ କହିଲେ ?

**ଆତ୍ମାନଂ ଚ-ଅନୁଶୋଚାମି          ଭବନ୍ତଂ ଚ-ଅମର -ଉତ୍ତମମ୍ ।**
**ଦେବାନ୍ ପିତୃନ୍ ଋଷିନ୍ ସାଧୂନ୍ ସର୍ବାନ୍ ବର୍ଣ୍ଣାନ୍ ତଥା-ଆଶ୍ରମାନ୍ ।।୩୧।।**

ଉତ୍ତର: ଧରଣୀ କହିଲେ - ହେ ଧର୍ମଦେବ, କେବଳ ମୁଁ ମୋ ନିଜ ପାଇଁ ଦୁଃଖିତା ନୁହେଁ । ବରଂ ଆପଣଙ୍କ ପାଇଁ, ଇନ୍ଦ୍ର ଆଦି ସକଳ ଦେବୀ ଦେବତା, ପିତୃଲୋକବାସୀ, ମର୍ତ୍ତ୍ୟଲୋକର ଋଷି ସାଧୁ ସମାଜ ତଥା ୪ ବର୍ଣ୍ଣ-୪ ଆଶ୍ରମର ପ୍ରଜାଙ୍କ ପୀଡ଼ା ହିଁ ମୋ ଦୁଃଖର, ଶୋକର ଓ ଲୋତକ ବିସର୍ଜନର କାରଣ ।

ପ୍ରଶ୍ନ-୬୩: ହେ ଧର୍ମଦେବ, ଆପଣଙ୍କ ଦୁଃଖ ଦୂରକରିବାକୁ ଧର୍ମରକ୍ଷକ ଶ୍ୟାମସୁନ୍ଦର କୃଷ୍ଣ ଅବତାର ଗ୍ରହଣ କଲେ । ମୋ ଉପରେ ଖାଲି ପାଦରେ ଚାଲିବା ବେଳର ସ୍ପର୍ଶ ସୁଖ କ'ଣ ମୁଁ ଭୁଲି ପାରିବି ? ଆଜି ତାଙ୍କର ବିରହ ମୋତେ ସବୁଠୁ ବେଶୀ ବାଧୁଛି, ଧର୍ମଦେବତା । ଦୁହେଁ ଏହିଭଳି ପରସ୍ପରକୁ ସମବେଦନା ଜଣାଇ ବାର୍ତ୍ତାଳାପ କଲାବେଳେ କ'ଣ ଘଟିଲା ?

**ତୟୋଃ ଏବଂ କଥୟତୋଃ          ପୃଥିବୀ ଧର୍ମୟୋଃ ତଦା ।**
**ପରୀକ୍ଷିତ୍ ନାମରାଜର୍ଷି          ପ୍ରାପ୍ତଃ ପ୍ରାଚୀଂ ସରସ୍ୱତୀମ୍ ।।୩୬।।**

ଉତ୍ତରଃ ଏମାନେ ପୂବ ବାହିନୀ ସରସ୍ୱତୀ ନଦୀ କୂଳରେ ଏଭଳି ବାର୍ତ୍ତାଳାପ କଲାବେଳେ ହଠାତ୍ ସେଠାରେ ପହଞ୍ଚିଗଲେ କୁରୁକୁଳ ଚୂଡ଼ାମଣି ଚକ୍ରବର୍ତ୍ତୀ ସମ୍ରାଟ୍ ପରୀକ୍ଷିତ । ସେ ପଦବୀରେ ରାଜା କିନ୍ତୁ ଆଚାର- ବ୍ୟବହାରରେ ଋଷି ପ୍ରତିମ । ଲୋକେ ତାଙ୍କୁ ଶ୍ରଦ୍ଧାରେ ଡ଼ାକନ୍ତି'ରାଜର୍ଷି ପରୀକ୍ଷିତ' ବୋଲି । ଦୈବ ପ୍ରେରିତ ଭଳି ରାଜା ସେଠାରେ ପହଞ୍ଚିଗଲେ ।

# ଅଥ ୧୭ଶ ଅଧ୍ୟାୟଃ

## (ମହା ଦୁଷ୍ଟ କଳିକାଳଙ୍କୁ ଏକା ସମୟରେ ଦଣ୍ଡ ବିଧାନ ଓ ପୁରସ୍କାର)

**ସୂତ ଉବାଚ**

ପ୍ରଶ୍ନ-୬୪: ହେ ଶୌନକଜୀ, ରାଜା ପରୀକ୍ଷିତ ଦେଖିଲେ ଘୋର ଅନ୍ୟାୟ କଥା । ଗାଈ ଓ ବୃଷଭଙ୍କୁ ଜଣେ ରାଜ ବେଶଧାରୀ ଶୁଦ୍ର ଠେଙ୍ଗାଧରି କାହିଁକି ପିଟୁଛି ?

**ତତ୍ର ଗୋ ମିଥୁନଂ ରାଜା ହନ୍ୟମାନଂ ଅନାଥ ବତ୍ ।**
**ଦଣ୍ଡ ହସ୍ତଂ ଚ ବୃଷଳଂ ଦଦୃଶେ ନୃପ ଲାଞ୍ଛନମ୍ ।।୧।।**

ଉତ୍ତରଃସେ ଶୂଦ୍ର ଭାବିଥିଲା ବୋଧେ ତା ଉପରେ ଆଉ କେହି ଶାସନକର୍ତ୍ତା ନାହାନ୍ତି । କିମ୍ବା ସେ ଗୋ-ମିଥୁନଙ୍କର କେହି ମାଲିକ ନାହାନ୍ତି ।

ପ୍ରଶ୍ନ-୬୫:ରାଜା ଦେଖିଲେ ଧଳା ରଙ୍ଗର ବୃଷଭଟି ୩ ପାଦ ହରାଇ ଗୋଟିଏ ପାଦରେ କୌଣସି ପ୍ରକାରେ ଠିଆ ହୋଇଛି । ସେ ଶୂଦ୍ର ତାଡ଼ନାରେ ଭୟଭୀତ ହୋଇ ମଳମୂତ୍ର ତ୍ୟାଗ କରିଛି । ସେତେ ବେଳେ ଗୋମାତାଙ୍କ ଅବସ୍ଥା କିପରି ଦୟନୀୟ ହୋଇଥାଏ ?

**ଗାଂ ଚ ଧର୍ମଦୁଘାଂ ଦୀନାଂ ଭୃଶଂ ଶୂଦ୍ର ପଦ-ଆହତାମ୍ ।**
**ବିବତ୍ସାଂ ସ -ଅଶ୍ରୁବଦନାଂ କ୍ଷାମାଂ ଯବସଂ ଇଚ୍ଛତୀମ୍ ।।୩।।**

ଉତ୍ତରଃଯଜ୍ଞରେ ଲାଗୁଥିବା ଦୁଧ, ଦଧି,ଘୃତ ଦେବାବାଲା ଗାଈଟି ସେ ଶୂଦ୍ରଠାରୁ ବାରମ୍ବାର(ଭୃଶଂ) ଗୋଇଠା ପାହାର ଖାଉଛି। ସେ ନିଜେ କ୍ଷୁଧାର୍ତ୍ତା । ବାଛୁରୀଟି ନଥାଏ ସେତେବେଳେ ତା ପାଖରେ । ଅସହନୀୟ ପୀଡ଼ାରେ ତା

ଚକ୍ଷୁରୁ ଅବିଶ୍ରାନ୍ତ ଅଶ୍ରୁ ପ୍ଲାବନ ହେଉଥାଏ ।

ପ୍ରଶ୍ନ-୬୬:ତତ୍‌କ୍ଷଣାତ୍ ରାଜା ପରୀକ୍ଷିତ ଧନୁଶର ଧରି ସେ ଛଦ୍ମବେଶୀ ଶୂଦ୍ରରାଜା କଳିଙ୍କୁ ଭୟଭୀତ କରାଇଲେ । ପଚାରିଲେ -ଆମର୍ ଜେଜେ ବାପା ମହାବୀର ଅର୍ଜୁନ ଭଗବଦ୍ ଧାମ ଚାଲିଯିବାରୁ କ'ଣ ତୁମେ ଏପରି ଅପରାଧ କରିବାକୁ ସାହସ କରିପାରୁଛ କି ? ତୁମକୁ ଦୟା କରିବା ମଧ୍ୟ ମୋ ପକ୍ଷରେ ଅନ୍ୟାୟ ହେବ । ତୁମେ ଅବଶ୍ୟ ରାଜା ବେଶ ଧାରଣ କରିଛ । କିନ୍ତୁ ଶୂଦ୍ରଙ୍କ ଭଳି ଅନ୍ୟାୟ ନିର୍ଦ୍ଦୟ କାର୍ଯ୍ୟ କରୁଛ କେଉଁ ଉଦ୍ଦେଶ୍ୟରେ ? ଅତଏବ ତୁମେ ମୋ ହସ୍ତରେ ବଧର ଯୋଗ୍ୟ । ଏ ଭଳି କଥା କଳିଙ୍କୁ କହିସାରି ରାଜା ପରୀକ୍ଷିତ ଗୋ-ମିଥୁନଙ୍କୁ କି ଭଳି ବାକ୍ୟରେ ଅଭୟ ପ୍ରଦାନ କଲେ ?

**ମା ସୌରଭେୟ-ଅନୁଶୁଚୋ        ବ୍ୟେତୁ ତେ ବୃଷଳାଦ୍ ଭୟମ୍ ।**
**ମା ରୋଦୀଃ ଅମ୍ବ ଭଦ୍ରଂ ତେ        ଖଳାନାଂ ମୟି ଶାସ୍ତରି ।।୯।।**

ଉତ୍ତର: କହିଲେ, ''ହେ ଧେନୁପୁତ୍ର, ହେ ଗୋ ମାତା,ଆପଣ ଆଦୌ ଶୋକ କରନ୍ତୁ ନାହିଁ । ଏ ଶୂଦ୍ରକୁ ଭୟ କରନ୍ତୁ ନାହିଁ । ମୁଁ ଏ ଦେଶର ସାର୍ବଭୌମ ରାଜା । ଦୁଷ୍ଟକୁ ଦଣ୍ଡିତ କରିବାକୁ ମୁଁ ଦଣ୍ଡଧାରଣ କରିଛି । ଆପଣଙ୍କ ବିକଳ କ୍ରନ୍ଦନ ବନ୍ଦ କରନ୍ତୁ। ଆପଣଙ୍କର କଲ୍ୟାଣ ହେଉ ।''

ପ୍ରଶ୍ନ-୬୭: ରାଜା ଧର୍ମ ବୃଷଭଙ୍କୁ ତାଙ୍କ ପାଦ କାଟିବା ବିଷୟରେ କିଭଳି ପ୍ରଶ୍ନ ପଚାରିଲେ ?

**କୋଽବୃଶ୍ଚତ୍ ତବ ପାଦାନ୍ ତ୍ରୀନ୍        ସୌରଭେୟ ଚତୁଷ୍ପଦ ।**
**ମା ଭୂବନ୍ ତ୍ୱାଦୃଶା ରାଷ୍ଟ୍ରେ        ରାଜ୍ଞାଂ କୃଷ୍ଣ-ଅନୁବର୍ତ୍ତିନାମ୍ ।।୧୨।।**

ଉତ୍ତର: କହିଲେ, ''ହେ ସୁରଭି ନନ୍ଦନ, ଏ ଦେଶର ରାଜା ପରୀକ୍ଷିତ କୃଷ୍ଣ ଭକ୍ତ ଓ ଗୋ ସେବକ । ତାଙ୍କ ରାଜ୍ୟରେ ଆପଣଙ୍କ ଭଳି ଗୋ ମିଥୁନଙ୍କ ଦୁର୍ଦ୍ଦଶା ଆଦୌ ଶୋଭନୀୟ ନୁହେଁ । ଆପଣଙ୍କର ଚାରି ପାଦରୁ ଗୋଟିଏ ପାଦ ଏବେ ଅଛି । ଅନ୍ୟ ୩ ପାଦ କିଏ କାଟିଦେଇଛି କି?''

ପ୍ରଶ୍ନ-୬୮: ବୃଷଭଙ୍କୁ ଅଭୟ ଦେଇ ରାଜା ପଚାରିଲେ ଆପଣଙ୍କ ଭଳି ସାଧୁ ଓ ପରୋପକାରୀ ପ୍ରାଣୀଙ୍କୁ ଅଯଥା ଦଣ୍ଡଦେବା ବାଲା କିଏ ? କିଏ ଏ କଳଙ୍କ ବୋଳିଲା କୃଷ୍ଣଭକ୍ତ ପରମବୀର ଅର୍ଜୁନଙ୍କ ବଂଶର ରାଜ୍ୟ ଶାସନ କଳରେ ? ଶେଷରେ ପରୀକ୍ଷିତ ଜଣେ କୃଷ୍ଣଭକ୍ତ ରାଜାର ପରମ ଧର୍ମ କ'ଣ ବୋଲି ଧର୍ମଦେବଙ୍କୁ କହିଥିଲେ ?

**ରାଜ୍ଞୋ ହି ପରମୋ ଧର୍ମଃ ସ୍ୱଧର୍ମସ୍ଥ-ଅନୁପାଳନମ୍ ।**
**ଶାସତୋ-ଅନ୍ୟାନ୍ ଯଥା ଶାସ୍ତ୍ରଂ ଅନାପଦି-ଉତ୍ପଥାନ୍ ଇହ ।।୧୬।।**

ଉତ୍ତରଃ ଆପତ୍‌କାଳୀନ ଧର୍ମ ପାଳନ ବ୍ୟତୀତ ଅନ୍ୟ ସମୟରେ ସ୍ୱଧର୍ମ ତ୍ୟାଗୀ ଲୋକକୁ ଦଣ୍ଡ ଦେବା ଓ ସ୍ୱଧର୍ମ ପାଳନକାରୀ ପ୍ରଜାଙ୍କୁ ରକ୍ଷା କରିବା ରାଜାଙ୍କର ଶାସ୍ତ୍ର ନିର୍ଦ୍ଦେଶିତ ଆଜ୍ଞା ବା ପରମ ଧର୍ମ ।

**ଧର୍ମ ଉବାଚ**

ପ୍ରଶ୍ନ-୬୯: ହେ ରାଜନ୍,ଏଭଳି ଦୁଃଖୀ, ଦୁଃଖିନୀଙ୍କର ସେବା କରିବାରେ ଆଗ୍ରହୀ ହେବା ଆପଣଙ୍କ ଭଳି କୁରୁବଂଶୀଙ୍କ ମୁଖରେ ଆଦୌ ଶୋଭା ପାଏନାହିଁ । କାହିଁକି ଶୋଭା ପାଏ ନାହିଁ ବୋଲି ଧର୍ମଦେବ କହିଲେ ପରୀକ୍ଷିତଙ୍କୁ ?

**ଏତଦ୍ ବଃ ପାଣ୍ଡବେୟାନାଂ ଯୁକ୍ତଂ ଆର୍ତ୍ତ-ଅଭୟଂ ବଚଃ ।**
**ଯେଷାଂ ଗୁଣଗଣୈଃ କୃଷ୍ଣୋ ଦୌତ୍ୟ-ଆଦୌ ଭଗବାନ୍ କୃତଃ ।।୧୭।।**

ଉତ୍ତରଃ ପୂର୍ବେ ଏକଥା ମଧ୍ୟ ଦେଖାଯାଇଛି ଯେ ଗୋବିନ୍ଦ ଭକ୍ତ ପାଣ୍ଡବମାନଙ୍କ ଆଚରଣରେ ଗୁଣମୁଗ୍ଧ ଗୋବିନ୍ଦ ସର୍ବେଶ୍ୱର ଭଗବାନ ହୋଇ ତାଙ୍କ ଦୂତପଣରେ ମଧ୍ୟ ତାଙ୍କ କାର୍ଯ୍ୟ କରିଛନ୍ତି (ଦୌତ୍ୟ ଆଦୌ) । ତାଙ୍କ ରଥରେ ସାରଥୀ ହୋଇଛନ୍ତି । ତାଙ୍କ ଘୋଡ଼ାକୁ ଚଣା ଖୁଆଇଛନ୍ତି । ଯୋଡ଼ା ପିଠି ମାଲିସ୍ କରିଛନ୍ତି । ଏଭଳି ପରମକୃଷ୍ଣ ଭକ୍ତ ପରୀକ୍ଷିତଙ୍କ ସେବା ଗ୍ରହଣ କରିବାକୁ ଧର୍ମ ଦେବ ମଧ୍ୟ କୁଣ୍ଠିତ!!

ପ୍ରଶ୍ନ-୭୦: ବୈଦିକ ଶାସ୍ତ୍ର ତ ଏକ ଦୁର୍ଗମ ଜଙ୍ଗଲ । ଆମ ଦୁହିଁଙ୍କ ଦୁଃଖର କାରଣ ବୋଲି ଆମେ କାହାକୁ ଦୋଷ ଦେବୁ ? କେଉଁଠି ଶାସ୍ତ୍ର କୁହନ୍ତି ଜୀବର କାମନା, ବାସନାକୁ,କେଉଁଠି ନିଜର ମନକୁ (ଆତ୍ମନଂ) ସଂସ୍କାର,ସ୍ୱଭାବକୁ(ଦୈବଂ) ପୁଣି କେଉଁଠି ନିଜର କୃତ କର୍ମର ଫଳକୁ ଜୀବର ଦୁଃଖ ଭୋଗିବାର କାରଣ ବୋଲି । ଆମେ ଏ ବିଷୟରେ ଶାସ୍ତ୍ର ବାକ୍ୟରୁ କିଛି ନିଷ୍ପିତ କରିପାରୁନାହୁଁ । ଆପଣ ଜଣେ ଧର୍ମାତ୍ମା କୃଷ୍ଣଭକ୍ତ ହୋଇଥିବାରୁ ନିଷତ୍ତି କରନ୍ତୁ ଦୋଷୀ କିଏ ?

**ରାଜା ଉବାଚ**

**ଧର୍ମଂ ବ୍ରବୀଷି ଧର୍ମଜ୍ଞ ଧର୍ମୋଽସି ବୃଷରୂପଧୃକ୍ ।**
**ଯଦ୍ ଅଧର୍ମ କୃତଃ ସ୍ଥାନଂ ସୂଚକସ୍ୟ-ଅପିତଦ୍ ଭବେଦ୍ ।।୨୨।।**

ଉତ୍ତର: ବୃଷଭଙ୍କ ଧର୍ମ ଶାସ୍ତ୍ରରେ ଗଭୀରଜ୍ଞାନ ଦେଖି ରାଜା ପରୀକ୍ଷିତ ସଙ୍ଗେ ସଙ୍ଗେ ଚିହ୍ନିପାରିଲେ ବୃଷଭ ରୂପଧାରୀ ଧର୍ମଦେବଙ୍କୁ । ରାଜା କହିଲେ - ଆପଣ ତେବେ ସ୍ୱୟଂ ଧର୍ମଦେବ । ଅଧର୍ମୀ, ବିଧର୍ମୀଙ୍କ ପ୍ରତି ଅପାର ଦୟା ପ୍ରକାଶ କରି, ନିଜ ଦୁଃଖ ପାଇଁ ଆପଣ ଜାଣିଜାଣି ଅନ୍ୟ କାହା ଉପରେ ଦୋଷ ଲଦୁନାହାନ୍ତି । ଏହା ଅବଶ୍ୟ ଆପଣଙ୍କର ଚରମ ଉଦାରତା । ମହାନୁଭବତା ନିଶ୍ଚୟ ।

ପ୍ରଶ୍ନ-୭୧: ନିଜର ଶାସ୍ତ୍ର ଜ୍ଞାନବଳରେ ରାଜା ପରୀକ୍ଷିତ ଧର୍ମଙ୍କର ୪ ପାଦ କେଉଁ କେଉଁ ଦିବ୍ୟଗୁଣର ସଙ୍କେତ ବୋଲି କହିଥିଲେ ?

**ତପଃ ଶୌଚଂ ଦୟା ସତ୍ୟଂ ଇତି ପାଦାଃ କୃତେ କୃତାଃ ।**
**ଅଧର୍ମ ଅଂଶୈଃ ତ୍ରୟୋ ଭଗ୍ନାଃ ସ୍ମୟସଙ୍ଗ ମଦୈଃ ତବ ॥୨୪॥**

ଉତ୍ତର:ସତ୍ୟଯୁଗରେ (କୃତେ) ଧର୍ମଦେବଙ୍କର ୪ ପାଦ ତପ, ଶୌଚ, ଦୟା ଓ ସତ୍ୟ ପରବର୍ତ୍ତୀ ଯୁଗ ମାନଙ୍କର ପ୍ରଭାବରେ କ୍ରମଶଃ ପ୍ରଥମ,ଦ୍ୱିତୀୟ, ତୃତୀୟ ପାଦ ନଷ୍ଟ ହୋଇ ଏବେ କଳି ଯୁଗରେ କେବଳ ଧର୍ମ ଏକ ପାଦ (ସତ୍ୟରୂପେ) ଯେନ ତେନ ପ୍ରକାରେଣ ବଂଚି ରହିଛନ୍ତି।

ପ୍ରଶ୍ନ-୭୨: ଧର୍ମଦେବଙ୍କର ଏହି ୪ର୍ଥ ପାଦକୁ ନଷ୍ଟ କରିବାକୁ କିଏ ଚେଷ୍ଟିତ ବୋଲି ରାଜା ନିଶ୍ଚୟ କଲେ ?

**ଇଦାନୀଂ ଧର୍ମ ପାଦଃ ତେ ସତ୍ୟଂ ନିବର୍ତ୍ତୟେତ୍ ଯତଃ ।**
**ତଂ ଜିଘୃକ୍ଷତି-ଅଧର୍ମୋଽୟଂ ଅନୃତେନ-ଏଧିତଃ କଳିଃ ॥୨୫॥**

ଉତ୍ତର:କଳିଯୁଗ ସକଳ ଅଧର୍ମର ପ୍ରତୀକ । ସୁତରାଂ କଳି ସୂକ୍ଷ୍ମରୂପରେ ଜନସମାଜଙ୍କ ଅନ୍ତଃକରଣରେ ପ୍ରବେଶ କରି ଅସତ୍ୟ ଦ୍ୱାରା ସତ୍ୟକୁ ପ୍ରହାର କରୁଛି (ଜିଘୃକ୍ଷତି) । ଧର୍ମକୁ କ୍ଳେଶ ଭୋଗିବାକୁ ପଡୁଛି । ପୂର୍ବରୁ ଧର୍ମଙ୍କର ଅନ୍ୟ ତିନି ପାଦ ତପ, ଶୌଚ ଓ ଦୟା ନଷ୍ଟ ହୋଇସାରିଛନ୍ତି । ଅବଶିଷ୍ଟ ସେଇ ସତ୍ୟରୂପୀ ଗୋଟିକ ପାଦରେ ମଧ୍ୟ ଏ କପଟବେଶଧାରୀ ଶୂଦ୍ରରାଜା କଳି ପ୍ରହାର କରୁଛି । ଭଗବାନ କୃଷ୍ଣଙ୍କ ଅବତାର ସମୟରେ କଳି ତାଙ୍କ ପ୍ରଭାବ ବିସ୍ତାର କରିପାରୁନଥିଲା । ଏବେ ଭଗବାନଙ୍କ ସ୍ୱଧାମ ଗମନ ପରେ ସେ ଲୋକଙ୍କୁ କଷ୍ଟ ଦେଉଛି । ଲୋକମାନେ ଅଧର୍ମ ବାଟରେ ଚାଲିବାରୁ ମା ଧରିତ୍ରୀ ଶୋକାକୁଳ ହୋଇ ଅଶ୍ରୁପାତ କରୁଛନ୍ତି । ସୁତରାଂ ରାଜା କଳିଙ୍କୁ ଦଣ୍ଡଦେବାକୁ ଉଦ୍ୟତ ହେଲେ । ସଙ୍ଗେ ସଙ୍ଗେ କଳି ତାଙ୍କ ରାଜ ପୋଷାକ ଓହ୍ଲେଇ ଦେଇ ରାଜାଙ୍କ ପାଦତଳେ ଶରଣ ପଶିଲେ ।

ପ୍ରଶ୍ନ-୭୩:ରାଜ ପରୀକ୍ଷିତ ସ୍ୱଭାବରେ ଦୟାଳୁ । ଶରଣ ବତ୍ସଳ ମଧ । ତଥାପି ରାଜା କଳିଙ୍କର କେଉଁ ୯ଟି ଦୋଷ, ଅଶୁଭ ଲକ୍ଷଣ ଦେଖାଇ ସେ ଦଣ୍ଡର ଯୋଗ୍ୟ ବୋଲି କହିଲେ ?

**ଦ୍ୱାଂ.ବର୍ତ୍ତମାନଂ ନର ଦେବ ଦେହେଷ୍ୱ**

**ଅନୁପ୍ରବୃତ୍ତୋଽୟଂ ଅଧର୍ମ ପୂଗଃ ।**

**ଲୋଭୋଽନୃତଂ ଚୌର୍ଯ୍ୟଂ ଅନାର୍ଯ୍ୟଂ ଅଂହୋ**

**ଜ୍ୟେଷ୍ଠା ଚ ମାୟା କଳହଃ ଚ ଦମ୍ଭଃ ।।୩୨।।**

ଉତ୍ତର୧.ଲୋଭ, ୨.ଅସତ୍ୟ (ଅନୃତ) ୩.ଚୋରୀ, ୪.ଶିଷ୍ଟାଚାରର ଅଭାବ, ୫.ଛଳ, କପଟ (ମାୟା),୬.ପାପ ପ୍ରବୃତ୍ତି(ଅଂହ), ୭.କଳହ, ୮.ଦମ୍ଭ,୯.ଅଧର୍ମ, ଏସବୁ ଦୁର୍ଗୁଣ ଦେଖିଲେ ରାଜା । ସେ ତ ଦୀନ ବତ୍ସଳ ଓ ପରମ କୃଷ୍ଣଭକ୍ତ ମଧ । ହୃଦୟ ବିଚଳିତ ହେଲା ରାଜାଙ୍କର । ଦୟାର ସମୁଦ୍ରରେ ଲହରୀ ଉଠିଲା । ରାଜା ତାଙ୍କର ରହିବାକୁ ନିର୍ଦ୍ଦିଷ୍ଟ ସ୍ଥାନ ଯାଚିଲେ । କାରଣ ମହାକାଳଙ୍କ ନିୟମ ଅନୁସାରେ ଦ୍ୱାପର ଯୁଗ ପରେ କଳିଙ୍କୁ ରହିବା ପାଇଁ ସ୍ଥାନ ଦେବାକୁ ପଡ଼ିବ ।

**ସୂତ ଉବାଚ**

ପ୍ରଶ୍ନ-୭୪: ରାଜାଙ୍କଠାରୁ ରକ୍ଷା ଆଶ୍ୱାସନା ପାଇ ରହିବାକୁ କେଉଁ କେଉଁ ସ୍ଥାନ କଳି ମାଗିଲେ ?

**ଅଭ୍ୟର୍ଥିତଃ ତଦା ତସ୍ମୈ ସ୍ଥାନାନି କଳୟେ ଦଦୌ ।**

**ଦ୍ୟୂତଂ ପାନଂ ସ୍ତ୍ରିୟଃ ସୂନା ଯତ୍ର-ଅଧର୍ମଃ ଚତୁର୍ବିଧଃ ।।୩୮।।**

ଉତ୍ତର: ରାଜା କଳିଙ୍କୁ ଜୁଆ ଖେଳିବା (ଦ୍ୟୂତଂ ), ମଦ୍ୟ ପାନ ଶାଳା (ପାନଂ), ପରସ୍ତ୍ରୀ ଗମନ ଓ ଜୀବବଧ ସ୍ଥାନ (ସୂନା) ୪ ଟି ସ୍ଥାନ ଦେଲେ ।

ପ୍ରଶ୍ନ-୭୫: ରହିବା ଲାଗି ୪ ଟି ସ୍ଥାନ ପାଇ ମଧ କଳି ଅସନ୍ତୁଷ୍ଟ ହେଲେ । ସୁତରାଂ ରାଜା ବହୁ କୁଟୁମ୍ବୀ କଳିଙ୍କୁ ଆଉ କେଉଁ କେଉଁ ସ୍ଥାନ ମାନ ଦେଲେ ?

**ପୁନଃ ଚ ଯାଚ ମାନାୟ ଜାତରୂପଂ ଅଦଦାତ୍ ପ୍ରଭୁଃ ।**

**ତତୋଽନୃତଂ ମଦଂ କାମଃ ରଜୋ ବୈରଂ ଚ ପଞ୍ଚମମ୍ ।।୩୯।।**

ଉତ୍ତର: ଆଉ ଗୋଟିଏ ସ୍ଥାନ ସୁବର୍ଣ୍ଣ (ଜାତରୂପଂ) ରେ ରହିବାକୁ ରାଜା ନିର୍ଦ୍ଦେଶ କଲେ । ସେଇଦିନଠାରୁ କଳିଯୁଗ ମିଥ୍ୟା, ଗର୍ବ, ସଂସାରୀ ଭୋଗ ସଂଗ୍ରହ

ବିଳାସ କାମନା, ଲୋଭ ଓ ଶତ୍ରୁତା ଏଇ ପାଞ୍ଚସ୍ଥାନରେ ଅନ୍ୟାୟ ଅର୍ଜିତ ସୁନା ସମ୍ପତ୍ତିକୁ ଆଶ୍ରୟ କରି କଳିଯୁଗୀ ଲୋକଙ୍କୁ ଅଧର୍ମ କର୍ମରେ ପ୍ରବୃତ୍ତ କଲେ । ସୁତରାଂ ଏଇତକ ସ୍ଥାନରୁ ଯେଉଁ ସାଧକମାନେ ଦୂରେଇ ରହିପାରନ୍ତି ସେମାନେ କଳିଯୁଗ ଜୟୀ ଧର୍ମାତ୍ମା ବା ଧାର୍ମିକ ଲୋକରେ ଗଣା ହୁଅନ୍ତି ।

# ଅଥ ୧୮ଶ ଅଧ୍ୟାୟଃ

## (ରାଜା ପରୀକ୍ଷିତଙ୍କୁ ବ୍ରାହ୍ମଣ ବାଳକ ଶୃଙ୍ଗୀଙ୍କ ବ୍ରହ୍ମଶାପ)

### ସୂତ ଉବାଚ

ପ୍ରଶ୍ନ-୭୬:ହେ ଶୌନକଜୀ, ମହାରାଜ ପରୀକ୍ଷିତ ଅଦ୍ଭୁତକର୍ମା ଶ୍ରୀକୃଷ୍ଣଙ୍କ କୃପାରେ ନିଜକୁ ଜଣେ ସତ୍‌ପାତ୍ର ବୋଲି ସପ୍ରମାଣ ଜାଣନ୍ତି କି ?

**ଯା ବୈ ଦ୍ରୋଣି-ଅସ୍ତ୍ର ବିପ୍ଳୁଷ୍ଟୋ ନ ମାତୁଃ ଉଦରେ ମୃତଃ ।**
**ଅନୁଗ୍ରହାଦ୍ ଭଗବତଃ କୃଷ୍ଣସ୍ୟ-ଅଦ୍ଭୁତକର୍ମଣଃ ।।୧।।**

ଉତ୍ତର:ଦ୍ରୋଣପୁତ୍ର ଅଶ୍ୱତ୍‌ଥାମାଙ୍କର ବ୍ରହ୍ମଅସ୍ତ୍ରରେ ମାତା ଉତ୍ତରାଙ୍କ ଗର୍ଭରେ ପରୀକ୍ଷିତ ନ ମରିବା ହିଁ ତାର ପ୍ରମାଣ । ବିନା କୃଷ୍ଣ କୃପାରେ କେହି କ'ଣ କେବେ ଶକ୍ତିଶାଳୀ ବ୍ରହ୍ମାସ୍ତ୍ରର ସଂହାର ଶକ୍ତିରୁ ରକ୍ଷା ପାଇପାରେ ?

ପ୍ରଶ୍ନ-୭୭:ଜୀବନ ଆରମ୍ଭ ହେବା ପୂର୍ବରୁ ମାତୃଗର୍ଭରେ ଥାଇ ବ୍ରହ୍ମାସ୍ତ୍ରର ସମ୍ମୁଖୀନ ପରୀକ୍ଷିତ । ଏବେ ଜୀବନ ଅବସାନ ବେଳେ ମଧ୍ୟ ବ୍ରହ୍ମଶାପର ସମ୍ମୁଖୀନ ସେ । ରାଜଙ୍କର ଜୀବନ କୃଷ୍ଣଲୀଳା ଶ୍ରବଣ କୀର୍ତ୍ତନ, କୃଷ୍ଣ ଭକ୍ତି ପରାୟଣ ଥିବାରୁ ସେ ବ୍ରହ୍ମଶାପକୁ ମଧ୍ୟ ଡ଼ରୁନାହାନ୍ତି । ଗଙ୍ଗାକୂଳରେ ଋଷି ମୁନିଙ୍କ ଗହଣରେ ବସି ରାଜା କିପରି ମୃତ୍ୟୁଦୂତ ତକ୍ଷକକୁ ମଧ୍ୟ ଭୟ କଲେନି?

**ବ୍ରହ୍ମ କୋପ-ଉତ୍‌ଥିତାଦ୍ ଯଃ ତୁ ତକ୍ଷକାଦ୍ ପ୍ରାଣ ବିପ୍ଳବାଦ୍ ।**
**ନ ସମ୍ମୁମୋହ-ଉରୁଭୟାଦ୍ ଭଗବତି-ଅର୍ପିତ-ଆଶୟଃ ।।୨।।**

ଉତ୍ତର:ଭୟ ହୁଏ ଜୀବର ମଇଳା ମନ, ବୁଦ୍ଧି, ଚିତ୍ତ, ଅହଂକାର ରୂପୀ ଅନ୍ତଃକରଣ ବା ଆଶୟରେ ଥିଲେ । ରାଜା ତ ସତ୍‌ସଙ୍ଗ ପ୍ରଭାବରେ କୃଷ୍ଣ କଥା ଶ୍ରବଣ କରି ସଂପୂର୍ଣ୍ଣ ଶୁଦ୍ଧ ଅନ୍ତଃକରଣକୁ ଶ୍ରୀକୃଷ୍ଣଙ୍କ ଚରଣ କମଳରେ ସମର୍ପିତ କରିସାରିଥିଲେ । ତାଙ୍କ ପାଖରେ ମଇଳାମନ, ବୁଦ୍ଧି ଆଦି ଥିଲେ ସିନା ଭୟ କରନ୍ତେ !!

ପ୍ରଶ୍ନ-୭୮:ଭାଗବତ ସପ୍ତାହ ଶ୍ରବଣ ପରେ ରାଜା ସମସ୍ତ ସଂସାର ଆସକ୍ତି ତ୍ୟାଗ କଲେ । ଭଗବାନ (ଅଜିତ) ଙ୍କ ଉପସ୍ଥିତି ରାଜାଙ୍କ ଭିତରେ ଓ ବାହାରେ ଦର୍ଶନ ହେବାରୁ ରାଜା କି ପଦକ୍ଷେପ ଗ୍ରହଣ କଲେ ?

**ଉତ୍ସୃଜ୍ୟ ସର୍ବତଃ ସଙ୍ଗଂ ବିଜ୍ଞାତ-ଅଜିତ ସଂସ୍ଥିତିଃ ।**
**ବୟାସକେଃ ଜହୌ ଶିଷ୍ୟୋ ଗଙ୍ଗାୟାଂ ସ୍ୱଂ କଳେବରମ୍ ।।୩।।**

ଉତ୍ତର:ପବିତ୍ର ଗଙ୍ଗାକୂଳରେ ଶୁକଦେବ ପରମହଂସଙ୍କ (ବୟାସକେଃ) ବିନୀତ ଶିଷ୍ୟ ହୋଇଥିଲେ । ସଦ୍‌ଗୁରୁଙ୍କ କୃପାରୁ ସେ ମହା ଆନନ୍ଦରେ ଦେହ ତ୍ୟାଗ କରିପାରିଲେ । ତାଙ୍କ ମୃତ୍ୟୁ ମଧ୍ୟ ମହୋତ୍ସବ ହୋଇଗଲା ।

ପ୍ରଶ୍ନ-୭୯:ପରୀକ୍ଷିତ ମହାରାଜାଙ୍କର ଦେହ ତ୍ୟାଗ ପ୍ରଣାଳୀରୁ ଆମ ଭଳି କଳିଯୁଗୀ ସାଧକଙ୍କୁ କି ସତ୍‌ଶିକ୍ଷା ମିଳିଲା ?

**ନ-ଉତ୍ତମ ଶ୍ଳୋକ ବାର୍ତ୍ତାନାଂ ଜୁଷତାଂ ତତ୍ କଥାମୃତମ୍ ।**
**ସ୍ୟାତ୍ ସଂଭ୍ରମୋଽନ୍ତ କାଳେଽପି ସ୍ମରତାଂ ତତ୍ ପଦାମ୍ବୁଜମ୍ ।।୪।।**

ଉତ୍ତର: ହରିକଥା (ଉତ୍ତମ ଶ୍ଳୋକ ବାର୍ତ୍ତାନାଂ) ଶ୍ରବଣ କୀର୍ତ୍ତନରେ ଜୀବନ ସମୟ ମରଣ ସମୟ କଟାଇ ଶ୍ରୀହରିଙ୍କ ଚରଣ କମଳ ଧ୍ୟାନ କରୁଥିଲେ କଳିଯୁଗରେ ମଧ୍ୟ ଜୀବନ ଓ ମରଣ ଉଭୟ ଉଜାଗର ହୁଏ । ଜୀବର ଅନ୍ତିମ ଅତିଥି ମୃତ୍ୟୁ ଦେବତା ଯମରାଜ ମଧ୍ୟ ସଲାମ କରନ୍ତି ସାଧାରଣ ଜୀବାତ୍ମାକୁ, ଯଦି ହରିଭଜନ କରୁ କରୁ ସେ ଦେହ ତ୍ୟାଗ କରେ । ସେଇତ ଶ୍ରୀମଦ୍‌ଭାଗବତଙ୍କର ମହାନ୍ ଶିକ୍ଷା ।

ପ୍ରଶ୍ନ-୮୦:କଳିଯୁଗ ଏପର୍ଯ୍ୟନ୍ତ ରାଜାଙ୍କୁ ଡ଼ରିମରି ଚଳୁଥିଲା । ଅଭିମନ୍ୟୁଙ୍କର ମହା ଶକ୍ତି ଶାଳୀ (ମହାନ୍ ଉର୍ବ୍ୟାଂ) ପୁତ୍ର ପରୀକ୍ଷିତଙ୍କ ଶାସନ କାଳରେ କଳିର ଦୌରାତ୍ମ୍ୟର ଅବକାଶ ନଥିଲା । ତେବେ ଏହି କଳିଯୁଗ ସର୍ବପ୍ରଥମେ କେତେବେଳେ ପୃଥିବୀରେ ପ୍ରବେଶ କରିଥିଲା ?

**ଯସ୍ମିନ୍ ଅହନି ଯର୍ହି-ଏବ ଭଗବାନ୍ ଉତ୍ସସର୍ଜ ଗାମ୍ ।**
**ତଦା-ଏବ-ଇହ-ଅନୁବୃତ୍ତୋଽସୌ ଅଧର୍ମ ପ୍ରଭବଃ କଳିଃ ।।୬।।**

ଉତ୍ତର:ଯେଉଁ ଦିନ ଯେଉଁ କ୍ଷଣ ଭଗବାନ ଶ୍ରୀକୃଷ୍ଣ ଏ ପୃଥିବୀରୁ ସ୍ୱରୂପରେ ବିଦାୟ ନେଇ (ଉତ୍ସସର୍ଜ ଗାଂ) ସ୍ୱଧାମ ଗମନ କଲେ ସେଇଦିନ ସେଇ କ୍ଷଣରେ କଳିଯୁଗ ଅଧର୍ମ ସଖାମାନଙ୍କୁ ଧରି ଆସି ଆଡ୍ଡା ଜମାଇ ସାରିଥିଲା ।

ପ୍ରଶ୍ନ-୮୧: ଅଧର୍ମୀ କଳିକୁ କ'ଣ ଭାବି ମହାରାଜ ପରୀକ୍ଷିତ ରାଜ୍ୟରୁ ବହିଷ୍କାର କଲେ ନାହିଁ ବା ମୃତ୍ୟୁ ଦଣ୍ଡ ଦେଲେ ନାହିଁ ?

**ନ-ଅନୁଦ୍ୱେଷ୍ଟି କଳିଂ ସମ୍ରାଟ୍ ସାରଙ୍ଗ ଇବ ସାରଭୁକ୍ ।**
**କୁଶଳାନି-ଆଶୁ ସିଦ୍ଧ୍ୟନ୍ତି ନ-ଇତରାଣି କୃତାନି ଯତ୍ ।।୭।।**

ଉତ୍ତର:ଅନେକ କାରଣ ତ ଥିଲା । ତଥାପି ପ୍ରଧାନ କାରଣ ଥିଲା ଯେ ମଧୁମକ୍ଷିକା (ସାରଙ୍ଗ) ଭଳି ସେ ସାରଗ୍ରାହୀ ଥିଲେ । ଅନେକ ଫୁଲ ଫୁଟିଥିଲେ ମଧ ମଧୁମକ୍ଷିକା କେବଳ ସୁଗନ୍ଧିତ ପୁଷ୍ପରୁ ମଧୁ ସଂଗ୍ରହ କରିଥାଏ । କଳିଯୁଗରେ ଏକ ଭଲ ବ୍ୟବସ୍ଥା ଥିବା କଥା ରାଜା ଜାଣିଥିଲେ । ଏ ଯୁଗରେ ସତରେ ନକରି ମନେ ମନେ କରୁଥିବା ପାପ କର୍ମର (ନ-ଇତରାଣି) ଫଳ ମିଳେନା । ପାପକର୍ମ କେବଳ ସତକୁ ସତ କଲେ ଫଳ ଭୋଗିବାକୁ ପଡ଼େ କିନ୍ତୁ ମନେ ମନେ କରୁଥିବା ପୁଣ୍ୟକର୍ମ(କୁଶଳାନି)ର ଫଳ ମିଳିଯାଏ । କଳିଯୁଗରେ ଏହି କନ୍‌ସେସନ୍ (ରିହାତି) ଧର୍ମ ବ୍ୟବସ୍ଥାରେ ପରମେଶ୍ୱରଙ୍କ ଦ୍ୱାରା ଆଗରୁ ରଖାଯାଇଛି । ସୁତରାଂ ପାପ ପ୍ରବଣ କଳିଯୁଗୀ ଲୋକଙ୍କୁ ଏହା ଭଲ ସୁହାଇଲା ।

ପ୍ରଶ୍ନ-୮୨: ହେ ଶୌନକଜୀ,ଧୀର ସଂଯମୀ କୃଷ୍ଣ ଭକ୍ତ ପରୀକ୍ଷିତଙ୍କ ଭଳି କଳିଯୁଗକୁ ଆଦୌ ଭୟ କରେନା । ଭୟ କରନ୍ତି ତମୋଗୁଣୀ, ଅସୁର ସ୍ୱଭାବ ସମ୍ପନ୍ନ ଓ ରଜୋଗୁଣୀ ଭୋଗ ପ୍ରବଣ, ସଂଗ୍ରହ ପରାୟଣ ବିଳାସୀ ଲୋକେ ।

**ଋଷୟଃ ଊଚୁଃ**

ଏକଥା ଶୁଣି ଶୌନକାଦି ମୁନିମାନେ ଅତ୍ୟନ୍ତ ଆଶ୍ୱସ୍ତ ଓ ଆହ୍ଲାଦିତ ହେଲେ । ଶ୍ରୀକୃଷ୍ଣଙ୍କ ମାହାତ୍ମ୍ୟ ଶ୍ରବଣ କରିବାକୁ ମୁମୂର୍ଷୁ ଲୋକର ଅମୃତ ପାନ ସହିତ ତୁଳନା କଲେ । ବକ୍ତା ସୂତ ଗୋସ୍ୱାମୀଙ୍କ ଦୀର୍ଘ ଆୟୁଷ କାମନା କଲେ । କାରଣ ସେମାନେ ତାଙ୍କଠାରୁ କୃଷ୍ଣକଥା ଶ୍ରବଣ କରିବା ସୁଯୋଗ ପାଇବେ । ଅନେକ ଯଜ୍ଞ କରି କରି

ତାଙ୍କର କି ଦୂରବସ୍ଥା ହେଲାଣି ବୋଲି ସେମାନେ ବକ୍ତା ମହାଶୟଙ୍କୁ କହିଲେ ?

**କର୍ମଣିଽସ୍ମିନ୍ ନ-ଆଶ୍ୱାସେ ଧୂମ ଧୂମ୍ର-ଆତ୍ମନାଂ ଭବାନ୍ ।**
**ଆପାୟୟତି ଗୋବିନ୍ଦ ପାଦପଦ୍ମ-ଆସବଂ ମଧୁ ।।୧୨।।**

ଉତ୍ତର:ସେମାନେ କହିଲେ-ହେ ସୂତ ଗୋସ୍ୱାମୀ, ଦୀର୍ଘ ବର୍ଷ ହେଲା ଯଜ୍ଞ କରି କରି ଆମ ଦେହ ମୁହଁ ଆଦି କଳା କାଠ (ଧୂମ ଧୂମ୍ର-ଆତ୍ମନାଂ) ପଡ଼ିଗଲାଣି । ସେ ଯଜ୍ଞ ସବୁର ଶୁଭ ଫଳ ମିଳିବା ମଧ୍ୟ ଅନିଶ୍ଚିତ । କାରଣ ଯଜ୍ଞ କର୍ମ ଶାସ୍ତ୍ରୋଚିତ ନହେଲେ ଦଣ୍ଡ ମିଳିପାରେ । ସେମାନେ ଭାବିଲେ ଯଦି ଯଜ୍ଞକର୍ମର ପୁଣ୍ୟ ଫଳ ମିଳିବା ଅନିଶ୍ଚିତ କଳିଯୁଗରେ ଯଜ୍ଞ କରିବା କେଉଁ ବିଜ୍ଞତାର କାମ ହେଲା ? ସୁତରାଂ ସମସ୍ୱରରେ ସେମାନେ ସୂତଜୀଙ୍କୁ ଅନୁରୋଧ କଲେ କୃଷ୍ଣକଥା କୀର୍ତ୍ତନ କରିବାକୁ । ଯାହାକୁ ସେମାନେ ଶ୍ରବଣ କରି କୃଷ୍ଣ ପାଦପଦ୍ମରୁ ମଧୁ ଆସ୍ୱାଦନ କରିବାକୁ ମନକୁ ଲଗାଇବେ ଏଥର । ଅସଲି କଥାଟି ହେଲା - ବୈଦିକ କର୍ମ କାଣ୍ଡରେ ବିଷାଦ ଆସିଲେ କୃଷ୍ଣଭକ୍ତି କରିବାକୁ ଲାଳସା ଜାଗ୍ରତ ହୁଏ ।

ପ୍ରଶ୍ନ-୮୩:ସୂତଗୋସ୍ୱାମୀଙ୍କ ଭଳି ବୈଷ୍ଣବ ସଙ୍ଗପାଇ ଶୌନକାଦି ମୁନିମାନେ କିଭଳି ଖୁସି ହେଲେ ?

**ତୁଳୟାମ ଲବେନ-ଅପି ନ ସ୍ୱର୍ଗଂ ନ-ଅପୁନର୍ଭବମ୍ ।**
**ଭଗବଦ୍ ସଙ୍ଗୀ ସଙ୍ଗସ୍ୟ ମର୍ତ୍ତ୍ୟାନାଂ କିଂ ଉତ-ଆଶିଷଃ ।।୧୩।।**

ଉତ୍ତର:ଦଣ୍ଡେ, ନିମିଷେ, କ୍ଷଣେ ମାତ୍ର ସତ୍‌ସଙ୍ଗର ଫଳକୁ ଯେତେବେଳେ ଦେବତା ହୋଇ ସ୍ୱର୍ଗ ସୁଖ ଲାଭ ଓ ବୈକୁଣ୍ଠରେ ୫ ପ୍ରକାର ମୁକ୍ତି ସହିତ ତୁଳନା କରାଯାଇପାରେନା, ସେତେବେଳେ ଯଜ୍ଞ କରି ସଂସାରୀ ସୁଖ ଫଳ ପାଇବାକୁ ବା ତୁଚ୍ଛ ସଂସାରୀ କାମନୀ ପୂରଣକୁ ପଚାରେ କିଏ ? ଅତଏବ ସେମାନେ ପ୍ରାପ୍ତ ସତ୍‌ସଙ୍ଗ ସୁଯୋଗକୁ କୋଟି ନିଧି ମଣିଲେ ।

### ସୂତ ଉବାଚ

ପ୍ରଶ୍ନ-୮୪:ଶୌନକାଦି ମୁନିମାନେ ପରମ କୃଷ୍ଣଭକ୍ତ ପରୀକ୍ଷିତଙ୍କ ଅଦ୍ଭୁତ ଚରିତ ଓ ଷୋଳକଳା ଅବତାର ଶ୍ରୀକୃଷ୍ଣଙ୍କର ମାହାତ୍ମ୍ୟ ଶ୍ରବଣ କରିବାକୁ ଅତ୍ୟନ୍ତ ଆଗ୍ରହ ପ୍ରକାଶ କଲେ । ବର୍ତ୍ତମାନ ସୂତମୁନି ପରୀକ୍ଷିତଙ୍କ ବ୍ରହ୍ମ ଅଭିଶାପ ପ୍ରାପ୍ତିର କରୁଣ କାହାଣୀର ବର୍ଣ୍ଣନ କିପରି ଆରମ୍ଭ କଲେ ?

**ଏକଦା ଧନୁଃ ଉଦ୍ୟମ୍ୟ ବିଚରନ୍ ମୃଗୟାଂ ବନେ ।**
**ମୃଗାନ୍ ଅନୁଗତଃ ଶ୍ରାନ୍ତଃ କ୍ଷୁଧିତଃ ତୃଷିତୋ ଭୃଶମ୍ ।।୨୪।।**

ଉତ୍ତରः ଥରେ ରାଜା ପରୀକ୍ଷିତ ଧନୁଧରି ମୃଗୟାରେ ବାହାରିଲେ । ସେଇ ଦୁଷ୍ଟ କଳି ନିଜେ ମୃଗହୋଇ ରାଜାଙ୍କ ମୃଗୟା ବେଳେ ଆଗେ ଆଗେ ଧାଇଁଲା । ରାଜା ପିନ୍ଧିଥିବା ମୁକୁଟଟି ପୂର୍ବେ ଜରାସନ୍ଧ ପିନ୍ଧୁଥିବା ସ୍ୱର୍ଣ୍ଣମୁକୁଟ ଥିଲା । ମୁକୁଟରେ ଥିବା ଜରାସନ୍ଧଙ୍କର ଅଶୁଭ ସଂସ୍କାର ସାଙ୍ଗକୁ କଳିର ସୁବର୍ଣ୍ଣରେ ରହିବା ଅଧିକାର ବିପଦକୁ ଆହୁରି ବଢ଼ାଇ ଦେଲା । ଫଳରେ ବଣ ମଧ୍ୟରେ ରାଜା କ୍ଷୁଧା ତୃଷାରେ ଅତ୍ୟନ୍ତ (ଭୃଶଂ) ଆତୁର ହେଲେ । କଳିଯୁଗ ପ୍ରଭାବରେ ରଜୋଗୁଣରେ ପ୍ରଭାବିତ ହୋଇ ତାଙ୍କର ବୁଦ୍ଧି ଭ୍ରଷ୍ଟ ହୋଇଗଲା । ସାରା ଜୀବନ କାଳରେ ଏଇ କୃଷ୍ଣଭକ୍ତ ରାଜା ଆଦୌ ପାପ କରିନଥିଲେ । ଏବେ ସେଇ ରାଜଙ୍କର ବୁଦ୍ଧି-ବୃତ୍ତି ପାପ ପ୍ରବଣ ହେଲା ।

ପ୍ରଶ୍ନ-୮୫:ରାଜା ଜଳାଶୟ ଖୋଜୁ ଖୋଜୁ ମୃଗ ପଛରେ ଧାଇଁ ଧାଇଁ ଦୈବ ଯୋଗକୁ ଶମିକ ମୁନିଙ୍କ ଆଶ୍ରମରେ ପହଞ୍ଚି ମୁନିଙ୍କୁ ଜଳ ମାଗିଲେ । ମୁନି ଯେ ଗଭୀର ସମାଧି ମଗ୍ନ । ତୁରନ୍ତ ଜଳ ନ ମିଳି ବାରୁ ରାଜା କିପରି ଜୀବନର ୧ମ ପାପ କାମଟି କରି ବସିଲେ ?

**ସ ତୁ ବ୍ରହ୍ମଋଷେଃ ଅଂସେ ଗତ-ଅସୂନ୍ ଉରଗଂ ରୁଷା ।**
**ବିନିର୍ଗଚ୍ଛନ୍ ଧନୁଃ କୋଟ୍ୟା ନିଧାୟ ପୁରଂ ଆଗତଃ ।।୩୦।।**

ଉତ୍ତରःସେତେ ବେଳକୁ କଳି ମୃଗ ରୂପ ତ୍ୟାଗ କରି ମୃତ (ଗତ ଅସୁ) ସର୍ପ ରୂପରେ ଆଶ୍ରମ ସମ୍ମୁଖରେ ପଡ଼ିଥାଏ । ତୃଷା କାତର ରାଜର୍ଷି ପରୀକ୍ଷିତ କ୍ରୋଧରେ (ରୁଷା) ବ୍ରହ୍ମର୍ଷି ଶମିକ ମୁନିଙ୍କ କାନ୍ଧରେ (ଅଂସେ ) ମୃତ ସର୍ପକୁ ଧନୁ ଝୁଲରେ ଟେକି ପକାଇଦେଲେ । ତତ୍‌ପରେ ନିଜ ରାଜଧାନୀକୁ ଫେରି ଆସିଲେ ।

ପ୍ରଶ୍ନ-୮୬:ଘରେ ପହଞ୍ଚି ମସ୍ତକରୁ ମୁକୁଟ ଓହ୍ଲାଇ ଦେଲେ ରାଜା । ନିଜ କର୍ମରେ ଅନୁତପ୍ତ ମଧ୍ୟ ହେଲେ । ପ୍ରକୃତରେ ମୁନି ସମାଧିସ୍ଥ ଥିଲେ ନା ଆସନରୁ ଉଠି ରାଜାଙ୍କୁ ଜଳଦାନ କରିବା କଷ୍ଟ ସହିବାକୁ ବିମୁଖ ଥିଲେ -ତଥାପି ରାଜା ସତ୍ୟ ନିର୍ଣ୍ଣୟ କରିବାରେ ଅକ୍ଷମ । ଏଣେ ଋଷି ସିନା ସମାଧିରେ ରହିଲେ, ତାଙ୍କ ପୁତ୍ର ଶୃଙ୍ଗୀ ମଧ୍ୟ ଜଣେ ବ୍ରହ୍ମତେଜ ଅର୍ଜନ କରିଥିବା ବ୍ରାହ୍ମଣ ବାଳକ ଥିଲେ । ସେ ଏ

ଦୁର୍ଘଟଣା ଅନ୍ୟ ଋଷିବାଳକମାନଙ୍କ ମୁଖରୁ ଶୁଣି କି କାଣ୍ଡ କଲେ ?

**ତସ୍ୟ ପୁତ୍ରୋଽତି ତେଜସ୍ୱୀ ବିହରନ୍ ବାଳକୋଽର୍ଭକୈଃ ।**
**ରାଜ୍ଞା-ଅଘଂ ପ୍ରାପିତଂ ତାତଂ ଶ୍ରୁତ୍ୱା ତତ୍ର-ଇଦଂ ଅବ୍ରବୀତ୍ ॥୩୨॥**

ଉତ୍ତର:ଋଷିପୁତ୍ର ଶୃଙ୍ଗୀ ଭାବିଲେ ଏକଥା କରିଥିବା ଲୋକ ରାଜ୍ୟର ରାଜା ହେଲେ ମଧ୍ୟ ବ୍ରାହ୍ମଣ ଅପରାଧୀ । ସୁତରାଂ ସେ ଅତ୍ୟନ୍ତ କ୍ରୋଧିତ ହେଲେ । ଶାପ ଦେବାକୁ ବସିଲେ ।

ପ୍ରଶ୍ନ-୮୭ ଶୃଙ୍ଗୀ କହିଲେ-କ୍ଷତ୍ରିୟ ରାଜା ବିଷ୍ଣୁ ଅଂଶୀ ବୋଲି ପୂଜନୀୟ । କିନ୍ତୁ ପତିତ କ୍ଷତ୍ରିୟ ସର୍ବଦା ଦଣ୍ଡନୀୟ । ଭଗବାନ ଶ୍ରୀକୃଷ୍ଣ ଧରାଧାମରୁ ବିଦାୟ ନେବା ପରେ କ୍ଷତ୍ରିୟ ରାଜାମାନେ ଉତ୍ପଥ ଗାମୀ ହେଲେଣି । କ୍ରୋଧରେ କୌଶିକୀ ନଦୀଜଳ ଆଚମନ କରି ସେ କ'ଣ କଲେ?

**ଇତି ଲଂଘିତ ମର୍ଯ୍ୟାଦଂ ତକ୍ଷକଃ ସପ୍ତମେଽହନି ।**
**ଦଙ୍କ୍ଷ୍ୟତି ସ୍ମ କୁଳାଙ୍ଗାରଂ ଚୋଦିତୋ ମେ ତତଦ୍ରୁହମ୍ ॥୩୭॥**

ଉତ୍ତର:ସେ ଅତ୍ୟନ୍ତ କ୍ରୁଦ୍ଧ ଚିତ୍ତରେ କହିଲେ-ମୋ ପିତାଙ୍କ ଠାରେ ଅପରାଧୀ (ଦ୍ରୁହଂ) ପରୀକ୍ଷିତଙ୍କୁ ଆଜିଠାରୁ ୭ ଦିନରେ ମହା ବିଷାକ୍ତ ତକ୍ଷକ ନାଗ ଦଂଶନ କରୁ । ରାଜା ଶିଷ୍ଟାଚାର ମର୍ଯ୍ୟାଦା ପାଳନ କରିବାରେ ଅପରାଧ କରିଛନ୍ତି । ସେ କୁଳାଙ୍ଗାର । ସେ ମୃତ୍ୟୁଦଣ୍ଡ ପାଇବା ଉଚିତ ।

ପ୍ରଶ୍ନ-୮୮:ଶୃଙ୍ଗୀ ଆଶ୍ରମକୁ ଫେରି ଦେଖିଲେ ପିତାଙ୍କ ଗଳାରେ ମୃତ ସର୍ପ । ପିତାଜୀ ଗଭୀର ଧ୍ୟାନମଗ୍ନ । ସେ ଉଚ୍ଚ ସ୍ୱରରେ ରୋଦନ କଲେ । ଶମିକ ମୁନିଙ୍କ ଧ୍ୟାନ ଭାଙ୍ଗିଗଲା । ସେ ଦେଖିଲେ ନିଜ ଗଳାରେ ମୃତ ସର୍ପ । ଏ ଅଘଟଣ ଦେଖି ଶମିକ ମୁନି କ'ଣ କଲେ ?

**ବିସୃଜ୍ୟ ତଂ ଚ ପପ୍ରଚ୍ଛ ବତ୍ସ କସ୍ମାଦ୍ ହି ରୋଦିଷି ।**
**କେନ ବା ତେଽପକୃତଂ ଇତି-ଉକ୍ତଃ ସ ନ୍ୟବେଦୟଦ୍ ॥୪୦॥**

ଉତ୍ତର:ନିଜ ହାତରେ ମୃତ ସର୍ପକୁ ଦୂରକୁ ଫିଙ୍ଗିଦେଲେ । ପୁଅକୁ କାନ୍ଦିବାର କାରଣ ପଚାରିଲେ । ଶୃଙ୍ଗୀମୁନି ପିତାଙ୍କୁ ଆଗରୁ ଘଟିଥିବା ସମସ୍ତ ଘଟଣା ଆମୂଳ ଚୂଳ କହିଗଲେ ।

ପ୍ରଶ୍ନ-୮୯:ଋଷି ରାଜାଙ୍କର ବ୍ରହ୍ମଶାପ କଥା ଶୁଣି ଅତ୍ୟନ୍ତ ବ୍ୟସ୍ତ ହେଲେ । ଏଇ ତୁଚ୍ଛ ଅପରାଧ ପାଇଁ ଦେଶର ରାଜାଙ୍କୁ ଏତ ବଡ଼ ଦଣ୍ଡ । ପ୍ରାଣ ଦଣ୍ଡ । କହିଲେ-ହେ ଅଳ୍ପବୁଦ୍ଧି ବାଳକ, ରାଜା ବିଷ୍ଣୁ ଅଂଶୀ ଦେବତା ସମାନ । ତାଙ୍କ କ୍ଷାତ୍ର ତେଜରେ ପ୍ରଜାମାନେ ସୁରକ୍ଷିତ ରହନ୍ତି। ଉପଯୁକ୍ତ ରାଜା ବିହୁନେ ରାଜ୍ୟ ଅରାଜକ ହୋଇଯିବ । ସେ ଭଗବାନଙ୍କ ପାଖରେ ରାଜାଙ୍କର କୁଶଳ ମଙ୍ଗଳ ପ୍ରାର୍ଥନା କଲେ । ପରୀକ୍ଷିତଙ୍କ ଭଳି ମହାଭାଗବତଙ୍କୁ ପ୍ରାଣଦଣ୍ଡ ଅଭିଶାପ ଦେଇ ଅକ୍ଷମଣୀୟ ଅପରାଧ କରିଛି ତାଙ୍କ ଅପକ୍ୱବୁଦ୍ଧି ବାଳକ । ପରୀକ୍ଷିତ ପ୍ରତି ଶାପ ଦେବାରେ ସମର୍ଥ ଥିଲେ ମଧ୍ୟ କାହିଁକି ସେ ଶମିକଙ୍କ ପୁତ୍ରକୁ ଦଣ୍ଡ ଦେଲେନି ?

**ତିରସ୍କୃତା ବିପ୍ରଲବ୍ଧାଃ ଶପ୍ତାଃ କ୍ଷିପ୍ତା ହତା ଅପି ।**
**ନ-ଅସ୍ୟ ତଦ୍ ପ୍ରତିକୁର୍ବନ୍ତି ତଦ୍‌ଭକ୍ତାଃ ପ୍ରଭାବୋଽପି ହି।।୪୮।।**

ଉତ୍ତର: ଭଗବାନ କୃଷ୍ଣଙ୍କ ଭକ୍ତମାନେ ଏତେ ସହିଷ୍ଣୁ ହୋଇଥାନ୍ତି ଯେ ସେମାନେ ଅପମାନିତ ହେଲେ, କାହାଦ୍ୱାରା ଠକି ଯାଇଥିଲେ (ବିପ୍ରଲବ୍ଧାଃ), ଅଭିଶପ୍ତ ହେଲେ, ଉପେକ୍ଷିତ ହେଲେ କିମ୍ବା ପ୍ରାଣରେ ମରାଯାଉଥିଲେ ମଧ୍ୟ ସେ କେବେ ବି ପ୍ରତିହିଂସା ପରାୟଣ ହୁଅନ୍ତି ନାହିଁ । ଭକ୍ତର ସ୍ୱଭାବ ସଦା ଉଦାର ଓ ଅହିଂସା । ସେଇତ କୃଷ୍ଣ ଭକ୍ତିର ବାହାଦୁରୀ !!

ପ୍ରଶ୍ନ-୯୦: ଶମିକ ମୁନି ନିଜ ପୁଅର ଅପରାଧକୁ ବଡ଼ ଗୁରୁତର ବୋଲି ଭାବିଲେ । ଅନ୍ୟପକ୍ଷରେ ରାଜାଙ୍କ ବ୍ୟବହାରକୁ ମଧ୍ୟ ଅପରାଧ ବୋଲି ଗଣିଲେନି । ମୁନିଙ୍କର ଏଭଳି ଅସଂସାରୀ ବିପରୀତ ଆଚରଣର କାରଣ କ'ଣ ହୋଇପାରେ ?

**ପ୍ରାୟଶଃ ସାଧବୋ ଲୋକେ ପରୈଃ ଦ୍ୱନ୍ଦ୍ୱେଷୁ ଯୋଜିତାଃ ।**
**ନ ବ୍ୟଥନ୍ତି ନ ହୃଷ୍ୟନ୍ତି ଯତ ଆତ୍ମାଽଗୁଣ-ଆଶ୍ରୟଃ ।।୫୦।।**

ଉତ୍ତର:ଅଧ୍ୟାତ୍ମ୍ୟବାଦୀ ଲୋକମାନେ ସଂସାର ସୁଖ-ଦୁଃଖ ଜନିତ ଦ୍ୱନ୍ଦ୍ୱର ଊର୍ଦ୍ଧ୍ୱରେ ଅବସ୍ଥାନ କରନ୍ତି । ସେମାନେ ଅନୁକୂଳ ବସ୍ତୁ, ବ୍ୟକ୍ତି ଓ ପରିସ୍ଥିତିରେ ହର୍ଷିତ ହୁଅନ୍ତି ନାହିଁ କି ପ୍ରତିକୂଳ ବସ୍ତୁ, ବ୍ୟକ୍ତି ଓ ପରିସ୍ଥିତ ପ୍ରାପ୍ତିରେ ବ୍ୟଥିତ ହୁଅନ୍ତି ନାହିଁ । ଏହା ଜଣେ ଭକ୍ତର ସ୍ୱାଭାବିକ ସଦ୍‌ଗୁଣ ।

# ଅଥ ୧୯ଶ ଅଧ୍ୟାୟଃ

(ପରୀକ୍ଷିତଙ୍କର ପ୍ରାୟୋପବେଶନ ଓ ଶୁକଦେବଙ୍କର ପ୍ରାକଟ୍ୟ )

ସୂତ ଉବାଚ

ପ୍ରଶ୍ନ-୯୧:ଦେଖୁ ଦେଖୁ ଏତେ ବଡ଼ ଅଘଟଣ ଘଟିଗଲା ! ମହାରାଜ ପରୀକ୍ଷିତ ରାଜ ପ୍ରାସାଦକୁ ଫେରି କ'ଣ ଖାଇପିଇ ଶାନ୍ତିରେ ନିଶ୍ୱାସ ମାରିଲେ ?

**ମହୀପତିଃ ତୁ-ଅଥ ତତ୍ କର୍ମ ଗର୍ହ୍ୟଂ**

**ବିଚିନ୍ତୟନ୍ ନ-ଆତ୍ମକୃତଂ ସୁଦୁର୍ମନାଃ ।**

**ଅହୋ ମୟା ନୀଚଂ ଅନାର୍ଯ୍ୟବତ୍ କୃତଂ**

**ନିରାଗସି ବ୍ରହ୍ମଣି ଗୂଢ଼ ତେଜସି ॥୧॥**

ଉତ୍ତର:ନା,ଆଦୌ ନୁହେଁ ବରଂ ରାଜା କୃତକର୍ମ କଥା ଭାବି ଭାବି ଉଦାସ ହୋଇଗଲେ । ଅନୁତାପ ନିଆଁରେ ଜଳିଲେ । ଶମିକ ମୁନି ଜଣେ ତେଜସ୍ୱୀ ବ୍ରାହ୍ମଣ । ଗଭୀର ସମାଧିରେ ଥିବାରୁ ତାଙ୍କର ବ୍ରହ୍ମତେଜ ଗୁପ୍ତ ଥିଲା । ତେଣୁ ସେ ନିଷ୍ପାପ । ମୁଁ ନିଜେ ଏକଥା ନ ଜାଣି ତାଙ୍କଠାରେ ଘୋର ଅପରାଧ କରିଛି ।

ପ୍ରଶ୍ନ-୯୨: ରାଜା ଜାଣିପାରିଲେ ଯେ-ଏ ଦୁର୍ଘଟଣାର କାରଣ ସେଇ ଜରାସନ୍ଧଙ୍କର ସ୍ୱର୍ଣ୍ଣମୁକୁଟ ଅଟେ । ସୁତରାଂ ମୋ ଭଳି ଅଧର୍ମୀ ଲୋକ ପାଇଁ ନିକଟ ଭବିଷ୍ୟତରେ ନିଶ୍ଚୟ କିଛି ସଂକଟ ଆସିପାରେ । ମୋତେ ଯଦିଶୀଘ୍ର ଦଣ୍ଡ ମିଳନ୍ତା ମୁଁ ପ୍ରାୟଶ୍ଚିତ କରିପାରନ୍ତି । ଭବିଷ୍ୟତରେ ଯେପରି ଏଭଳି ପାପ ଆଉ କରିବାକୁ ସାହସ କରିପାରନ୍ତି ନାହିଁ । ସେ ନିଜ ବିଳାସୀ ଜୀବନ ରାଜକୀୟ ପଦବୀ ଓ ଧର୍ମାଷ୍ଠାନକୁ ଶତ ଧିକାକାର କଲେ । ରାଜା ଏହି ଭଳି ଅଶୁଭ କଥା ଚିନ୍ତନ କରୁକରୁ ମୁନିଙ୍କ ଆଶ୍ରମରୁ ଆସିଥିବା ଜଣେ ମୁନିକୁମାରଙ୍କର ମୁଖରୁ କ'ଣ ଶୁଣିବାକୁ ପାଇଲେ ?

**ସଃ ଚିନ୍ତୟନ୍ ନ-ଇତ୍ଥଂ ଅଥ-ଅଶୃଣୋଦ୍ ଯଥା**
**ମୁନେଃ ସୁତ-ଉକ୍ତୋ ନିରତିଃ ତକ୍ଷକ-ଆଖ୍ୟଃ ।**
**ସ ସାଧୁ ମେନେ ନ-ଅଚିରେଣ ତକ୍ଷକ**
**-ଅନଳଂ ପ୍ରସକ୍ତସ୍ୟ ବିରକ୍ତି କାରଣମ୍ ।।୪।।**

ଉତ୍ତର: ରାଜା ସମ୍ବାଦ ପାଇଲେ କରିଥିବା ଅପରାଧର ଫଳସ୍ୱରୂପ ଶୃଙ୍ଗୀମୁନି ତାଙ୍କୁ ବ୍ରହ୍ମଶାପରେ ଦଣ୍ଡିତ କରିଛନ୍ତି । ଠିକ୍ ସପ୍ତମ ଦିନରେ ବିଷାକ୍ତ ତକ୍ଷକ ସର୍ପ ଦଂଶନରେ ସେ ମୃତ୍ୟୁକୁ ଆଲିଙ୍ଗନ କରିବାକୁ ବାଧ ହେବେ । ଏ ବ୍ରହ୍ମ ଦଣ୍ଡ କଥା ଶ୍ରବଣ କରୁକରୁ ରାଜାଙ୍କର ତୀବ୍ର ସଂସାର ବୈରାଗ୍ୟ ଉଦୟ ହେଲା । ସେ ଏ ବ୍ରହ୍ମଶାପକୁ ବ୍ରହ୍ମ ଆଶୀର୍ବାଦ ଭାବି ନିଜ ଉଦାର ଗୁଣରେ ସହର୍ଷ ସ୍ୱୀକାର କଲେ । ଭାବିଲେ -ମୋ ପାଇଁ ଶ୍ରୀକୃଷ୍ଣ ଶାପ ଅବତାର ହେବେ ।

ପ୍ରଶ୍ନ-୯୩: ମହାରାଜ ପରୀକ୍ଷିତ ଜୀବନ କାଳରେ ଇହଲୋକ ସୁଖଭୋଗ ଆଶା ତ୍ୟାଗ କରିସାରିଥିଲେ । ବ୍ରହ୍ମଶାପ କଥା ଶୁଣି ଏବେ ପରଲୋକ ସୁଖ (ମୁକ୍ତି ବା ଇନ୍ଦ୍ରାଦି ଦେବତାଙ୍କ ପଦ ପ୍ରାପ୍ତି ଆଦି ) କାମନା ଛାଡ଼ି ଦେଲେ । ସଙ୍ଗେ ସଙ୍ଗେ ସିଂହାସନରେ ପୁତ୍ର ଜନ୍ମେଜୟଙ୍କୁ ଅଭିଷେକ କରାଇଲେ । ମୃତ୍ୟୁକୁ ଆନନ୍ଦମୟ ବା ଉଜାଗର କରିବାକୁ ବାଟ ଖର୍ଚ୍ଚ ଯୋଗାଡ଼ କରିବାକୁ ନିଶ୍ଚୟ କଲେ । ଶ୍ରେୟ ମାର୍ଗର ଅନେକ ମତ ଓ ପନ୍ଥ ମଧ୍ୟରୁ କେଉଁଟିକୁ ରାଜା ନିର୍ବାଚନ କଲେ ?

**ଅଥୋ ବିହାୟ-ଇମଂ ଅମୁଂ ଚ ଲୋକଂ**
**ବିମର୍ଷିତୌ ହେୟତୟା ପୁରସ୍ତାତ୍ ।**
**କୃଷ୍ଣ-ଅଙ୍ଘ୍ରି ସେବାଂ ଅଧିମନ୍ୟମାନ**
**ଉପାବିଶଦ୍ ପ୍ରାୟଂ ଅମର୍ତ୍ତ୍ୟ ନଦ୍ୟାମ୍ ।।୫।।**

ଉତ୍ତର: ରାଜାଙ୍କ ପୂର୍ବଜ ପାଞ୍ଚ ପାଣ୍ଡବ ଗୋବିନ୍ଦ ବିୟୋଗରେ ମହାଯାତ୍ରା ନିଷ୍ପତ୍ତି ନେଇଥିଲେ । ଦେବତା ଆତ୍ମା ହିମାଳୟରେ ଦେହ ତ୍ୟାଗ ପର୍ଯ୍ୟନ୍ତ କୃଷ୍ଣ ମନ୍ତ୍ର ଜପି-କୃଷ୍ଣ ରୂପ ଧ୍ୟାନ କରି ଏକମୁହାଁ ହୋଇ ଚାଲିଥିଲେ । ଏବେ ତାଙ୍କର ଦାୟାଦ ମହାଭକ୍ତ ପରୀକ୍ଷିତ ନିଷ୍ପତ୍ତି ନେଲେ ଯେ - ସେ ପବିତ୍ର ଗଙ୍ଗାନଦୀ କୂଳରେ (ଅମର୍ତ୍ତ୍ୟ ନଦ୍ୟାଂ) ସତ୍ସଙ୍ଗ କରିବେ । ମୁନି ଋଷି ଗହଣରେ କୃଷ୍ଣ ଚରଣ କମଳ ଧ୍ୟାନ କରିବେ ନ ଖାଇ ନ ପିଇ । ରାଜାଙ୍କର ଅଟଳ ନିଷ୍ପତ୍ତି । ଖାଇବା

ପିଇବା ଆସକ୍ତି ହେତୁ ସିନା ତାଙ୍କୁ ମିଳିଲା ବ୍ରହ୍ମଶାପ । ଏଣିକି ସେ ଆମରଣ ପ୍ରାୟୋପବେଶନ କରି କେବଳ କୃଷ୍ଣ କଥା ଅମୃତ ଭୋଜନ-ପାନ କରିବେ ।

ପ୍ରଶ୍ନ-୯୪: ପରୀକ୍ଷିତଜୀ ଭାରତ ବର୍ଷରେ ଏତେ ନଦୀ ଥାଉ ଥାଉ ସତ୍‌ସଙ୍ଗ ଅଧିବେଶନ ପାଇଁ ଗଙ୍ଗାନଦୀ କୂଳକୁ କାହିଁକି ବାଛିଲେ ?

**ଯା ବୈ ଲସଦ୍ ଶ୍ରୀ ତୁଳସୀ ବିମିଶ୍ର**
**କୃଷ୍ଣ-ଅଙ୍ଘ୍ରି ରେଣୁ-ଅଭ୍ୟଧିକ-ଅମ୍ବୁନେତ୍ରୀ ।**
**ପୁନାତି ଲୋକାନ୍ ଉଭୟତ୍ର ସ-ଈଶାନ୍**
**କଃ ତାଂ ନ ସେବତେ ମରିଷ୍ୟମାଣଃ ॥୬॥**

ଉତ୍ତର: ଅନେକ ବିଶେଷତା ଅଛି ଗଙ୍ଗା ନଦୀରେ । ଅନ୍ୟ ନଦୀ ତୁଳନାରେ ତାର ସୌଭାଗ୍ୟ ଅତୁଳନୀୟ । ସେ ବଦ୍ରିନାଥ ଧାମରେ ନର-ନାରାୟଣଙ୍କ ସେବାରେ ଅର୍ପିତ ଛଡ଼ା ଫୁଲ ଓ ତୁଳସୀ ତା ଜଳରେ ଧରି ଗର୍ବିତ । ସେ ସ୍ୱର୍ଗରେ ଭଗବାନଙ୍କ ଚରଣ କମଳ ନଖ କୋଣରୁ ଜନ୍ମ ନେଇଛି । କଳ କଳ ନାଦ କରି ସେ ନାଚି ନାଚି ହସ୍ତିନା ରାଜ୍ୟରେ ନିଜକୁ ଅତି ଧନ୍ୟା ବୋଲି ଘୋଷଣା କରୁଛି । ସେ ଦେବ ଦେବ ମହାଦେବଙ୍କ ମସ୍ତକରେ ବିରାଜିତା । ତାର ୩ୟ ନେତ୍ର ପ୍ରଜ୍ଞାଚକ୍ଷୁ ଉନ୍ମୀଳିତା (ଅଧିକାମ୍ବୁ ନେତ୍ରୀ) । ଶଙ୍କରଜୀ କହନ୍ତି ପତିତପାବନୀ ଗଙ୍ଗାଙ୍କୁ ଧାରଣ କରିଥିବାରୁ ମୁଁ ମଧ୍ୟ ନିଷ୍ପାପ ବୋଲାଉଛି । ଗଙ୍ଗାନଦୀ କି ସ୍ୱର୍ଗ-ମର୍ତ୍ତ, ସାଧକର ସ୍ଥୂଳ ଦେହ-ସୂକ୍ଷ୍ମ ଦେହ, ଇହଲୋକ-ପରଲୋକ ଉଭୟ ସୁଧାରିପାରେ । ଆସନ୍ନ ମୃତ୍ୟୁର ପରୱାନା ପାଇଥିବା ମରଣଶୀଳ (ମରିଷ୍ୟମାତଃ) ରାଜା ପରୀକ୍ଷିତ ଗଙ୍ଗାନଦୀ କୂଳରେ ସତ୍‌ସଙ୍ଗ ନକରି କ'ଣ ପାଇଁ ଅନ୍ୟ ନଦୀକୂଳକୁ ଆଶ୍ରୟ କରନ୍ତେ ?

ପ୍ରଶ୍ନ-୯୫: ରାଜଙ୍କ ବ୍ରହ୍ମଶାପ ଓ ଗଙ୍ଗାକୂଳରେ ସତ୍‌ସଙ୍ଗ କରିବା ନିଷ୍ପତ୍ତି ଶୁଣି ସଙ୍ଗେ ସଙ୍ଗେ ଜମାହେଲେ ଭାରତର କୋଣ-ଅନୁକୋଣରୁ ଆଗତ ସାଧୁସନ୍ଥ ସମାଜ । ସେମାନଙ୍କ ମଧ୍ୟରେ ଶୋଭା ପାଇଲେ ଅନେକ ରାଜର୍ଷି, ବ୍ରହ୍ମର୍ଷି ଓ ଦେବର୍ଷି ଗଣ । ମହାଋଷି ପରାଶର, ବଶିଷ୍ଠ,ଅତ୍ରି,ଚ୍ୟବନ, ଗାଧିସୁତ ବିଶ୍ୱାମିତ୍ର, ଭରଦ୍ୱାଜ, ଗୌତମ, ଅଗସ୍ତ୍ୟ, ମୈତ୍ରେୟ, ଶୁକଦେବଙ୍କ ପିତା ବ୍ୟାସଦେବ । ବ୍ୟାସଦେବଙ୍କ ଗୁରୁ ଦେବର୍ଷି ନାରଦ ମଧ୍ୟ ଆସି ସତ୍‌ସଙ୍ଗ ମାହାତ୍ମ୍ୟର ପତାକା ଉଡ଼ାଇଲେ । ଏ ସମସ୍ତଙ୍କ ସତ୍‌ସଙ୍ଗ ଲାଭକରି ରାଜା କିଭଳି ଶବ୍ଦରେ ସେମାନଙ୍କ ପ୍ରତି କୃତଜ୍ଞତା ଜଣାଇଲେ ?

ରାଜା ଉବାଚ

**ଅହୋ ବୟଂ ଧନ୍ୟତମା ନୃପାଣାଂ**
**ମହତ୍ତମ-ଅନୁଗ୍ରହଣୀୟ ଶୀଳାଃ ।**
**ରାଜ୍ଞାଂ କୁଳଂ ବ୍ରାହ୍ମଣ ପାଦ ଶୌଚାଦ୍**
**ଦୂରାଦ୍ ବିସୃଷ୍ଟଂ ବତ ଗର୍ହ୍ୟକର୍ମ ।।୧୩।।**

ଉତ୍ତର: ରାଜା କହିଲେ -ସଂସାରରେ ଭୋଗବିଳାସୀ ରାଜାମାନଙ୍କୁ ଋଷି ମୁନିଗଣ ବହୁ ଦୂରରୁ ବର୍ଜନ କରିଥାନ୍ତି । ରାଜାମାନେ ପବିତ୍ର ବ୍ରାହ୍ମଣ-ବୈଷ୍ଣବଙ୍କ ପଦଧୌତ ଜଳରୁ ସଦା ବଂଚିତ ରହିଥାଆନ୍ତି । ଆଜି କୁରୁକୁଳରେ ଜନ୍ମିଥିବା ସମସ୍ତ ରାଜା ଧନ୍ୟ । କିନ୍ତୁ ସେମାନଙ୍କ ମଧ୍ୟରେ ମୁଁ ଆଜି ଧନ୍ୟ ଅତି ଧନ୍ୟ । ଜୀବନର ସାୟାହ୍ନରେ ଆପଣମାନଙ୍କର ଭଳି ମହାତ୍ମା ମାନଙ୍କ ପାଦଧୂଳି ଏ ସତ୍‌ସଙ୍ଗ ସଭାରେ ପାଇପାରିଛି । ଏହା ହିଁ ମୋର ଅହୋଭାଗ୍ୟ ।

ପ୍ରଶ୍ନ-୯୬: ଋଷି ମଣ୍ଡଳୀ ମଧ୍ୟରେ ରାଜା ନିଃସଂକୋଚରେ କହିଲେ- ବ୍ରହ୍ମଶାପ ଆଜି ମୋ ପାଇଁ ଭଗବତ କୃପାରେ ପରିଣତ ହୋଇଛି । ତା ନ ହୋଇଥିଲେ ଆପଣମାନଙ୍କ ସତ୍‌ସଙ୍ଗ ମୋତେ ମିଳିପାରି ଥାଆନ୍ତା କି ? ନ ହେଉ ପଛେ ଅଶ୍ୱମେଧ ଯଜ୍ଞ ବା ବିଶ୍ୱଶାନ୍ତି ଯଜ୍ଞ । ରାଜା ଅନୁରୋଧ କଲେ ଆପଣମାନେ ଏବେ କୃଷ୍ଣକଥା, କୃଷ୍ଣଲୀଳା ଗାଇ ଏ ସଭାକୁ ସୌଭାଗ୍ୟ ମଣ୍ଡିତ କରନ୍ତୁ । ଆପଣମାନେ ମୋତେ ଆଶୀର୍ବାଦ କରନ୍ତୁ-ମୁଁ ଶୀଘ୍ର ଏ ଅପବିତ୍ର ଦେହ ତ୍ୟାଗ କରି ପୁଣି ଜନ୍ମହେଲେ ଏହି ହରିଭଜନ କରିବି । ରାଜା ସମସ୍ତ ଅତିଥିଙ୍କୁ ପାଦ୍ୟ, ଅର୍ଘ୍ୟ, ଆଚମନୀୟ, ଆସନାଦି ଦ୍ୱାରା ଯଥୋଚିତ ସତ୍କାର କରି ନିଜେ ଗଙ୍ଗାନଦୀର ଦକ୍ଷିଣ ତଟରେ ଉତ୍ତର ଦିଗକୁ ମୁଖ କରି କୁଶ ଆସନରେ ବସିଗଲେ । ମର୍ତ୍ତ୍ୟଲୋକରେ ଏ ବିରଳ ସତ୍‌ସଙ୍ଗ ସମ୍ମିଳନୀ ଆରମ୍ଭ ହେବା ମାତ୍ରେ ଇନ୍ଦ୍ରଙ୍କର ସ୍ୱର୍ଗରାଜ୍ୟରେ କିପରି ଆଲୋଡ଼ନ ହେଲା?

**ଏବଂ ଚ ତସ୍ମିନ୍ ନର ଦେବ ଦେବେ**
**ପ୍ରାୟୋପବିଷ୍ଟୋ ଦିବି ଦେବ ସଙ୍ଘାଃ ।**
**ପ୍ରଶଂସ୍ୟ ଭୂମୌ ବ୍ୟକିରନ୍ ପ୍ରସୂନୈଃ**
**ମୁଦା ମୁହୁଃ ଦୁନ୍ଦୁଭୟଃ ଚ ନେଦୁଃ ।।୧୮।।**

ଉତ୍ତର: ରାଜା ପ୍ରାୟୋପବେଶନରେ ବସିବାର ଦେଖି ସ୍ୱର୍ଗର ଭୋଗୀ

ବିଳାସୀ ଦେବୀ-ଦେବତାମାନେ ଭୂଲୋକର ଚକ୍ରବର୍ତ୍ତୀ ରାଜା ପରୀକ୍ଷିତଜୀଙ୍କର ବୈରାଗ୍ୟ ଓ କୃଷ୍ଣଚରଣସେବା ଲାଳସାକୁ ଭୂରି ଭୂରି ପ୍ରଶଂସା କଲେ । ବିମାନରେ ସପରିବାରେ ଆସି ପହଞ୍ଚିଲେ । ବିମାନରୁ ଦିବ୍ୟ ପୁଷ୍ପ ବାରମ୍ବାର ବର୍ଷଣ କଲେ । ସ୍ୱର୍ଗବାଦ୍ୟ ଦିବ୍ୟ ଦୁନ୍ଦୁଭି ନାଦରେ ସଭାସ୍ଥଳ ପ୍ରକମ୍ପିତ ହେଲା । ମର୍ତ୍ତ୍ୟଲୋକର ଜୟ ହେଉ । କୃଷ୍ଣ ଚରଣ ସେବକଙ୍କର ଜୟ ହେଉ ।

ପ୍ରଶ୍ନ-୯୭: ସତ୍‌ସଙ୍ଗ ମଣ୍ଡଳୀରେ ଉପସ୍ଥିତ ଋଷିମୁନି ସାଧୁ ସନ୍ଥଗଣ ସମସ୍ୱରରେ ପରୀକ୍ଷିତଙ୍କ କାର୍ଯ୍ୟଙ୍କୁ ପ୍ରଶଂସା କଲେ । ସେମାନେ କହିଲେ -ହେ ରାଜର୍ଷି, ଆପଣଙ୍କ ହସ୍ତିନାରାଜ୍ୟର ସିଂହାସନ ତ୍ୟାଗ ଆମପାଇଁ ଆଦୌ ଆଶ୍ଚର୍ଯ୍ୟଜନକ ନୁହେଁ । ତ୍ରିକାଳଦର୍ଶୀ ମୁନିମାନେ ପୁଣି ଭବିଷ୍ୟବାଣୀ କଲେ - ଆପଣ ଏ ମର ଦେହ ତ୍ୟାଗ କରି ବୈକୁଣ୍ଠ-ମହାବୈକୁଣ୍ଠକୁ ଯାଉଛନ୍ତି ବିଷ୍ଣୁପାର୍ଷଦ ରୂପେ । ସେମାନେ ରାଜାଙ୍କୁ ଭରସା ଦେଇ କହିଲେ-ହେ ରାଜନ, ଆମେ ସଂକଳ୍ପ କରୁଛୁ ଆପଣଙ୍କ ବୈକୁଣ୍ଠ ଯାତ୍ରା ଆରମ୍ଭ ହେବା ପର୍ଯ୍ୟନ୍ତ ଆମେ ନିଜ ନିଜ ଆସନ ଛାଡ଼ିବୁ ନାହିଁ । ଆମେ କୃଷ୍ଣଲୀଳା ଶ୍ରବଣ କରୁଥିବୁ । ଉତ୍ତରରେ ରାଜା ପରୀକ୍ଷିତ ସମସ୍ତଙ୍କୁ ସାଦର ଅଭିନନ୍ଦନ କଲେ । ଉଦାତ୍ତ କଣ୍ଠରେ କହିଲେ-ଆପଣଙ୍କ ଜୀବନ ଧାରଣ ସର୍ବଦା ଅନ୍ୟର ଜୀବନକୁ କୃତାର୍ଥ କରିବାକୁ । ସମବେତ ୬୬ ହଜାର ଶ୍ରୋତୃମଣ୍ଡଳୀଙ୍କୁ ସମ୍ବୋଧନ କରି ରାଜା କେଉଁ ପ୍ରଶ୍ନ ଦୁଇଟି ପଚାରିଲେ ?

**ତତଃ ଚ ବଃ ପୃଚ୍ଛ୍ୟଂ ଇମଂ ବିପୃଚ୍ଛେ**
**ବିଶ୍ରଭ୍ୟ ବିପ୍ରା ଇତି କୃତ୍ୟତାୟାମ୍ ।**
**ସର୍ବାତ୍ମନା ମ୍ରିୟମାଣୈଃ ଚ କୃତ୍ୟଂ**
**ଶୁଦ୍ଧଂ ଚ ତତ୍ର-ଆମୃଶତ-ଅଭିଯୁକ୍ତାଃ ॥୨୪॥**

ଉତ୍ତର: ହେ ବିଶ୍ୱାସନୀୟ ବ୍ରାହ୍ମଣ ବର୍ଗ (ବିଶ୍ରଭ୍ୟ ବିପ୍ରା), ମୁଁ ଆପଣମାନଙ୍କୁ ସମଗ୍ର ମାନବ ଜାତି ପକ୍ଷରୁ ଦୁଇଟି ସର୍ବଥା ପଚାରିବା ଯୋଗ୍ୟ ପ୍ରଶ୍ନ ପଚାରୁଛି । ଆପଣମାନେ ନିଷ୍କପଟରେ ଆମପ୍ରତି କୃପା କରି ଉତ୍ତର ରୂପରେ ଆଦେଶ କରନ୍ତୁ । ମନୁଷ୍ୟ ମାତ୍ରକେ ଜୀବନସାରା କି କର୍ମ କଲେ ତାର କର୍ତ୍ତବ୍ୟ ସମାପ୍ତ (କୃତ-କୃତ୍ୟ) ହେବ ବା ଇତି ହେବ । ତାର ଆଉ କର୍ମ କରିବାକୁ କିଛି ବାକି ରହିବନି । ପୁଣି ମରଣାସନ୍ନ ମନୁଷ୍ୟର ଏକମାତ୍ର କର୍ତ୍ତବ୍ୟ କ'ଣ ? ଶ୍ରେୟ ମାର୍ଗ ତ ଅନେକ, ହେଲେ ପରମ ଶ୍ରେୟମାର୍ଗଟି କ'ଣ ?

ପ୍ରଶ୍ନ-୯୮:ଅତି ଅଦ୍ଭୁତ କଥା । ବ୍ୟାସ-ନାରଦ ବଶିଷ୍ଠ ପରାଶରାଦି ପ୍ରଶ୍ନ

ଶୁଣି ମୌନ ରହିବାକୁ ପସନ୍ଦ କଲେ । ସେତେ ବେଳେ ପରମ କୃଷ୍ଣଭକ୍ତ ରାଜାଙ୍କ ପ୍ରଶ୍ନର ସମାଧାନ ଲାଗି ପୁରୁଷୋତ୍ତମ ଭଗବାନ ଶ୍ରୀକୃଷ୍ଣ କି ଆଶ୍ଚର୍ଯ୍ୟ, ଅଲୌକିକ ହଟଚମଟ ଦେଖାଇଲେ ସଭା ମଧ୍ୟରେ ?

**ତତ୍ର-ଅଭବଦ୍ ଭଗବାନ୍ ବ୍ୟାସପୁତ୍ରୋ**

**ଯଦୃଚ୍ଛୟା ଗାଂ ଅଟମାନୋଽନପେକ୍ଷଃ ।**

**ଅଲକ୍ଷ୍ୟ ଲିଙ୍ଗୋ ନିଜ ଲାଭ ତୁଷ୍ଟୋ**

**ବୃତଃ ଚ ବାଳୈଃ ଅବଧୂତ ବେଷଃ ।।୨୫।।**

ଉତ୍ତରଃ ନିଜ ଭକ୍ତର ସଂକଟ କାଳରେ ଶ୍ରୀ କୃଷ୍ଣଙ୍କ କୃପାରୁ ଆଗରୁ ଅପେକ୍ଷାକରି ରହିଥିବା ଭଳି ବ୍ୟାସଦେବଙ୍କ ସୁଯୋଗ୍ୟ ସନ୍ତାନ ଶୁକଦେବ ପରମହଂସଙ୍କୁ ଶୂନ୍ୟରୁ ପ୍ରକଟ କରିଦେଲେ ସ୍ଥୂଳ ଦେହରେ । ଦୁଇ ପ୍ରଶ୍ନର ଉତ୍ତର ସେ ନିଜେ ଦେବେ ଶୁକଦେବ ରୂପରେ ସମସ୍ତଙ୍କୁ କୃଷ୍ଣ କଥା ଶ୍ରବଣ କରାଇ । ଶୁକଦେବ ଭଗବାନଙ୍କର ସ୍ୱତନ୍ତ୍ର ଶକ୍ତି ଶ୍ରୀରାଧାଙ୍କ ଭକ୍ତି, ଶ୍ରୀକୃଷ୍ଣଙ୍କ ଜ୍ଞାନ ଓ ଶ୍ରୀଶଙ୍କରଜୀଙ୍କ ବୈରାଗ୍ୟର ମିଳିତ ମୂର୍ତ୍ତି ଧରିଥାନ୍ତି । ନିଜ ଇଚ୍ଛାରେ ସେ ସଂସାର ବୁଲନ୍ତି । କାହାଠାରୁ କିଛି ପାଇବା ଆଶା ତାଙ୍କର ନଥାଏ (ଅନପେକ୍ଷଃ) । ସେ ଆପ୍ତକାମ ଭକ୍ତ । ସନ୍ନ୍ୟାସର ଚିହ୍ନ ଶିଖା, ସୂତ୍ର, ଦଣ୍ଡ କମଣ୍ଡଳୁ କେବେଠାରୁ ଛାଡ଼ି ସାରିଥାନ୍ତି । ଯଦୃଚ୍ଛା ଲାଭ ସନ୍ତୁଷ୍ଟ ବା ଆତ୍ମାରାମ ଯୋଗୀ ସେ । ତାଙ୍କ ଦେହରେ ଭସ୍ମ ବ୍ୟତୀତ ଅନ୍ୟ କୌଣସି ବସନ ଭୂଷଣ ନାହିଁ । ତାଙ୍କର ଏଭଳି କୌତୁକ ବେଶ ଦେଖିବାକୁ ଛୋଟ ଛୋଟ ବାଳକ ବାଳିକା ଘେରିଥାନ୍ତି ତାଙ୍କୁ ।

ପ୍ରଶ୍ନ-୯୯:ଏଭଳି ଅଦୃଷ୍ଟ ପୂର୍ବ, ଅଶ୍ରୁତପୂର୍ବ ମହାଯୋଗୀଙ୍କ ଠାରେ ଆଉ କେଉଁ କେଉଁ ବିଚିତ୍ର ଲକ୍ଷଣ ସବୁ ଦୃଶ୍ୟମାନ ହେଉଥିଲା ?

**ତଂ ଦ୍ୱି-ଅଷ୍ଟବର୍ଷଂ ସୁକୁମାର ପାଦ**

**କର-ଉରୁ ବାହୁ-ଅଂସ କପୋଳ ଗାତ୍ରମ୍ ।**

**ଚାରୁ-ଆୟତ-ଅକ୍ଷ-ଉନ୍ନସ ତୁଲ୍ୟ କର୍ଣ୍ଣ**

**ସୁ ଭ୍ରୂ-ଆନନଂ କମ୍ବୁ ସୁଜାତ କଣ୍ଠମ୍ ।।୨୬।।**

ଉତ୍ତରଃ ଜନ୍ମଠାରୁ ତାଙ୍କର ସଦା ସର୍ବଦା ବୟସ ଷୋହଳ । ହସ୍ତ, ପାଦ, ଉରୁ, ବାହୁ, କାନ୍ଧ, କପୋଳ ଓ ସକଳ ଅଙ୍ଗ ଅତ୍ୟନ୍ତ ସୁନ୍ଦର ଓ କୋମଳ । ନେତ୍ର ବଡ଼ ବଡ଼ ଓ ଅତ୍ୟନ୍ତ ସୁନ୍ଦରା ଶୁକପକ୍ଷୀର ନାସିକା ଭଳି ଉନ୍ନତ ନାସା, ବଡ଼ ବଡ଼

କର୍ଣ୍ଣ, ସୁନ୍ଦର ଭ୍ରୂ , କମନୀୟ ମୁଖ ମଣ୍ଡଳ ଓ ସୁନ୍ଦର ଧବଳ ଶଙ୍ଖ ଭଳି ଗ୍ରୀବା ଶୋଭାୟମାନ ହେଉଥାଏ ମୁନିଶ୍ରୀଙ୍କ ଦିବ୍ୟ କଳେବରରେ ।

**ରାଜା ଉବାଚ**

ପ୍ରଶ୍ନ-୧୦୦:ପରାଶର ଋଷିଙ୍କ ନାତି ଶ୍ରୀଶୁକ ଦେବଙ୍କ ଅଙ୍ଗମାନଙ୍କରେ ଆଉ କେଉଁ କେଉଁ ଅଙ୍ଗ ସୌଷ୍ଠବ ଓ ସୌନ୍ଦର୍ଯ୍ୟ ପରିଲକ୍ଷିତ ହେଉଥିଲା ?

**ନିଗୂଢ଼ ଜତ୍ରୁଂ ପୃଥୁ ତୁଙ୍ଗ ବକ୍ଷସଂ**
**ଆବର୍ତ୍ତ ନାଭିଂ ବଳି ବଲ୍ଗୁ-ଉଦରଂ ଚ ।**
**ଦିଗମ୍ବରଂ ବକ୍ତ୍ର ବିକୀର୍ଣ୍ଣ କେଶଂ**
**ପ୍ରଲମ୍ବ ବାହୁଂ ସ୍ୱ-ଅମର -ଉତ୍ତମ-ଆଭମ୍ ।।୨୭।।**

ଉତ୍ତର: ମାଂସଳ ଜଙ୍ଘ, ଓସାରିଆ ଛାତି, ଭ୍ରମର ଭଳି ନାଭି କମଳ, ମନୋହର (ବଲ୍‌ଗୁ) ଉଦର, ତ୍ରିବଳିରେ ଶୋଭିତ, ଆଜାନୁ ଲମ୍ବିତ ବାହୁଦ୍ୱୟ ଓ ମୁଖ ମଣ୍ଡଳରେ ସୁନ୍ଦର ମନଲୋଭା ଅଳକା ଆବଳି ରୂପୀ ସକଳ ଅଳଂକାର ମୁନିଙ୍କ ସୌନ୍ଦର୍ଯ୍ୟ ନ ବଢ଼ାଇ ବରଂ ମୁନିଙ୍କ ଦେହରେ ଥିବାରୁ ସେମାନେ ସମସ୍ତେ ନିଜେ ନିଜେ ଗର୍ବ ଗୌରବରେ ଫାଟି ପଡୁଥାନ୍ତି ।

ପ୍ରଶ୍ନ-୧୦୧:ମହାମୁନିଙ୍କ ପ୍ରାକଟ୍ୟରେ ସଭାସ୍ଥଳୀ ଏକ ଦିବ୍ୟ ଆଲୋକରେ ଉଦ୍‌ଭାସିତ ହୋଇ ଉଠିଲା । ମହାରାଜ ପରୀକ୍ଷିତ ଦୌଡ଼ିଲେ ବ୍ରହ୍ମରାତ ଶୁକଦେବଙ୍କୁ ଆଚାର୍ଯ୍ୟ ପଦରେ ବରଣ କରିବାକୁ । ସେ ଶୁକଦେବଙ୍କୁ ସଭକ୍ତିକ ଦଣ୍ଡପ୍ରଣାମ କଲେ । ପାଦ୍ୟ, ଅର୍ଘ୍ୟ, ଆଚମନୀୟ ଦ୍ୱାରା ସତ୍କାର କରି ମୁଖ୍ୟ ଆଚାର୍ଯ୍ୟଙ୍କ ଆସନରେ ତାଙ୍କୁ ବସାଇଲେ । ସାଧୁସନ୍ଥ ମୁନି-ଋଷିଙ୍କର ସେ ମହାଧିବେଶନ ଦେଖିଲେ ମନେ ହେଉଥିଲା-ସତେ କି ଦେବୀ-ଦେବତା,ସାଧୁସନ୍ଥଗଣ ନକ୍ଷତ୍ର ମଣ୍ଡଳୀ । ମୁନିଋଷିଗଣ ଗ୍ରହମାନଙ୍କ ପ୍ରତିନିଧି । ଶୁକଦେବ ପରମହଂସ ସେମାନଙ୍କ ମଧ୍ୟରେ ଆହ୍ଲାଦଦାୟକ ଚନ୍ଦ୍ରଦେବ । ସମଗ୍ର ସଭାମଣ୍ଡଳୀ ଦ୍ୱାରା ସମ୍ମାନିତ ହେଲେ ପ୍ରବଚକ ମହୋଦୟ । କିଭଳି ଶବ୍ଦରେ ମୁଖ୍ୟ ଶ୍ରୋତା ରାଜା ପରୀକ୍ଷିତ ମହାବକ୍ତାଙ୍କର ସ୍ୱାଗତ ସମ୍ଭାଷଣ କଲେ ?

**ପରୀକ୍ଷିତ ଉବାଚ**

**ଅହୋ ଅଦ୍ୟ ବୟଂ ବ୍ରହ୍ମନ୍ ସଦ୍‌ସେବ୍ୟାଃ କ୍ଷତ୍ରବନ୍ଧବଃ ।**
**କୃପୟା-ଅତିଥି ରୂପେଣ ଭବଦ୍‌ଭିଃ ତୀର୍ଥକାଃ କୃତାଃ ।।୩୨।।**

ଉତ୍ତର:ରାଜା ବିନମ୍ର ସ୍ୱରରେ ନିବେଦନ କଲେ -ହେ ମହାନୁଭବ, ଆଜି ମହା ଅତିଥି ରୂପରେ ଆପଣ ଏ ସତ୍‌ସଙ୍ଗ ଉତ୍ସବକୁ ମହିମା ମଣ୍ଡିତ କରିଛନ୍ତି । ଆପଣଙ୍କ ଭଳି ସନ୍ଥଙ୍କର ସେବା କରିବା ସୁଯୋଗ ପାଇଥିବାରୁ ଏ ପତିତ କ୍ଷତ୍ରିୟ ଧନ୍ୟ । ଅତି ଧନ୍ୟ । ଭକ୍ତ,ଭକ୍ତି, ଭଗବାନ ଓ ସଦ୍‌ଗୁରୁଙ୍କର ଜୟ ହେଉ ।

ପ୍ରଶ୍ନ-୧୦୨:ରାଜା ସାଧୁସେବାର ମାହାତ୍ମ୍ୟ ବିଷୟରେ ପୁଣି କ'ଣ କହିଲେ ?

**ଯେଷାଂ ସଂସ୍ମରଣାଦ୍ ପୁଂସାଂ ସଦ୍ୟଃ ଶୁଦ୍ଧ୍ୟନ୍ତି ବୈ ଗୃହାଃ ।**
**କିଂ ପୁନଃ ଦର୍ଶନ ସ୍ପର୍ଶ ପାଦଶୌଚ-ଆସନ -ଆଦିଭିଃ ।।୩୩।।**

ଉତ୍ତର: କହିଲେ, "ହେ ମନୁଶ୍ରୀ, ଆପଣଙ୍କ ସଦୃଶ ଯେଉଁ ସନ୍ଥଙ୍କର ସ୍ମରଣ କଲେ ଗୃହସ୍ଥର ଦେହ ଗୃହ ଆଦି ପବିତ୍ର ହୋଇଯାନ୍ତି, ସେଭଳି ସାଧୁଙ୍କର ଦର୍ଶନ, ସ୍ପର୍ଶ,ପଦ ଧୌତ କରିବା, ଆସନ ଇତ୍ୟାଦି ପ୍ରଦାନ କରି ସତ୍କାର କରିବା ସୁଯୋଗ ବିଷୟରେ ଥାଉ ଅଧିକ କ'ଣ କୁହାଯାଇପାରେ ?"

ପ୍ରଶ୍ନ-୧୦୩:ଭଗବାନ ବିଷ୍ଣୁଙ୍କର ସାନ୍ନିଧ୍ୟରେ ଦୈତ୍ୟ, ଦାନବ ଓ ଅସୁର (ସୁର-ଇତରାଃ) ଇତ୍ୟାଦି ରହି ନ ପାରି ପଳାୟନ କରିନ୍ତି । ସେହିପରି ସାଧୁସନ୍ଥଙ୍କ ସାନ୍ନିମଧରେ କ'ଣ ସବୁ ହୁଏ ?

**ସାନ୍ନିଧ୍ୟାଦ୍ ତେ ମହାଯୋଗିନ୍ ପାତକାନି ମହାନ୍ତି-ଅପି ।**
**ସଦ୍ୟୋ ନଶ୍ୟନ୍ତି ବୈ ପୁଂସାଂ ବିଷ୍ଣୋଃ ଇବ ସୁର-ଇତରାଃ ।।୩୪।।**

ଉତ୍ତର: ରାଜା କହିଲେ-ହେ ଯୋଗୀଶ୍ରେଷ୍ଠ, ଆପଣଙ୍କର ସାନ୍ନିଧ୍ୟରେ ଜୀବର ସକଳ ପାପ ତାକୁ ଛାଡ଼ି ଦୂରକୁ ଦୌଡ଼ି ପଳାନ୍ତି ବିନା ବିଳମ୍ବରେ । ପାପ ସାନ ହେଉ ବା ଯେତେ ବଡ଼ ହେଉ । ଚିନ୍ତା କରିବା ଦରକାର ପଡ଼େନା ସେଥିପାଇଁ କୌଣସି ସାଧକକୁ ।

ପ୍ରଶ୍ନ-୧୦୪:ମୁଁ ଭାବୁଛି-ପାଣ୍ଡବମାନଙ୍କର ଅତିପ୍ରିୟ ସୁହୃଦ୍ ସ୍ୱୟଂ ଶ୍ରୀକୃଷ୍ଣ ମୁଁ ପାଣ୍ଡବ ବଂଶଜ ବୋଲି ମୋ ପାଖକୁ ଆପଣଙ୍କୁ କୃପାକରି ପଠାଇଛନ୍ତି । ଏହି ଘଟଣାକୁ ରାଜା କାହିଁକି ଠାକୁରଜୀଙ୍କର ଅହୈତୁକୀ କୃପା ବୋଲି ମାନିଲେ ?

**ଅନ୍ୟଥା ତେଽବ୍ୟକ୍ତ ଗତେଃ ଦର୍ଶନଂ ନଃ କଥଂ ନୃଣାମ୍ ।**
**ନିତରାଂ ମ୍ରିୟମାଣାନାଂ ସଂସିଦ୍ଧସ୍ୟ ବନୀୟସଃ ।।୩୬।।**

ଉତ୍ତରଃରାଜା କହିଲେ-ଆପଣ ଜଣେ ସିଦ୍ଧଯୋଗୀ ସନ୍ନ୍ୟାସୀ । ଗୃହସ୍ଥ କି ବାନପ୍ରସ୍ଥୀ ନୁହନ୍ତି ଏକାନ୍ତ ବନବାସୀ(ବନୀୟସଃ)। ଆପଣଙ୍କ ଗତି (ଅବ୍ୟକ୍ତ ଗତି) ମଧ୍ୟ କେହି ଜାଣିନଥାନ୍ତି । ସେଭଳି ସ୍ଥଳେ ମୋ ଭଳି ଜଣେ ବ୍ରାହ୍ମଣ ଅପରାଧୀ, ଆସନ୍ନ ମୃତ୍ୟୁ ସାଧାରଣ ମଣିଷକୁ ଦର୍ଶନ ଦେଇଥାନ୍ତେ କି ? ଭଗବତ କୃପା ବିନା ଏହା ଏକାନ୍ତ ଅସମ୍ଭବ ।

ପ୍ରଶ୍ନ-୧୦୫: ଯେଉଁ ଦୁଇଟି ମହାପ୍ରଶ୍ନ ପୂର୍ବେ ରାଜା ଋଷିମଣ୍ଡଳୀକୁ ପଚାରିଥିଲେ କିଭଳି ଶବ୍ଦରେ ଏବେ ସେ ଶୁକଦେବ ଗୋସ୍ୱାମୀଙ୍କ ସମ୍ମୁଖରେ ସେହି ପ୍ରଶ୍ନକୁ ପୁଣି ଉପସ୍ଥାପନ କଲେ?

**ଅତଃ ପୃଚ୍ଛାମି ସଂସିଦ୍ଧିଂ ଯୋଗିନାଂ ପରମଂଗୁରୁମ୍ ।**
**ପୁରୁଷସ୍ୟ-ଇହ ଯଦ୍ କାର୍ଯ୍ୟଂ ମ୍ରିୟମାଣସ୍ୟ ସର୍ବଥା ।।୩୭।।**

ଉତ୍ତର: ହେ ପରମ ଯୋଗୀ, ଜଣେ ମରଣଶୀଳ ମନୁଷ୍ୟ ସାରା ଜୀବନ କ'ଣ କରିବା ଉଚିତ୍ ! ପୁଣି ଆସନ୍ନ ମୃତ୍ୟୁ ମଣିଷର ଆପଦ୍ କାଳୀନ୍ କର୍ତ୍ତବ୍ୟ କ'ଣ ?

ପ୍ରଶ୍ନ-୧୦୬: ରାଜା ପୁଣି ପ୍ରବଚକ ମହୋଦୟଙ୍କୁ ପଚାରିଥିବା ପ୍ରଶ୍ନର ଉତ୍ତରଟି ସଂକ୍ଷିପ୍ତ ନହୋଇ ଯଥାସାଧ୍ୟ ବିସ୍ତୃତ ହେଲେ ଭଲ ହୁଅନ୍ତା ବୋଲି କିପରି ଅନୁରୋଧ କଲେ କ'ଣ କରିବି ୫ ପ୍ରଶ୍ନ କ'ଣ କରିବିନି ୫ ପ୍ରଶ୍ନ ପଚାରି ?

**ଯଦ୍ ଶ୍ରୋତବ୍ୟଂ ଅଥୋ ଜପ୍ୟଂ ଯଦ୍ କର୍ତ୍ତବ୍ୟଂ ନୃଭିଃ ପ୍ରଭୋ ।**
**ସ୍ମର୍ତ୍ତବ୍ୟଂ ଭଜନୀୟଂ ବା ବ୍ରୂହି ଯଦ୍ ବା ବିପର୍ଯ୍ୟୟମ୍ ।।୩୮।।**

ଉତ୍ତର: ରାଜା ପୁଣି କହିଲେ-ହରିଲୀଳା ଶ୍ରବଣ କରିବା କଥା, ନା ହରିନାମ ଜପ କରିବା କଥା । କିମ୍ବା ହରି ମୂର୍ତ୍ତି ପୂଜନରେ ଲାଗିବା କଥା । ପୁଣି ଶ୍ରୀହରିଙ୍କ କେଉଁ ରୂପକୁ ଧ୍ୟାନ କରିବା କଥା, ହଁ ଏହାର ବିପରୀତରେ କ'ଣ କ'ଣ ଶ୍ରବଣ, ଜପ, ପୂଜନ ଓ ଧ୍ୟାନ, କରିବା କଥା ନୁହେଁ ତାହା ମଧ୍ୟ ବିସ୍ତାରିତ ଭାବରେ କହିବା ହୁଅନ୍ତୁ । ବାସ୍ତବରେ ଏଥିରେ ଦଶଟି ପ୍ରଶ୍ନ ପଚରାଯାଇଛି ।

ପ୍ରଶ୍ନ-୧୦୭: ଏତେ ଦୀର୍ଘ ଉତ୍ତର ଦେବାକୁ ଶୁକଦେବ ଗୋସ୍ୱାମୀ ଅମଙ୍ଗ ହୋଇପାରନ୍ତି ବୋଲି ରାଜା ପରୀକ୍ଷିତ କାହିଁକି ଆଶଙ୍କା କରି ବସିଲେ ?

**ନୂନଂ ଭଗବତୋ ବ୍ରହ୍ମନ୍ ଗୃହେଷୁ ଗୃହ ମେଧିନାମ୍ ।**
**ନ ଲକ୍ଷ୍ୟତେ ହି-ଅବସ୍ଥାନଂ ଅପି ଗୋ ଦୋହନଂ କ୍ୱଚିଦ୍ ।।୩୯।।**

ଉତ୍ତର:ରାଜା ଜାଣିଥିଲେ-ଶୁକଦେବ ଜଣେ ପରମହଂସ ସନ୍ନ୍ୟାସୀ ଭିକ୍ଷାପାଇଁ କୌଣସି ଗୃହସ୍ଥ ନିକଟରେ କେବଳ ଗାଈଟିଏ ଦୁହାଁହେବାକୁ ଯେତିକି ସମୟ ଲାଗେ (ପ୍ରାୟ ଆଠ ମିନିଟ୍) ସେତିକି ସମୟ ଅପେକ୍ଷା କରିପାରନ୍ତି । ତତ୍‌ପରେ ସେ ସ୍ୱ ଆଶ୍ରମକୁ ଫେରି ଆସନ୍ତି ବିନା ବାକ୍ୟ ବ୍ୟୟରେ ଭିକ୍ଷା ମିଳୁ କି ନ ମିଳୁ । ତାଙ୍କର ସମୟର ମୂଲ୍ୟ ଅମୂଲ୍ୟ ଅଟେ ।

**ସୂତ ଉବାଚ**

ପ୍ରଶ୍ନ-୧୦୮:ଏଭଳି ସୁନ୍ଦର ଭାବରେ ମଧୁର (ଶ୍ଳକ୍ଷ୍ଣୟା) ବାକ୍ୟରେ ଦୀର୍ଘ ସମୟ ସାପେକ୍ଷ ଗୂଢ଼ ପ୍ରଶ୍ନ ଦୁଇଟି ପଚାରିବାରୁ ସକଳ ଧର୍ମମାନଙ୍କର ମର୍ମ ବେତ୍ତା ଶୁକଦେବ ପରମହଂସ ମୌନ ଅବଲମ୍ବନ କଲେ କି ? ସେ କ'ଣ ଅଯଥା ସମୟ ବ୍ୟୟ ହେବ ବୋଲି ଆସନରୁ ଉଠି ପଳାୟନ କଲେ କି ?

**ଏବଂ ଆଭାଷିତଃ ପୃଷ୍ଟଃ ସ ରାଜ୍ଞା ଶ୍ଳକ୍ଷ୍ଣୟା ଗିରା ।**
**ପ୍ରତି-ଅଭାଷତ ଧର୍ମଜ୍ଞୋ ଭଗବାନ୍ ବାଦରାୟଣିଃ ॥୪୦॥**

ଉତ୍ତର: ନା, ନା, ବାଦରାୟଣ ବ୍ୟାସଦେବଙ୍କ ପୁତ୍ର ଶୁକଦେବଜୀ ସଭାସ୍ଥଳରୁ ପଳାୟନ କଲେ ନାହିଁ । ବରଂ ପୂର୍ଣ୍ଣ ସମାଧିସ୍ଥ ଅବସ୍ଥାରେ ପରମ ଆନନ୍ଦରେ ଅଥଚ ବେହୋସ ଅବସ୍ଥାରେ ପ୍ରବଚନ ଆରମ୍ଭ କରିଦେଲେ । ଏପରିକି ଗୁରୁବନ୍ଦନା କରିବାକୁ ତାଙ୍କୁ ଅବକାଶ ମିଳିନଥିଲା ଧନ୍ୟ ହରିକଥା । ଧନ୍ୟ ସେଇ ନିର୍ଗୁଣୀ ବକ୍ତା ଧନ୍ୟ ସେଇ ନିର୍ଗୁଣୀ ଶ୍ରୋତା ।

**ନକ୍ଷତ୍ର ନବନୀତ :** ଶୁକଦେବ ପରମହଂସ ବ୍ୟାସ ଆସନ ଅଳଂକୃତ କରୁ କରୁ ପ୍ରାୟ ବେହୋସ୍ ଅବସ୍ଥାରେ ଦ୍ୱିତୀୟ ସ୍କନ୍ଧର ୧ମ ଅଧ୍ୟାୟରେ କର୍ମ ଯୋଗୀର ଓଁ ଜ୍ୟୋତି ଧ୍ୟାନ, ୨ୟ ଅଧ୍ୟାୟରେ ଜ୍ଞାନଯୋଗୀ ପାଇଁ ଜ୍ୟୋର୍ତିମୟ ନାରାୟଣଙ୍କ ଧ୍ୟାନ ଓ ୩ୟ ଅଧ୍ୟାୟରେ ଭକ୍ତ ପାଇଁ ଶ୍ରୀ କୃଷ୍ଣଙ୍କ ଧ୍ୟାନ ସମାଧିସ୍ଥ ଅବସ୍ଥାରେ ଅଣନିଃଶ୍ୱାସୀ ହୋଇ ପ୍ରବଚନ କରିଯାଇଛନ୍ତି । ସତେ ଯେମିତି ସେ ଏକ ଗୁରୁଦାୟିତ୍ୱ ମୁଣ୍ଡରେ ଧରି ବୁଲୁଥିଲେ । ଜଗତ୍ କଲ୍ୟାଣର ଏ ତିନି ମାର୍ଗର ରହସ୍ୟ କଥା କୀର୍ତ୍ତନ କରିବା ପରେ ପରେ ତାଙ୍କର କିଛି କିଛି ହୋସ୍ ଆସିଛି । ଦ୍ୱାଦଶାକ୍ଷରୀ ବାସୁଦେବ ମନ୍ତ୍ର ( ଓଁ ନମୋ ଭଗବତେ ବାସୁଦେବାୟ)ଙ୍କର ସଂପ୍ରସାରଣ କରି ସାତଦିନ ଅବିରାମ ଗତିରେ ପ୍ରବଚନ କରିଛନ୍ତି ଦ୍ୱାଦଶ ସ୍କନ୍ଧାତ୍ମକ ଭାଗବତ ଗ୍ରନ୍ଥ । ସୁତରାଂ ଦ୍ୱାଦଶ ଶ୍ଳୋକରେ କରିବେ ଗୁରୁବନ୍ଦନା ଶ୍ରୀରାଧାଙ୍କ ପରୋକ୍ଷ ନାମ ଉଚ୍ଚାରଣ ସହିତ ପରବର୍ତ୍ତୀ ମୃଗଶିରା ନକ୍ଷତ୍ର ପ୍ରସଙ୍ଗରେ ।

# ୩. ନିର୍ଗୁଣୀ ଶ୍ରୋତା ପ୍ରକରଣ ସାର

## ଅଧ୍ୟାୟ ୭ମ-୧୯ ଶ

ନିର୍ଗୁଣୀ ବକ୍ତା ଶୁକଦେବ ପରମହଂସ ସିନା ପିତା ବ୍ୟାସଦେବଙ୍କ ମୁଖରୁ ଭାଗବତ ରସ ସ୍ୱୟଂ ପାନ କଲେ । ତଥାପି ଭାଗବତ ଅମୃତ ସଂସାର ପାଇଁ ଅପ୍ରକଟ ରହିଗଲେ । କାରଣ ଉପଯୁକ୍ତ ଶ୍ରୋତାଙ୍କର ଅଭାବ । ବକ୍ତା ଶ୍ରୋତା ଉଭୟ ନିର୍ଗୁଣୀ ହେଲେ ଭାଗବତ ରସ ପରିବେଷଣ ବେଳେ ଭାବରେ ଜୁଆର ଉଠେ । ନିର୍ଗୁଣୀ ଶ୍ରୋତାଙ୍କ ପାଇଁ ଦରକାର ପଡ଼େ ପଞ୍ଚଶୁଦ୍ଧି । ପିତୃ ଶୁଦ୍ଧି, ମାତୃ ଶୁଦ୍ଧି, ବଂଶ ଶୁଦ୍ଧି, ଅନ୍ନ ଶୁଦ୍ଧି ଓ ଅନ୍ତଃକରଣ ଶୁଦ୍ଧି । ପାଞ୍ଚ ପାଣ୍ଡବଙ୍କୁ ମାରିବାକୁ ଅଶ୍ୱତ୍ଥାମା ଶକ୍ତିଶାଳୀ ବାଣ ପ୍ରୟୋଗ କଲେ । ମଲେ ନାହିଁ କୌଣସି ଜଣେ ହେଲେ ପାଣ୍ଡବ ଏହି ପଞ୍ଚଶୁଦ୍ଧି ସେମାନଙ୍କର ଥିଲା ବୋଲି । ସେମାନେ ପରମ ନିଷ୍କାମ କୃଷ୍ଣଭକ୍ତ ଏବଂ ମହାସତୀ କୁନ୍ତୀଙ୍କର ପୁତ୍ର ଥିଲେ । ଅନ୍ୟ ପକ୍ଷରେ ଅଶ୍ୱତ୍ଥାମା ଦ୍ରୌପଦୀଙ୍କ ପାଞ୍ଚ ପୁତ୍ରଙ୍କୁ ବିନାଶ କରିପାରିଲେ । କାରଣ ସେମାନଙ୍କର ମାତୃଶୁଦ୍ଧି ନଥିଲା । ସ୍ୱୟଂ ଗୋବିନ୍ଦ ଆସି ଘୋଷଣା କଲେ ଘୋର ବିପଦ ମାଡ଼ିଆସୁଛି ବୋଲି । କୁନ୍ତୀ ତାଙ୍କ ପାଞ୍ଚପୁଅଙ୍କୁ ନିଦରୁ ଉଠାଇ ଗୋବିନ୍ଦଙ୍କ ପଛେ ପଛେ ଯିବାକୁ ଆଦେଶ ଦେଲେ । କିନ୍ତୁ ଦ୍ରୌପଦୀ ତାଙ୍କ ପାଞ୍ଚପୁଅଙ୍କୁ ସେ କଥା କରିବାକୁ ଉପଦେଶ ଦେବାରେ ହେଳା କଲେ । ଫଳରେ ହରେଇ ବସିଲେ ପାଞ୍ଚ ପୁଅଙ୍କୁ । ଏହାହିଁ ମାତୃଶୁଦ୍ଧି ଅଭାବର ଫଳ । ଏହି ପାଞ୍ଚ ଶୁଦ୍ଧି ଥିଲେ ଜୀବ କୃଷ୍ଣ କଥା ଶ୍ରବଣ ଲାଗି ଆତୁର ହେବ । ଏହାହିଁ ଶ୍ରଦ୍ଧା ବା ମନ ପବିତ୍ରତାର ଲକ୍ଷଣ ।

ମହାଭାରତରେ ମନୁଷ୍ୟ ଦେହହିଁ ରଥ । ଅର୍ଜୁନ ଜୀବାତ୍ମା ରଥୀ/ ପାସେଞ୍ଜର । କୃଷ୍ଣ ସାରଥୀ । ଇନ୍ଦ୍ରିୟମାନେ ଘୋଡ଼ା । ଯୁଦ୍ଧିଷ୍ଠିର ଧର୍ମ, ଭୀମ ବଳ, ନକୁଳଜ୍ଞାନ, ସହଦେବ ବୁଦ୍ଧି ଓ ଦ୍ରୌପଦୀ ଭକ୍ତି /ଦୟା । ଯାହାର ଦେହ କେବଳ ସୁନ୍ଦର ସେ ପ୍ରଭୁଙ୍କର ପ୍ରିୟ ନୁହେଁ । ଯାହାର ସ୍ୱଭାବ ସୁନ୍ଦର ସେ ପ୍ରଭୁଙ୍କର ପ୍ରିୟ । କୁରୁସଭାରେ ଦ୍ରୌପଦୀ ଘୋର ବିପଦର ସମ୍ମୁଖୀନ ହେଲେ । ପ୍ରଥମେ ସେ ପିତାମହ,

କୁଳଗୁରୁ, ଯୁଧିଷ୍ଠିର ଆଦିଙ୍କୁ ଡ଼ାକି ପରେ ପରମାତ୍ମାଙ୍କୁ ଡ଼ାକିଲେ । ଠାକୁରଜୀ ବଡ଼ ହଟିଆ । ସାହାଯ୍ୟ ଅବଶ୍ୟ କଲେ କିନ୍ତୁ ଡ଼େରିରେ । ଆଜି ଉତ୍ତରାକୁ ବିପତ୍ତି ପଡ଼ିଛି । ସେ କାହାକୁ ଡ଼ାକିଲେନି । ସିଧା ସଳଖ ଦୌଡ଼ି ଆସିଲେ ଶ୍ରୀକୃଷ୍ଣଙ୍କ ପାଖକୁ । ସଙ୍ଗେ ସଙ୍ଗେ ବିପଦ ଟଳିଗଲା । ଗର୍ଭରେ ମୃତ ପୁତ୍ର ମଧ ଦେହ ପାଇଲା ଏବଂ ପ୍ରାଣ ପାଇଲା । ଜୀବକୁ ଏହି ଅମୂଲ୍ୟ ଉପଦେଶ (ପ୍ରଶ୍ନର ଉତ୍ତର) ଦେଇଥିବାରୁ ତାଙ୍କ ନାମ ଉତ୍ତରା  ହୋଇଗଲା । ଜଗତ ଜାଣିଲା–ଦୁଃଖମୟ ସଂସାରରେ ଦୁଃଖ ନିବୃତ୍ତିର ସକଳ ପ୍ରଶ୍ନର ଉତ୍ତର ଶ୍ରୀକୃଷ୍ଣଙ୍କ ଶରଣାଗତି ।

ଏ ପ୍ରକରଣରେ ଆହୁରି ଏକ ଅନବଦ୍ୟ ଶିକ୍ଷା ମିଳିଛି ଜୀବକୁ ପିତାମହ ଭୀଷ୍ମଙ୍କର ଶରଣଯ୍ୟା ପ୍ରସଙ୍ଗରେ । ସୁଖବେଳେ ଭଗବାନଙ୍କୁ ସ୍ତୁତି କର କୁନ୍ତୀଙ୍କ ଭଳି ବିପଦ ଦିଅ ବୋଲି । ଦୁଃଖବେଳେ ସ୍ତୁତି କର ଅର୍ଜୁନଙ୍କ ଭଳି ଜ୍ଞାନ ଦିଅ ବୋଲି ଓ ଉତ୍ତରାଙ୍କ ଭଳି ସ୍ତୁତିକର ପରର ପ୍ରାଣରକ୍ଷା କର ବୋଲି କିନ୍ତୁ ଭୀଷ୍ମଙ୍କ ଭଳି ଜୀବନ ଅବସାନ କାଳରେ ସ୍ତୁତି କର ଅନ୍ତରରେ କିମ୍ବା ବାହାରେ ଦର୍ଶନ ଦିଅ ବୋଲି । ଏମାନଙ୍କର ସମସ୍ତଙ୍କର ସ୍ତୁତି ଭଗବାନ ସହର୍ଷ ସ୍ୱୀକାର କରିଛନ୍ତି । କୃପା ମଧ ସମସ୍ତଙ୍କୁ ମଳିଛି । ଆମମାନଙ୍କ ପାଇଁ ସେମାନେ ଗୋଟିଏ ଗୋଟିଏ ମହାନ୍ ଆଦର୍ଶ ସ୍ଥାପନ କରିଯାଇଛନ୍ତି । କୁନ୍ତୀଦେବୀଙ୍କ ମତ ବିପତ୍ତିରେ ବଢ଼ିଆ ପ୍ରଭୁ ସ୍ମରଣ ହୁଏ । ଅତଏବ ସଂସାରୀ ବିପତ୍ତି ହିଁ ଜୀବର ଅସଲି ସମ୍ପତ୍ତି । ଯେଉଁ ଦୁଃଖରେ ନାରାୟଣ ସ୍ମରଣ ହୁଏ, ତାହା କ'ଣ ଦୁଃଖ କି ?

ଇଚ୍ଛାମୃତ୍ୟୁ ବରପ୍ରାପ୍ତ ଭୀଷ୍ମ ପିତାମହଙ୍କୁ ଅଠାବନ ଦିନ ଶରଶଯ୍ୟାରେ ଉତ୍ତରାୟଣକୁ ଅପେକ୍ଷା କରିବାକୁ ପଡ଼ିଛି । ସେ ଜଣେ ଆଦର୍ଶ କର୍ମଯୋଗୀ, ଆଦର୍ଶ ଦେହ ତ୍ୟାଗ ବିଧି ସେ ଆମକୁ ଶିଖାଇଛିନ୍ତି । ଉତ୍ତାରାୟଣ ସମୟର ଆଧାତ୍ମିକ ଅର୍ଥ ଜ୍ଞାନ, କର୍ମର ଫଳ ଈଶ୍ୱରାର୍ପଣ ଓ ହରିଶରଣାଗତି । ଦକ୍ଷିଣ ଦିଗରେ ଯମପୁର । ଭାରତର ଉତ୍ତର ଦିଗରେ ମାନସରୋବର, କୈଳାସ, ସ୍ୱର୍ଗ, ବୈକୁଣ୍ଠାଦି ପୁରକୁ ରାସ୍ତା । ମନୁଷ୍ୟ ପିଣ୍ଡରେ ମଧ ସେହି ବ୍ୟବସ୍ଥା । ଉତ୍ତର ଦିଗରେ ବ୍ରହ୍ମରନ୍ଧ୍ର ଓ ଦକ୍ଷିଣ ଦିଗରେ କାମ ଆଦି ଉପଦ୍ରବର ସ୍ଥାନ । ପ୍ରଭୁ ଶରଣାଗତିରେ ଆରମ୍ଭ ଭକ୍ତିରେ ଓ ଶେଷ ମଧ ସେଇ ଶରଣାଗତରେ । ଭକ୍ତ କେବଳ ଜୀବର ମୃତ୍ୟୁକୁ ସୁଧାରିପାରେ । ଅସୀମ ଜ୍ଞାନ କିମ୍ୱା ଅମାପ ପୁଣ୍ୟ କର୍ମ ମଧ ଏହା ପାରନ୍ତି ନାହିଁ । ଭୀଷ୍ମଙ୍କ ଶରଶଯ୍ୟା କ୍ଷେତ୍ରରେ ତାହାହିଁ  ଘଟିଛି । ବର୍ତ୍ତମାନ ନୂଆଦିଲ୍ଲୀଠାରୁ

୭୫ କି.ମି ଦୂରରେ ଅବସ୍ଥିତ କୁରୁକ୍ଷେତ୍ର ତୀର୍ଥରେ ଭୀଷ୍ମଦେବଙ୍କ ଶରଶଯ୍ୟା ସ୍ଥାନ ଏବେ ମଧ୍ୟ ଦର୍ଶନୀୟ ।

ମନୁଷ୍ୟର ସ୍ୱ ଅନ୍ତଃକରଣର ପାପମାନେ ଜୀବକୁ ହରିଭଜନ କରାଇ ଦିଅନ୍ତି ନାହିଁ । କାରଣ ସେମାନଙ୍କୁ ସ୍ଥାନ ତ୍ୟାଗ କରିବାକୁ ପଡ଼ିବ । କେତେ ପୁରୁଷ ହେଲା ସେମାନେ ଜବରଦଖଲରେ ରହିଲେଣି । ଖାଲି ଉପବାସ, ତୀର୍ଥ,ବ୍ରତ ଆଦି ଧମକରେ ସେମାନେ ତାଙ୍କ ଝୁପୁଡ଼ି ଛାଡ଼ିବେନି । ଦରକାର ଜବରଦସ୍ତ ରାମ ନାମ ଜପ, ହରିନାମ ସଂକୀର୍ତ୍ତନ ଓ ବାରମ୍ବାର ସତ୍‌ସଙ୍ଗ ପ୍ରାପ୍ତି ଲାଳସା । ସେହି ଲକ୍ଷ୍ୟରେ ପାଞ୍ଚପାଣ୍ଡବ ଜୀବନ ସାରା ସୁଖରେ-ଦୁଃଖରେ ହରିଭଜନ କରି ଚାଲିଛନ୍ତି । ଜୀବନ ଅବସାନ କାଳରେ ଘରେ ପଡ଼ି ପଡ଼ି ମରି ନାହାନ୍ତି । ବୀର ସନ୍ନ୍ୟାସରେ ଚାଲିଛନ୍ତି ହିମାଳୟର ଉତ୍ତରା ପଥରେ ମହାଯାତ୍ରାରେ । ଲକ୍ଷ୍ୟ ମାନସରୋବର (ନିର୍ମଳ ବୁଦ୍ଧି) କୈଳାସ ପର୍ବତ (ଦୃଢ଼ ବିଶ୍ୱାସ) । ବାଟରେ ଜଣକ ପରେ ଜଣେ ଦେହ ଛାଡ଼ିଦେଇଛନ୍ତି । ମୃତ୍ୟୁ ତାଙ୍କର ଉଜାଗର ହୋଇଛି । ସେମାନେ ପ୍ରାଣ ପ୍ରୟାଣ କରିନାହାନ୍ତି । କରିଛନ୍ତି ମହାପ୍ରୟାଣ । ଠିକ୍ ଯେମିତି ମୀରାବାଈ ହରିଭଜନ କରିକରି ଦ୍ୱାରକାଧୀଶଙ୍କ ଚିନ୍ମୟ ଶ୍ରୀବିଗ୍ରହରେ ବସନ ଭୂଷଣ ସହିତ ଲୀନ ହୋଇଗଲେ । ଅନ୍ତିମ ସମୟରେ ହରିଭଜନ କରୁକରୁ ପ୍ରାଣ ପ୍ରାୟାଣ କରିବାହିଁ ନିର୍ଗୁଣୀ ଭକ୍ତି ବା ପୂର୍ଣ୍ଣଶରଣାଗତିର ଦ୍ୟୋତକ । ଅନ୍ୟ ରକ୍ଷଣରେ ବିଷୟ ଆସକ୍ତ ମୁନଷ୍ୟ ହାୟ,ହାୟ କରି ନିଜ କୋଠାଘରେ ମରିବା ବ୍ୟର୍ଥ ଜନ୍ମ-ଜୀବନ-ମରଣର ସୂଚନା ଦିଏ । ମୃତ୍ୟୁ କିନ୍ତୁ ମରିବାକୁ ଅନିଚ୍ଛୁକ ଲୋକଙ୍କ ଆତ୍ମାକୁ ଦେହଠାରୁ ବଳାତ୍କାର କରି ଛଡ଼ାଇ ନିଅନ୍ତି । ହରିଭଜନର ସୁବିଧା ମିଳିବ କାହୁଁ ସେମାନଙ୍କୁ ?

ମହାରାଣୀ କୁନ୍ତୀଙ୍କର ଜୀବନ-ମରଣ ସ୍ତୁତି ଉଭୟେ ନିର୍ଗୁଣୀ । କୁନ୍ତୀଙ୍କର ୨୬ ଶ୍ଳୋକ ବିଶିଷ୍ଟ ସ୍ତୁତି ଆରମ୍ଭରେ ନମସ୍ତେ ଓ ଶେଷରେ ମଧ୍ୟ ନମସ୍ତେ । ସାଂଖ୍ୟ ଶାସ୍ତ୍ରର ୨୬ ତତ୍ତ୍ୱ ପ୍ରଖ୍ୟାପକ ଓ ଆତ୍ମଜ୍ଞାନ ପ୍ରଚୋଦକ ୨୬ ଶ୍ଳୋକ ଏମାନେ । ଏହି ତତ୍ତ୍ୱଜ୍ଞାନ ଲାଳସା ଅଭାବବରୁ ଜୀବକୁ ଭଗବାନ ମଧ୍ୟ ଦର୍ଶନ ଦେବାକୁ ପଛାନ୍ତି । ଜୀବର ଅନ୍ତଃକରଣ ବିଷୟ ଭୋଗ ବାସନାଯୁକ୍ତ ଓ ଅଶୁଦ୍ଧ । କାଳେ ବିଚରା ପୁଣି ଧନ,ସଂପଦ, ପୁତ୍ର, ପଦ, ପଦବୀ, ମାଗି ବସିବ । ଦୁଃଖ ପରେ ପୁଣି ଦୁଃଖ ମୁଣ୍ଡେଇବ । ତେଣୁ ଭୟ କରନ୍ତି ଭଗବାନ ବିଷୟୀକୁ ଦର୍ଶନ ଦେବାକୁ ।

ଏ ପ୍ରସଙ୍ଗରେ ମହାତ୍ମା ବିଦୁରଙ୍କ ସ୍ଥାନ ସ୍ୱତନ୍ତ୍ର । କୁରୁ ରାଜସଭାରେ ଜଣେ ବରେଣ୍ୟ ମନ୍ତ୍ରୀ ହୋଇ ମଧ୍ୟ ରହିଲେନି ସେ ରାଜ ଉଆସରେ । ଗଙ୍ଗାକୂଳରେ କୁଟୀର ନିର୍ମାଣ କରି ପତ୍ନୀଙ୍କ ସହିତ ସଦାଚାର ପୂର୍ଣ୍ଣ ଜୀବନ କଟାଇଲେ । ରାଜା ପ୍ରଦତ୍ତ ପାପ ଅନ୍ନ ନଖାଇ ନିଜେ ଶାଗ ପଟାଳୀରେ ଶ୍ରମ କଲେ । ବାରବର୍ଷ କାଳ ଅନ୍ନ ଭୋଜନ ତାଙ୍କର ସେଇ ଗୋଟିକ ଆଇଟମ୍ ଶାଗ । ସେଥିପାଇଁ ସିନା ଭାଗବାନ ଦୁର୍ଯ୍ୟୋଧନଙ୍କର ଛପନ ଭୋଗ ଛାଡ଼ି ବିଦୁରଙ୍କ ଗୃହରେ ଶାଗ ଭଜା ଖାଇଲେ । ଭଗବାନ ଅନ୍ନ ଭୋକିଲା ନୁହନ୍ତି । ସେ ଭାବ ଭୋକିଲା । ମହାତ୍ମା ବିଦୁରଜୀ ସେଇଥିପାଇଁ ସିନା ମହାଭାରତ ଯୁଦ୍ଧ ସମୟରେ ତୀର୍ଥ ପର୍ଯ୍ୟଟନରେ ବାହାରିଗଲେ । ଛତିଶ ବର୍ଷ କାଳ କଲେ ତୀର୍ଥ ପର୍ଯ୍ୟଟନ । ତ୍ରିସଂଧ୍ୟା ସ୍ନାନ ଓ ହରିଭଜନ ସହିତ ସତ୍‌ସଙ୍ଗ ପ୍ରାପ୍ତି ।

ବିନା ସଦ୍‌ଗୁରୁ ଆଶ୍ରୟରେ ସ୍ୱ ସାଧାନାଦ୍ୱାରା କେହି କେବେ କୃଷ୍ଣ ଭକ୍ତି ପାଇପାରେନା । ଉଦାହରଣ ହେଲେ କର୍ଣ୍ଣ, ଦୁର୍ଯ୍ୟୋଧନ, ଅଶ୍ୱତ୍‌ଥାମା ଆଦି ମହା ମହା ବୀରଗଣ । କୃଷ୍ଣଙ୍କର କିମ୍ୱା କୃଷ୍ଣ ଭକ୍ତଙ୍କର ଶରଣ ଗଲେ କୃଷ୍ଣଙ୍କ କୃପା ହୁଏ । ମନୁଷ୍ୟର ଚଞ୍ଚଳ ମନ ହିଁ ମତ୍ସ୍ୟ ଅଟେ । ଅର୍ଜୁନଙ୍କ ଭଳି ମନ ମତ୍ସ୍ୟକୁ ଯେ ମାରିପାରେ ଚଞ୍ଚଳ ମନକୁ ସ୍ଥିର କରିପାରେ କୃଷ୍ଣ ତାର ରଥର ସାରଥୀ ହୁଅନ୍ତି । ଭକ୍ତ ରୂପିଣୀ ଦ୍ରୌପଦୀଙ୍କୁ ସେ ପାଇପାରେ । ଅର୍ଜୁନଙ୍କ ପୌତ୍ର ରାଜା ପରୀକ୍ଷିତ ଜୀବନରେ ତିନୋଟି ଅଶ୍ୱମେଧ ଯଜ୍ଞ କରିଥିଲେ । ମନର ଚଞ୍ଚଳତା ବା ବାସନା ହିଁ ଅଶ୍ୱ ଅଟେ । ଇନ୍ଦ୍ରିୟ ଜନିତ, ଦେହ ଜନିତ ଓ ମନୋଗତ ବାସନା ନାଶ କରିବା ଲକ୍ଷ୍ୟ ୩ ଅଶ୍ୱମେଧ ଯଜ୍ଞାନୁଷ୍ଠାନ । ତଥାପି ବୁଦ୍ଧି ଭିତରର ସୂକ୍ଷ୍ମ ବାସନା ଦୂର କରିବାକୁ ଦରକାର ପଡ଼ିଲା ୪ର୍ଥ ଅଶ୍ୱମେଧ ଯଜ୍ଞ । ସେଥିପାଇଁ ଶୁଦ୍ଧ ବ୍ରହ୍ମନିଷ୍ଠ ସଦ୍‌ଗୁରୁଙ୍କର ଦରକାର ହେଉଥିଲା ରାଜାଙ୍କର । ୬୬ ହଜାର ମୁନି ଋଷି ଗହଣରେ ସେ ସତ୍‌ସଙ୍ଗରେ ବସିଲେ । ଶୁକଦେବଙ୍କ ମୁଖରୁ ଆଲୌକିକ କୃଷ୍ଣ କଥା ଶ୍ରବଣର ପୂର୍ଣ୍ଣାହୂତି ହେଉଛି ଏହି ଅନ୍ତିମ ଅଶ୍ୱମେଧ ଯଜ୍ଞ ।

ରାଜାର ଅର୍ଥ ରଜୋଗୁଣ ରସିରେ ବନ୍ଧା ହୋଇଥିବା ଜଣେ ମାୟାଧୀନ ଜୀବ । ବିଳାସୀ, ବିଷୟ ଉନ୍ମୁଖ ଜୀବ ଏହାର ଦୃଷ୍ଟାନ୍ତ । ଗଙ୍ଗାକୂଳର ଶୁକତାଳ କ୍ଷେତ୍ର ମହାସତ୍‌ସଙ୍ଗ ଯଜ୍ଞରେ ମୁନିଋଷିମାନେ ଶତମୁଖରେ ପ୍ରଶଂସା କଲେ ରାଜା ପରୀକ୍ଷିତଙ୍କୁ । ଧନ୍ୟ ରାଜା ପରୀକ୍ଷିତ । ଧନ୍ୟ ତୁମର ରାଜପଣ । ଧନ୍ୟ ତୁମର

କୃଷ୍ଣଭକ୍ତି ନିଷ୍ଠା । ଜୀବନରେ ଥରେ ମାତ୍ର ପାପଟିଏ କଲ । ସେଇ ଗୋଟିକ ପାପର ଫଳରେ ତୁମ ବିଳାସୀ ଜୀବନର ଅନ୍ତ ହେଲା । ଜଗତ ଭାବିଲା ରାଜାଙ୍କୁ ଦଣ୍ଡିତ କରାଗଲା ବ୍ରହ୍ମଶାପରେ । ପରୀକ୍ଷିତ କିନ୍ତୁ ଏକଥା ମାନିବାକୁ ନାରାଜ । ସେ କହିଲେ ଏହା ମୋ ପ୍ରତି ଭଗବାନଙ୍କର ଅହେତୁକୀ, ଅଯାଚିତ କୃପା । ଏହାତ ମୋ ପାଇଁ ଭଗବାନଙ୍କର ଏକ ସ୍ୱତନ୍ତ୍ର ଶାପ ଅବତାର । ଦ୍ରୌପଦୀକୁ କୃତାର୍ଥ କଲେ କୃଷ୍ଣ ଅମ୍ବର ଅବତାର ହୋଇ । ମୋତେ କୃପା କରିବାକୁ ତାଙ୍କୁ ଶାପ ଅବତାର ହେବାକୁ ପଡ଼ିଲା ।

ମହା ମହା ଧ୍ୟାନୀ, ଜ୍ଞାନୀ, ଯୋଗୀକୁ ମଧ୍ୟ ମୃତ୍ୟୁ ଡ଼ରାଏ । କିନ୍ତୁ ଯାହା ତୁଣ୍ଡରେ ରାମ ନାମ ହରି ନାମ ଥାଏ ମୃତ୍ୟୁ ତାକୁ ଡ଼ରୁଥାଏ । ରାଜା ସଂସାରକୁ ଏ କଥା ଶିକ୍ଷା ଦେଇଗଲେ । କୃଷ୍ଣ କଥା ଶ୍ରବଣ କୀର୍ତ୍ତନରେ ଜୀବର ମନ ସହଜରେ କୃଷ୍ଣ ତନ୍ମୟ ହେବା ସମ୍ଭବ । ଜିହ୍ୱା-ମନ-ବୁଦ୍ଧି ସମସ୍ତେ ସମତାନରେ ଲଢ଼ିବେ ରାମ ବାଣ ଧାରଣି କରି । ଲକ୍ଷ୍ୟ ମୃତ୍ୟୁ ଭୟକୁ ମାରିବା । ମୃତ୍ୟୁ ଦୂତ କ'ଣ ସ୍ୱୟଂ ମୃତ୍ୟୁଦେବତା ମଧ୍ୟ ପାଖ ମାଡ଼ିବେନି । ଦୂରରେ ଥାଇ ସଲାମ ଠୁଙ୍କିବେ । ହେଲେ କାମରସ ଭୋଗୀକୁ ଏ ପ୍ରେମରସର ସ୍ୱାଦୁମିଳେ ନାହିଁ । ଜ୍ୱରଗ୍ରସ୍ତ ଲୋକଙ୍କୁ ସୁସ୍ୱାଦୁ ଭୋଜନରେ ଅରୁଚି ଲାଗିଲା ଭଳି । ପୀତ ରୋଗୀକୁ ମିଶ୍ରି ମଧ୍ୟ ପିତା ଲାଗେ ।

ଜୀବନର ଅନ୍ତିମ ଅଧ୍ୟାୟରେ ରାଜା ପରୀକ୍ଷିତ ଭେଟିଥିଲେ ମଣିଷ ରୂପଧାରୀ କଳିଯୁଗକୁ । ଦେଖିଲେ ଗାଈ ରୂପରେ ପୃଥିବୀ ଓ ବୃଷଭ ରୂପରେ ଧର୍ମ କଳିଯୁଗରେ ପୀଡ଼ିତ, ତାଡ଼ିତ ଓ ଲାଞ୍ଛିତ । ସାରଗ୍ରାହୀ ବିଷ୍ଣୁଭକ୍ତ ରାଜା ସେ । କାଳର ଅଂଶ କଳି । ତାଙ୍କୁ ନାଶ କରିବା ମଧ୍ୟ ଈଶ୍ୱରଙ୍କ ବ୍ୟବସ୍ଥାରେ ହସ୍ତକ୍ଷେପ କରିବା ଭଳି । କଳି ଯୁଗକୁ ଅଧର୍ମ ସ୍ଥାନମାନଙ୍କରେ ରହିବାକୁ ନିର୍ଦ୍ଦେଶ ଦେଲେ ସେ । ଦ୍ୟୁତ (ପଶାଖେଳ), ପାନ (ମଦ୍ୟ ସେବନ), ସୂନା (ଜୀବ ହିଂସା) ଅବୈଧ ନାରୀ ସଙ୍ଗମ ସହିତ ସୁବର୍ଣ୍ଣ ଅଳଙ୍କାରରେ କଳି ରହନ୍ତୁ । କିଛି ଆପତ୍ତି ନାହିଁ । ଘୋର କଳିଯୁଗରେ ମଧ୍ୟ ଯେଉଁମାନେ କୃଷ୍ଣ ଭକ୍ତ ଏ ପାଞ୍ଚ ଚିଜରେ ତାଙ୍କର କି ଲୋଡ଼ା ? ଅନ୍ୟମାନେ ଏମାନଙ୍କ ପଛରେ ପଡ଼ି ତ୍ରାହିତ୍ରାହି ଡ଼ାକନ୍ତୁ । କୃଷ୍ଣଭକ୍ତମାନେ ଏଇ ପାଞ୍ଚକଥାକୁ ଦୂରେଇ ଦେଇ କୃଷ୍ଣରସ ପାନ କରନ୍ତୁ । ବାସ୍ତବରେ ରାଜା ପରୀକ୍ଷିତଙ୍କ ସଦ୍‌ବୁଦ୍ଧି ଏବେ ଆମକୁ କରିଛି ମାଲାମାଲ୍ । ମରଣ ଡ଼ରାଣରୁ ଭୟଶୂନ୍ୟ ।

ନିର୍ଗୁଣୀ ବକ୍ତା ଶୁକଦେବ ପରମଂହସ ଉପଯୁକ୍ତ ନିର୍ଗୁଣୀ ଶ୍ରୋତାଙ୍କ ଅପେକ୍ଷାରେ ଥିଲେ । ଧର୍ମ-ଅର୍ଥ-କାମ ତିନିଲକ୍ଷ୍ୟ କ'ଣ ଚତୁର୍ଥ ଲକ୍ଷ୍ୟ ମୋକ୍ଷ (ପାଞ୍ଚ ପ୍ରକାର) ଚାହୁଁନଥିବା ଶ୍ରୋତା କେବଳ ନିର୍ଗୁଣୀ । ସତେ ଯେମିତି ସେ ଏକ ନୂଆ ବାର୍ତ୍ତା ଘୋଷଣା କରିବାକୁ ମହାଶୂନ୍ୟରେ ଅପେକ୍ଷା କରିଥିଲେ । ଯୁଗେଯୁଗେ ଜୀବନ ଜଂଜାଳ ଦୁଃଖର କାରଣ କାଳ, କର୍ମଫଳ, ସ୍ୱଭାବ, ଦୈବ କିମ୍ବା ଭାଗ୍ୟ କେହି ବି ନୁହନ୍ତି । ଅସଲରେ ଭୁକ୍ତି (ଧର୍ମ, ଅର୍ଥ,କାମ) ଓ ମୁକ୍ତି ରୂପକ ଆସକ୍ତି ଓ ହରି ବିମୁଖତାହିଁ ଜୀବର ଦୁଃଖର କାରଣ । ଦ୍ୱାପରଯୁଗ ଶେଷ ପର୍ଯ୍ୟନ୍ତ ଲୋକଙ୍କ ଘରେ ତାଲା ପଡୁନଥାଏ । ସେଇଦିନ କଳିଯୁଗ- ଆରମ୍ଭ ହେଲା ଯେଉଁଦିନ ଲୋକଙ୍କ ସିନ୍ଧୁକ, କବାଟ ମାନଙ୍କରେ ତାଲା ପଡ଼ିଲା । ଟଙ୍କା, ପଇସା, ବସ୍ତ୍ର, ଅଳଙ୍କାର କାଳେ କେବେ ଦରକାର ପଡ଼ିପାରେ ଭାବି କାଠ, ଲୁହା, ରୂପା,ସୁନା ବାକ୍ସ ସିନ୍ଧୁକରେ ରଖାଗଲା । ଆବଶ୍ୟକତାଠାରୁ ଅଧିକ ଦ୍ରବ୍ୟ, ବସ୍ତୁ, ବ୍ୟକ୍ତି ଚାହିଁବାକୁ ସଂସାର ଆସକ୍ତି କୁହାଯାଏ । ବିତ୍ତ ଏଷଣା, ପୁତ୍ର ଏଷଣା, ଲୋକ ଏଷଣା ସାଧକ ମନରୁ ଛୁଟୀ ନେଲେ ଆରମ୍ଭ ହୁଏ କୃଷ୍ଣ କଥା ଶ୍ରବଣ, ସତ୍‌ସଙ୍ଗ ପ୍ରାପ୍ତି, ସାଧୁ ସେବା ଓ ଭଗବଦ୍ ପ୍ରାପ୍ତିରେ ଅଧିକାର ।

ଶ୍ରୀ ଶଙ୍କର ଭଗବାନ ସ୍ୱଭାବରେ ନିବୃତ୍ତି ପରାୟଣ । ଶ୍ରୀରାମ,ଶ୍ରୀକୃଷ୍ଣ ଉଭୟେ ପ୍ରବୃତ୍ତି ପରାୟଣ । ପ୍ରବୃତ୍ତି ନିବୃତ୍ତିର ବା ଜ୍ଞାନ ଭକ୍ତିଙ୍କର ମହାମିଳନ ହୋଇଛି ଏହି ଭାଗବତ ମହାଗ୍ରନ୍ଥରେ । ନିର୍ଗୁଣୀ ବକ୍ତା-ନିର୍ଗୁଣୀ ଶ୍ରୋତା ଭକ୍ତିକୁ ମଧ୍ୟ ନିର୍ଗୁଣୀ କରିଦେଇଛନ୍ତି । ସତ୍ତ୍ୱଗୁଣୀ ଜ୍ଞାନୀ ଓ ସତ୍ତ୍ୱଗୁଣୀ ଭକ୍ତି ନିର୍ଗୁଣୀ ଭକ୍ତି ମହାରାଣୀଙ୍କର ଜୟଗାନର ଉଦ୍‌ଘୋଷ କରିଛନ୍ତି ଏହି ମହାସତ୍‌ସଙ୍ଗରେ ।

**ଇତି ଶ୍ରୀମଭାଗବତେ ମହାପୁରାଣେ ବୟାସିକ୍ୟାଂ ଅଷ୍ଟାଦଶ-ସାହସ୍ର୍ୟାଂ ପାରମହଂସ୍ୟାଂ ସଂହିତାୟାଂ ପ୍ରଥମସ୍କନ୍ଧେ ଏକୋନବିଂଶୋଽଧ୍ୟାୟଃ ।**

**॥ ହରିଃ ଓଁ ତତ୍‌ସତ୍ ॥**

**ଶ୍ରୀକୃଷ୍ଣାର୍ପଣଂ ଅସ୍ତୁ ।**

**ପରିଶିଷ୍ଟ-୧**

# ଭାଗବତଙ୍କର ୧୮,୦୦୦ ଶ୍ଲୋକ ଗଣନା

**୧. ଅକ୍ଷର ଗଣନା ନ୍ୟାୟରେ**

ଦୀର୍ଘ ଛନ୍ଦମାନଙ୍କୁ ଅନୁଷ୍ଟୁଭ୍ ଛନ୍ଦ (୩୨ ଅକ୍ଷର) ଭାବରେ ଗଣାଗଲେ

| | |
|---|---|
| ମୋଟ ଛନ୍ଦ ସଂଖ୍ୟା | ୧୬, ୧୯୫ |
| ଉବାଚ ସଂଖ୍ୟା | ୧, ୨୭୦ |
| ଅର୍ଦ୍ଧଶ୍ଲୋକ ସଂଖ୍ୟା | ୨୦୦ |
| ଅଥ ଅଧ୍ୟାୟ ସଂଖ୍ୟା | ୩୩୫ |
| ସର୍ବମୋଟ | ୧୮,୦୦୦ |

**୨. ଚଣ୍ଡୀ ସପ୍ତଶତି ନ୍ୟାୟରେ**

| | |
|---|---|
| ଅନୁଷ୍ଟୁଭ୍ ଛନ୍ଦ ବା ମନ୍ତ୍ର ସଂଖ୍ୟା | ୧୧,୨୭୨ |
| ଦୀର୍ଘ ଛନ୍ଦ ସଂଖ୍ୟା ୨,୭୫୬ | |
| ଅତଏବ ଅର୍ଦ୍ଧ ଶ୍ଲୋକ ମନ୍ତ୍ର ସଂଖ୍ୟା | |
| ଦୁଇଗୁଣ କଲେ | ୫,୫୧୨ |
| ପୁଣି ଅନୁଷ୍ଟୁଭ୍ ଛନ୍ଦରେ ଅର୍ଦ୍ଧଶ୍ଲୋକ | |
| ମନ୍ତ୍ର ସଂଖ୍ୟା | ୨୧୧ |
| ମୋଟ ଉବାଚ ମନ୍ତ୍ର ୧,୨୭୦ | |
| ଅନୁବାଚ ବାଦ ଦେଲେ (-) ୨୬୫ | |
| ମୋଟ ଉବାଚ ସଂଖ୍ୟା | ୧,୦୦୫ |
| **ସର୍ବମୋଟ** | **୧୮,୦୦୦** |

-୦-

ପରିଶିଷ୍ଟ-୨

## ୧୦୮ ସଂଖ୍ୟା ଏକ ରହସ୍ୟମୟ ସଂଖ୍ୟା କାହିଁକି ?

୧. ପୃଥିବୀର ବ୍ୟାସର ୧୦୮ ଗୁଣ ସୂର୍ଯ୍ୟଦେବଙ୍କର ବ୍ୟାସ ।
୨. ସୂର୍ଯ୍ୟଙ୍କର ବ୍ୟାସର ୧୦୮ ଗୁଣ ଦୂରତାରେ ରହି ପୃଥିବୀ ଅନନ୍ତକାଳରୁ ସୂର୍ଯ୍ୟଙ୍କ ଚାରିପାଖରେ ଘୂର୍ଣ୍ଣାୟମାନ ରହିଛି ।
୩. ଚନ୍ଦ୍ରଦେବଙ୍କର ବ୍ୟାସର ୧୦୮ ଗୁଣ ଦୂରତାରେ ପୃଥିବୀ ତାଙ୍କୁ ଘୂରାଉଛନ୍ତି ।
୪. ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କର ବୟସ ଦ୍ୱିପରାର୍ଦ୍ଧ ଅର୍ଥାତ୍ ୫୪ସଂଖ୍ୟାର ଦୁଇଗୁଣ ବା ୧୦୮ ବର୍ଷ । (ସଂସ୍କୃତଭାଷାରେ ଅକ୍ଷର ସଂଖ୍ୟା ୫୪)
୫. ମହାକାଶରେ ସୂର୍ଯ୍ୟଙ୍କର ପରିକ୍ରମଣ ରାଶି ସଂଖ୍ୟା ୧୨ ପୁଣି ତାଙ୍କର ଗ୍ରହମାନଙ୍କର ସଂଖ୍ୟା ୯ ଅଟେ । ଦୁଇ ସଂଖ୍ୟାର ଗୁଣନ କଲେ ମିଳେ ୧୦୮ । ଏମାନେ ମନୁଷ୍ୟର ବୁଦ୍ଧିରେ ୧୦୮ ପ୍ରକାରର ଭିନ୍ନ ଭିନ୍ନ ଭାବନା ସୃଷ୍ଟି କରନ୍ତି ବୋଲି ।
୬. ଚନ୍ଦ୍ରମଣ୍ଡଳର ନକ୍ଷତ୍ର ସଂଖ୍ୟା ୨୭ ପୁଣି ବୃତ୍ତାକାରରେ ଧର୍ମ, ଅର୍ଥ, କାମ ଓ ମୋକ୍ଷ ଏହି ଚାରି ଲକ୍ଷ୍ୟରେ ମନୁଷ୍ୟର ମନକୁ ୧୦୮ ଦିଗରେ ଦୌଡ଼ିବାକୁ ପ୍ରଭାବିତ କରନ୍ତି ବୋଲି (ଗୁଣଫଳ ୨୭ ଓ ୪ ସଂଖ୍ୟାର) ।
୭. ଏହା ଏକ ହର୍ଷଦ ସଂଖ୍ୟା ଅଟେ । କାରଣ ଏହାର ଅଙ୍କ ମାନଙ୍କର ମିଶାଣ ଫଳ (୯) ଦ୍ୱାରା ୧୦୮ ସଂଖ୍ୟାଟି ପୂର୍ଣ୍ଣ ବିଭାଜ୍ୟ ବୋଲି ।
୮. ପୃଥିବୀର ସ୍ଥାୟୀ ମୌଳିକ ପଦାର୍ଥ ସଂଖ୍ୟା ୧୦୮ ।
୯. ଶ୍ରୀଗଙ୍ଗା ନଦୀଙ୍କର ଅକ୍ଷାଂଶ ବିସ୍ତାର ୯୧ ରୁ ୭୯ ବାଦ୍ ଦେଲେ ୧୨ । ଦ୍ରାଘିମା ବିସ୍ତାର ୩୧ ରୁ ୨୨ ବାଦ୍ ଦେଲେ ୯ । ଅତଏବ ଅକ୍ଷାଂଶ ଦ୍ରାଘିମାଙ୍କର ଗୁଣଫଳ ବା ଶ୍ରୀଗଙ୍ଗା ନଦୀଙ୍କର ଆୟତନ ୧୦୮ ।
୧୦. ଉପନିଷଦମାନଙ୍କର ସଂଖ୍ୟା ୧୦୮ ।
୧୧. ଶ୍ରୀକୃଷ୍ଣଙ୍କର ମୁଖ୍ୟ ଲୀଳା ପରିକରଙ୍କର ସଂଖ୍ୟା ୧୦୮ ।
୧୨. ଶ୍ରୀରାଧାଙ୍କର ମହାସଖୀ ଓ ମଞ୍ଜରୀ ମାନଙ୍କର ସଂଖ୍ୟା ୧୦୮ ।
୧୩.ଶ୍ରୀ ଶଙ୍କରଜୀଙ୍କର ଅତି ପ୍ରିୟ ଶିବଗଣମାନଙ୍କର ସଂଖ୍ୟା ୧୦୮ ।
୧୪. ଜୀବ ପରମ ମଧ୍ୟରେ ଦୂରତା ୧୦୮ ପାହାଚ ।
୧୫. ୧୦୮ ପ୍ରକାର ସଂସାର ବାସନା ଅଛି ଜୀବର ।
୧୬. ୧୦୮ ପ୍ରକାର ମିଥ୍ୟା କହିପାରେ ଜୀବ ।
୧୭. ୧୦୮ ପ୍ରକାରର ମାୟା ଅଛି ମୃତ୍ୟୁଲୋକରେ ।

୧୮. ମନୁଷ୍ୟର ମସ୍ତିଷ୍କର ଭାବନା ୧୦୮ ପ୍ରକାରର ।

| | |
|---|---|
| ଅତୀତ ସମ୍ବନ୍ଧରେ | ୩୬ |
| ବର୍ତ୍ତମାନ ସମ୍ବନ୍ଧରେ | ୩୬ |
| ଭବିଷ୍ୟତ ସମ୍ବନ୍ଧରେ | ୩୬ |
| ମୋଟ | ୧୦୮ |

୧୯. ମନୁଷ୍ୟ ଜୀବନରେ ୧୦୮ ପ୍ରକାରର ଧର୍ମ ଆଚରଣ କରିବାକୁ ପଡ଼େ ।

୨୦. ମନୁଷ୍ୟ ଜୀବନରେ ୧୦୮ ପ୍ରକାରର ପାପରୁ ନିଜକୁ ରକ୍ଷା କରିବାକୁ ହୁଏ ।

୨୧. ସଂଖ୍ୟା ବିଜ୍ଞାନରେ ସକଳ ସଂଖ୍ୟା ଏହି ତିନୋଟି ଅଙ୍କ ୧, ୦, ୫ ବା ∞ କୁ ନେଇ ଗଠିତ ହୁଅନ୍ତି । ଏହି ତିନୋଟି ଅଙ୍କ କେବଳ ମୌଳିକ ଅଙ୍କ

୨୨. ସଂସ୍କୃତ ଭାଷାରେ ବର୍ଣ୍ଣ ସଂଖ୍ୟା ୫୪ ଯାହା ଶ୍ରୀଶିବ ଭଗବାନଙ୍କର ଡ଼ମ୍ବରୁ ନାଦରୁ ଉତ୍ପନ୍ନ ଓ ସୃଷ୍ଟି ପ୍ରଳୟର ଦୁଇ କଥାର ସଂକେତ ଦିଏ । ଦୁଇ ସଂଖ୍ୟାର ଗୁଣଫଳ ୧୦୮ ।

୨୩. ସୀତାରାମ ନାମ ମନ୍ତ୍ରରେ ଗୁପ୍ତ ଅଙ୍କ ଗଣନା କରାଯାଉ ।

| | |
|---|---|
| ସ- ୩୩ | ର- ୨୭ |
| ଈ- ୩ | ଆ- ୨ |
| ତ- ୧୬ | ମ- ୨୫ |
| ଆ- ୨ | |
| ମୋଟ- ୫୪ | ମୋଟ- ୫୪ |

ଅତଏବ ୫୪ ସହ ୫୪ ମିଶି ୧୦୮ ।

୨୪. ରାଧାଶ୍ୟାମ ମନ୍ତ୍ରରେ ଗୁପ୍ତ ଅଙ୍କ ଗଣନା କରାଯାଉ ।

| | |
|---|---|
| ର -୨୭ | ଶ-୩୧ |
| ଆ- ୨ | ଆ- ୨ |
| ଧ-୧୯ | ମ-୨୫ |
| ଆ- ୨ | |
| ମୋଟ-୫୦ | ମୋଟ-୫୮ |

୫୦ ସହ ୫୮ ଯୋଡ଼ିଲେ ୧୦୮ ।

୨୫. ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ସ୍ନାନଯାତ୍ରାରେ ବ୍ୟବହୃତ ପବିତ୍ର ଜଳ କଳସ ସଂଖ୍ୟା ୧୦୮ ।

୨୬. ଶ୍ରୀଜଗନ୍ନାଥଙ୍କର ରତ୍ନବେଦୀରେ ସ୍ୱୟଂ ଜଗନ୍ନାଥ ଏକ । ମାଆ ସୁଭଦ୍ରା ଶୂନ୍ୟ ଓ ବଳଦେବ ପୂର୍ଣ୍ଣ, ଅନନ୍ତ, ଅସୀମ ବା ଇନ୍‌ଫିନିଟିର ପ୍ରତୀକ ବୋଲି ଶ୍ରୀ ରତ୍ନବେଦୀରେ ଆମେ ଦର୍ଶନ କରୁ ୧୦୮ ।

୨୭. ହ୍ୟୁମାନ ଆୱେଆରନେସ୍‌ର ୧୦୮ ଗୁଣ ହେଇଛି କସ୍‌ମିକ୍ କନ୍‌ସସ୍‌ନେସ୍ ।

୨୮. ସୃଷ୍ଟିରେ ୫୪ ଶକ୍ତିପୀଠରେ ବିରାଜିତ ଶିବ ୫୪ ଓ ଶକ୍ତି ୫୪ ମିଶିଲେ ପ୍ରକୃତି ଓ ପୁରୁଷ ମୋଟ ସଂଖ୍ୟା ୧୦୮ ।

୨୯. ଭାରତରେ ଶ୍ରୀବିଷ୍ଣୁଙ୍କର ମୁଖ୍ୟ ପୀଠ ସ୍ଥାନ ୧୦୮ ।

୩୦. ଭାରତରେ ଶ୍ରୀଶଙ୍କରଙ୍କର ମୁଖ୍ୟ ପୀଠସ୍ଥାନ ୧୦୮ ।

୩୧. ତୁଳସୀମାଳ, ରୁଦ୍ରାକ୍ଷମାଳ ବା ସ୍ଫଟିକମାଳର ଗୋଟି ସଂଖ୍ୟା ୧୦୮ ।

୩୨. ଶ୍ରୀମଭାଗବତରେ ୧ମ ସ୍କନ୍ଧଠାରୁ ୯ମ ସ୍କନ୍ଧ ପର୍ଯ୍ୟନ୍ତ ୧୦୮ ଭକ୍ତମାନଙ୍କର ଚରିତ ବର୍ଣ୍ଣିତ ହୋଇସାରିବା ପରେ ଭଗବାନ ପୂର୍ଣ୍ଣ ପୁରୁଷୋତ୍ତମ ଶ୍ରୀରାଧାକୃଷ୍ଣଙ୍କ ଦିବ୍ୟଲୀଳା ବର୍ଣ୍ଣିତ ହୋଇଛନ୍ତି ।

୩୩. ହିରଣ୍ୟକଶିପୁ ୧୦୮ ଥର ନାରାୟଣ ନାମ ଉଚ୍ଚାରଣ କରନ୍ତେ କୟାଧୂଙ୍କ ଗର୍ଭରେ ଭକ୍ତ ପ୍ରହ୍ଲାଦ ସ୍ଥାନ ପାଇଲେ ।

୩୪. ଅତଏବ ୧୦୮ ସଂଖ୍ୟାଟି କେବଳ ରହସ୍ୟମୟ ନୁହେଁ ମଙ୍ଗଳମୟ ମଧ୍ୟ ।

- ୦ -

ପରିଶିଷ୍ଟ-୩

## ବ୍ରହ୍ମସୂତ୍ର ବା ବେଦାନ୍ତ ସୂତ୍ରଙ୍କର ଭାଷ୍ୟ ଶ୍ରୀମଦ୍ଭାଗବତ ବେଦବ୍ୟାସଙ୍କ ବେଦାନ୍ତ ସୂତ୍ର (୫୫୦ ସୂତ୍ର) ଓ ପ୍ରସିଦ୍ଧ ଭାଷ୍ୟକାର

| ଭାଷ୍ୟକାର | ସମୟ (ଖ୍ରୀଷ୍ଟାବ୍ଦ) | ଭାଷ୍ୟର ନାମ | ମତବାଦ |
|---|---|---|---|
| ୧. ନିମ୍ବାର୍କ ଆଚାର୍ଯ୍ୟ | ଖ୍ରୀ.ପୂ.୬୦୦ | ବେଦାନ୍ତ ପାରିଜାତ | ଦ୍ୱୈତ-ଅଦ୍ୱୈତ |
| ୨. ଆଦିଶଙ୍କର ,, | ଖ୍ରୀ.ପୂ.୪୮୦ | ଶାରୀରିକ ଭାଷ୍ୟ | ଅଦ୍ୱୈତ |
| ୩. ଭାସ୍କର ,, | ଖ୍ରୀଷ୍ଟାବ୍ଦ୧୦୦୦ | ଭାସ୍କର ଭାଷ୍ୟ | ଭେଦ-ଅଭେଦ |
| ୪. ରାମାନୁଜ ,, | ୧୧୪୦ | ଶ୍ରୀ ଭାଷ୍ୟ | ବିଶିଷ୍ଟ ଅଦ୍ୱୈତ |
| ୫. ମଧ୍ୱ ,, | ୧୨୩୮ | ପୂର୍ଣ୍ଣପ୍ରଜ୍ଞା ଭାଷ୍ୟ | ଦ୍ୱୈତ |
| ୬. ଶ୍ରୀକଣ୍ଠ ,, | ୧୨୭୦ | ଶୈବ ଭାଷ୍ୟ | ଶୈବ ବିଶିଷ୍ଟ ଅଦ୍ୱୈତ |
| ୭. ଶ୍ରୀପତି ,, | ୧୪୦୦ | ଶ୍ରୀକର ଭାଷ୍ୟ | ବୀର ଶୈବ |
| ୮. ରାମାନନ୍ଦ ,, | ୧୪୫୦ | ଆନନ୍ଦ ଭାଷ୍ୟ | - - |
| ୯. ବଲ୍ଲଭ ,, | ୧୫୦୦ | ଅଣୁ ଭାଷ୍ୟ | ଶୁଦ୍ଧ ଅଦ୍ୱୈତ |
| ୧୦. ବିଜ୍ଞାନ ଭିକ୍ଷୁ ,, | ୧୬୦୦ | ବିଜ୍ଞାନ ଭିକ୍ଷୁ ଭାଷ୍ୟ | ଅବିଭାଗ ଅଦ୍ୱୈତ |
| ୧୧. ବଳଦେବ ବିଦ୍ୟାଭୂଷଣ | ୧୭୨୫ | ଗୋବିନ୍ଦ ଭାଷ୍ୟ | ଅଚିନ୍ତ୍ୟ ଭେଦ-ଅଭେଦ |

- ୦ -

ପରିଶିଷ୍ଟ-୪

# ଭାଗବତଙ୍କର ପ୍ରସିଦ୍ଧ ଭାଷ୍ୟ, ଟୀକା ଓ ଅନୁବାଦ

| କ୍ରମ ସଂ. | ଭାଷ୍ୟ/ଟୀକା/ ଅନୁବାଦ | ଭାଷା | କର୍ତ୍ତା | ସମୟ(ଶତାବ୍ଦୀ) |
|---|---|---|---|---|
| ୧ | ତନ୍ତ୍ର ଭାଗବତ | ସଂସ୍କୃତ | | |
| ୨ | ହନୁମତ୍ ଭାଷ୍ୟ | ,, | | |
| ୩ | ବାସନା ଭାଷ୍ୟ | ,, | | |
| ୪ | ଭାଗବତ ଦୀପିକା ପ୍ରକାଶ | ,, | ବଂଶୀଧର | |
| ୫ | ସିଦ୍ଧାନ୍ତ ପ୍ରଦୀପ | ,, | ଶୁକଦେବ ଆଚାର୍ଯ୍ୟ | |
| ୬ | ସୁବୋଧିନୀ ପ୍ରକାଶ | ,, | ପୁରୁଷୋତ୍ତମ ଗୋସ୍ୱାମୀ | |
| ୭ | ବାଳ ପ୍ରବୋଧିନୀ | ,, | ଗିରିଧରଲାଲ ଗୋସ୍ୱାମୀ | |
| ୮ | ଦୀପିକା ଦୀପନି | ,, | ରାଧାରମଣ ଗୋସ୍ୱାମୀ | |
| ୯ | ଭକ୍ତି ରତ୍ନାବଳୀ | ,, | ବିଷ୍ଣୁପୁରୀ | |
| ୧୦ | ଭାବାର୍ଥ ଦୀପିକା | ,, | ଶ୍ରୀଧରସ୍ୱାମୀ | ୧୧ଶ |
| ୧୧ | ଭାଗବତ ତାତ୍ପର୍ଯ୍ୟ ନିର୍ଣ୍ଣୟ | ,, | ମଧ୍ୱ ଆଚାର୍ଯ୍ୟ | ୧୩ଶ |
| ୧୨ | ହରିଲୀଳାମୃତ, ମୁକ୍ତାଫଳ | ,, | ବୋପଦେବ | ୧୩ଶ |
| ୧୩ | ପଦ ରତ୍ନାବଳୀ | ,, | ବିଜୟଧ୍ୱଜ ତୀର୍ଥ | ୧୪ଶ |
| ୧୪ | ଆନ୍ଧ୍ର ମହାଭାଗବତମ୍ | ତେଲୁଗୁ | ପୋଥାନା | ୧୫ଶ |
| ୧୫ | ଶ୍ରୀମଦ୍ଭାଗବତ | ଓଡ଼ିଆ | ଜଗନ୍ନାଥ ଦାସ | ୧୬ଶ |
| ୧୬ | ସୁବୋଧିନୀ ଟୀକା | ସଂସ୍କୃତ | ବଲ୍ଲଭ ଆଚାର୍ଯ୍ୟ | ୧୬ଶ |
| ୧୭ | କ୍ରମସନ୍ଦର୍ଭ | ସଂସ୍କୃତ | ଜୀବଗୋସ୍ୱାମୀ | ୧୬ଶ |
| ୧୮ | ଭାଗବତମ୍ | ଆସାମିୟା | ଶଙ୍କରଦେବ | ୧୬ଶ |
| ୧୯ | ନାରାୟଣୀୟମ୍ | ସଂସ୍କୃତ | ନାରାୟଣ ଭଟ୍ଟଥାରୀ | ୧୬ଶ |
| ୨୦ | ଭାଗବତମ୍ | ମରାଠୀ | ସନ୍ଥ ଏକନାଥ | ୧୬ଶ |
| ୨୧ | ସାରାର୍ଥ ଦର୍ଶିନୀ ଟୀକା | ସଂସ୍କୃତ | ବିଶ୍ୱନାଥ ଚକ୍ରବର୍ତ୍ତୀ | ୧୭ଶ |
| ୨୨ | ଗୌଡ଼ୀୟ ଭାଷ୍ୟ | ସଂସ୍କୃତ | ଭକ୍ତିସିଦ୍ଧାନ୍ତ ସରସ୍ୱତୀ | ୨୦ଶ |
| ୨୩ | ଭାଗବତମ୍ | ଇଂରେଜୀ | ଅଭୟ ଚରଣ ବେଦାନ୍ତ ସ୍ୱାମୀ | ୨୦ଶ |

- ୦ -

**ପରିଶିଷ୍ଟ-୫**

# ଭକ୍ତିମାର୍ଗର ନଅ ବିଲକ୍ଷଣତା

୧. **ଅନ୍ୱୟ ସତ୍ୟତା-** ଭକ୍ତିରେ ଦୁଃଖନିବୃତ୍ତି ଓ ଭଗବତ୍ ପ୍ରାପ୍ତି ସମ୍ଭବ ।

୨. **ବ୍ୟତିରେକ ସତ୍ୟତା-** ବିନା ଭକ୍ତିରେ ଦୁଃଖନିବୃତ୍ତି ଓ ଭଗବତ୍ ପ୍ରାପ୍ତି ଅସମ୍ଭବ

୩. ପରମ ସ୍ୱତନ୍ତ୍ରତା-କର୍ମ, ଜ୍ଞାନ ଓ ଅଷ୍ଟାଙ୍ଗ ଯୋଗ ଆଦି ଭକ୍ତିକୁ ଅଧୀନସ୍ଥ କରିପାରନ୍ତି ନାହିଁ ।

୪. **ଅନ୍ୟ ନିରପେକ୍ଷତା-** ଭକ୍ତିଦେବୀ କର୍ମ, ଜ୍ଞାନ, ଯୋଗର ସାହାଯ୍ୟ ଦରକାର କରନ୍ତି ନାହିଁ ।

୫. ସାର୍ବତ୍ରିକତା- ସବୁ ସ୍ଥାନରେ ଭକ୍ତି କରିହେବ ।

୬. **ସର୍ବକାଳୀନତା-** ସବୁ ସମୟରେ ଭକ୍ତି କରିହେବ ।

୭. **ସର୍ବଅବସ୍ଥା ସୁଗମତା-** ସକଳ ଅବସ୍ଥାରେ ଭକ୍ତି କରିହେବ ।

୮. **ସର୍ବଜନ ସୁଲଭତା-** ମନୁଷ୍ୟ, ଦେବତା, ରାକ୍ଷସ, ପଶୁ, ପକ୍ଷୀ, ସଦାଚାରୀ, ଦୁରାଚାରୀ, ପାପୀ-ନିଷ୍ପାପ, ଧନୀ ନିର୍ଦ୍ଧନ ସମସ୍ତେ ଭକ୍ତି କରିପାରିବେ ।

୯. **ସନାତନତା-** ଜୀବର ଆତ୍ୟନ୍ତିକ ଦୁଃଖ ନିବୃତ୍ତି, ମାୟା, ଆବରଣ ଭଙ୍ଗ ଓ କୃଷ୍ଣପ୍ରେମ ପ୍ରାପ୍ତି ପରେ ମଧ ଏହି ଭକ୍ତିଦେବୀ ଭକ୍ତ ସଙ୍ଗରେ ରହନ୍ତି । କର୍ମ, ଜ୍ଞାନ, ସିଦ୍ଧି କିନ୍ତୁ ଯଥାକ୍ରମେ ନିଜ ନିଜର ଫଳ ସ୍ୱର୍ଗ ସୁଖ, ମୁକ୍ତି ଓ ସିଦ୍ଧି ଦେଇସାରି ସାଧକକୁ ଛାଡ଼ି ପଳାନ୍ତି ।

-୦-

ପରିଶିଷ୍ଟ-୬

## ୧ମ ସ୍କନ୍ଧ ଠାରୁ ୯ମ ସ୍କନ୍ଧ ପର୍ଯ୍ୟନ୍ତ ୧୦୮ ଭକ୍ତଙ୍କ ନାମ

| ସ୍କନ୍ଧ | ଭାଗବତ ବର୍ଣ୍ଣିତ ଭକ୍ତଙ୍କ ନାମ | ଭକ୍ତଙ୍କ ସଂଖ୍ୟା |
|---|---|---|
| ୧. | ସୂତ, ଶୌନକ, ବ୍ୟାସ, ନାରଦ, ଅଶ୍ୱତ୍ଥାମା, ଦ୍ରୌପଦୀ, ଯୁଧିଷ୍ଠିର, ଭୀମ, ଅର୍ଜୁନ, ଉତ୍ତରା, ପରୀକ୍ଷିତ, କୁନ୍ତୀ, ଭୀଷ୍ମ, ବିଦୁର, ଧୃତରାଷ୍ଟ୍ର, ଗାନ୍ଧାରୀ, ଧର୍ମ, ପୃଥିବୀ, କଳିଯୁଗ, ଶମିକ ଓ ଶୁକଦେବ । | ୨୨ |
| ୨. | ବ୍ରହ୍ମାଜୀ । | ୧ |
| ୩. | ଉଦ୍ଧବ, ମୈତ୍ରେୟ, ଦିତି, କଶ୍ୟପ, ଜୟ, ବିଜୟ, ସନକ, ସନାତନ, ସନନ୍ଦନ, ସନତ୍ କୁମାର , ହିରଣ୍ୟକଶିପୁ, ହିରଣ୍ୟାକ୍ଷ, କର୍ଦ୍ଦମ ଓ ଦେବହୂତି । | ୧୪ |
| ୪. | ମନୁ, ଶତରୂପା, ଶିବ, ଦକ୍ଷ, ସତୀ, ବୀରଭଦ୍ର, ନନ୍ଦୀଶ୍ୱର, ଭୃଗୁ, ଉତ୍ତାନପାଦ, ସୁନୀତି, କୁବେର, ଅଙ୍ଗ, ପୃଥୁ, ଅର୍ଚ୍ଚି, ଦଶପ୍ରଚେତା ଓ ପ୍ରାଚୀନବର୍ହି । | ୧୬ |
| ୫. | ପ୍ରିୟବ୍ରତ, ଆଗ୍ନିଧ୍ର, ନାଭି, ଋଷଭ, ଭରତ, ଜଡ଼ଭରତ, ରହୁଗଣ, ଗଙ୍ଗାଦେବୀ, ସୂର୍ଯ୍ୟଦେବ ଓ ଶଙ୍କର୍ଷଣଦେବ । | ୧୦ |
| ୬. | ଅଜାମିଳ, ଯମରାଜ, ଦକ୍ଷ, ବୃହସ୍ପତି, ଇନ୍ଦ୍ର, ବିଶ୍ୱରୂପ, ବୃତ୍ତାସୁର, ଦଧୀଚି, ଚିତ୍ରକେତୁ, ଅଙ୍ଗିରା ଓ ମରୁଦ୍‌ଗଣ । | ୧୧ |
| ୭. | ପ୍ରହ୍ଲାଦ ଓ କୟାଧୂ । | ୨ |
| ୮. | ଗ୍ରାହ, ଗଜେନ୍ଦ୍ର, ଇନ୍ଦ୍ରଦ୍ୟୁମ୍ନ, ଅଗସ୍ତି, ହୂହୂ ଗନ୍ଧର୍ବ, ଦେବଳ, ବଳି, ଶୁକ୍ରାଚାର୍ଯ୍ୟ ଓ ଶ୍ରାଦ୍ଧଦେବ ମନୁ । | ୯ |
| ୯. | ସୁଦ୍ୟୁମ୍ନ, ଚ୍ୟବନ, ସୁକନ୍ୟା, ଶର୍ଯ୍ୟାତି, ନାଭାଗ, ଅମ୍ବରୀଷ, ଦୁର୍ବାସା, ଇକ୍ଷ୍ୱାକୁ, ମାନ୍ଧାତା, ସୌଭରି, ତ୍ରିଶଙ୍କୁ, ହରିଶ୍ଚନ୍ଦ୍ର, ସଗର, ଭଗିରଥ, ନିମି, ଜମଦଗ୍ନି, ବିଶ୍ୱାମିତ୍ର, ଯଯାତି, ପୁରୁ, ଦୁଷ୍ୟନ୍ତ, ଭରତ, ରନ୍ତିଦେବ ଓ ଯଦୁ । | ୨୩ |
| | | ମୋଟ-୧୦୮ |

- ୦ -

ପରିଶିଷ୍ଟ-୭

# ଭାଗବତ ଗ୍ରନ୍ଥଙ୍କର ଅଧ୍ୟାୟ ଓ ଶ୍ଳୋକ ଗଣନା

| ସ୍କନ୍ଧ | ଅଧ୍ୟାୟ ସଂଖ୍ୟା | ଶ୍ଳୋକ ସଂଖ୍ୟା |
|---|---|---|
| ୧ | ୧୯ | ୮୧୦ |
| ୨ | ୧୦ | ୩୯୩ |
| ୩ | ୩୩ | ୧୪୧୬ |
| ୪ | ୩୧ | ୧୪୪୯ |
| ୫ | ୨୬ | ୬୬୫ |
| ୬ | ୧୯ | ୮୫୨ |
| ୭ | ୧୫ | ୭୫୦ |
| ୮ | ୨୪ | ୯୩୧ |
| ୯ | ୨୪ | ୯୬୧ |
| ୧୦ | ୯୦ | ୩,୯୪୧ |
| ୧୧ | ୩୧ | ୧,୩୬୭ |
| ୧୨ | ୧୩ | ୫୬୫ |
| **ମୋଟ** | **୩୩୫** | **୧୪,୧୦୦** |

- ୦ -

ପରିଶିଷ୍ଟ-୮

## ୧୦୮ ଉପନିଷଦଙ୍କ ନାମ ଯାହାଙ୍କର ବିସ୍ତାର ଭାଗବତ

### ଋକ୍ ବେଦ (୧୦)

୧. ଐତରେୟ
୨. ଅକ୍ଷମାଳିକା
୩. ଆତ୍ମବୋଧ
୪. ବହ୍ୱୃଚ
୫. କୌଷୀତକୀ ବ୍ରାହ୍ମଣ
୬. ମୁଦ୍‌ଗଳ
୭. ନାଦବିନ୍ଦୁ
୮. ନିର୍ବାଣ
୯. ସୌଭାଗ୍ୟ ଲକ୍ଷ୍ମୀ
୧୦. ତ୍ରିପୁରା

### ଶୁକ୍ଳ ଯଜୁର୍ବେଦ (୧୯)

୧୧. ଅଧ୍ୟାତ୍ମ
୧୨. ଅଦ୍ୱୟ ତାରକ
୧୩. ଭିକ୍ଷୁକ
୧୪. ବୃହଦାରଣ୍ୟକ
୧୫. ହଂସ
୧୬. ଈଶାବାସ୍ୟ
୧୭. ଜାବାଳ
୧୮. ମଣ୍ଡଳ ବ୍ରାହ୍ମଣ
୧୯. ମନ୍ତ୍ରିକ
୨୦. ମୁକ୍ତିକ
୨୧. ନିରାଲମ୍ବ
୨୨. ପୈଙ୍ଗଳ
୨୩. ପରମହଂସ
୨୪. ଶାଟ୍ୟାୟନୀ
୨୫. ସୁବାଳ
୨୬. ତାର ସାର
୨୭. ତ୍ରିଶିଖି ବ୍ରାହ୍ମଣ
୨୮. ତୁରୀୟାତୀତ-ଅବଧୂତ
୨୯. ଯାଜ୍ଞବଲ୍କ୍ୟ

### କୃଷ୍ଣ ଯଜୁର୍ବେଦ (୩୨)

୩୦. ଅକ୍ଷି
୩୧. ଅମୃତବିନ୍ଦୁ
୩୨. ଅମୃତ ନାଦ
୩୩. ଅବଧୂତ
୩୪. ବ୍ରହ୍ମବିଦ୍ୟା
୩୫. ବ୍ରହ୍ମ
୩୬. ଦକ୍ଷିଣାମୂର୍ତ୍ତି
୩୭. ଧ୍ୟାନବିନ୍ଦୁ
୩୮. ଏକାକ୍ଷର
୩୯. ଗର୍ଭ
୪୦. କୈବଲ୍ୟ
୪୧. କାଳାଗ୍ନିରୁଦ୍ର
୪୨. କଳିସନ୍ତରଣ
୪୩. କଠ
୪୪. କଠରୁଦ୍ର
୪୫. କ୍ଷୁରିକା
୪୬. ମହାନାରାୟଣ
୪୭. ପଞ୍ଚବ୍ରହ୍ମ
୪୮. ପ୍ରାଣାଗ୍ନି ହୋତ୍ର
୪୯. ରୁଦ୍ର ହୃଦୟ
୫୦. ସରସ୍ୱତୀ ରହସ୍ୟ
୫୧. ଶାରୀରିକ
୫୨. ସର୍ବସାର
୫୩. ସ୍କନ୍ଦ

୫୪. ଶୁକ ରହସ୍ୟ
୫୫. ଶ୍ୱେତାଶ୍ୱେତର
୫୬. ତୈତ୍ତିରୀୟ
୫୭. ତେଜୋବିନ୍ଦୁ
୫୮. ବରାହ
୫୯. ଯୋଗ କୁଣ୍ଡଳିନୀ
୬୦. ଯୋଗଶିକ୍ଷା
୬୧. ଯୋଗତତ୍ତ୍ୱ

**ସାମ୍‌ବେଦ (୧୬)**

୬୨. ଆରୁଣି
୬୩. ଅବ୍ୟକ୍ତ
୬୪. ଛାନ୍ଦୋଗ୍ୟ
୬୫. ଜାବାଳ ଦର୍ଶନ
୬୬. ଜାବାଲି
୬୭. କେନ
୬୮. କୁଣ୍ଡିକ
୬୯. ମହ
୭୦. ମୈତ୍ରେୟାଣୀ
୭୧. ମୈତ୍ରେୟୀ
୭୨. ରୁଦ୍ରାକ୍ଷ-ଜାବାଳ
୭୩. ସନ୍ନ୍ୟାସ
୭୪. ସାବିତ୍ରୀ
୭୫. ବଜ୍ର ସୂଚୀକ
୭୬. ବାସୁଦେବ
୭୭. ଯୋଗ ଚୂଡ଼ାମଣି

**ଅଥର୍ବ ବେଦ (୩୧)**

୭୮. ଅନ୍ନପୂର୍ଣ୍ଣା
୭୯. ଅଥର୍ବ ଶିଖା
୮୦. ଅଥର୍ବ ଶିର୍ଷ
୮୧. ଆତ୍ମା
୮୨. ଭସ୍ମ-ଜାବାଳ
୮୩. ଭାବନା
୮୪. ବୃହତ୍-ଜାବାଳ
୮୫. ଦତ୍ତାତ୍ରେୟ
୮୬. ଦେବୀ
୮୭. ଗଣପତି
୮୮. ଗାରୁଡ଼
୮୯. ଗୋପାଳ ତାପନୀୟ
୯୦. ହୟଗ୍ରିବ
୯୧. କୃଷ୍ଣ
୯୨. ମହାବାକ୍ୟ
୯୩. ମାଣ୍ଡୁକ୍ୟ
୯୪. ମଣ୍ଡୁକ
୯୫. ନାରଦ ପରିବ୍ରାଜକ
୯୬. ନୃସିଂହ ତାପନୀୟ
୯୭. ପରବ୍ରହ୍ମ
୯୮. ପରମହଂସ ପରିବ୍ରାଜକ
୯୯. ପାଶୁପତ ବ୍ରାହ୍ମଣ
୧୦୦. ପ୍ରଶ୍ନ
୧୦୧. ରାମ ରହସ୍ୟ
୧୦୨. ରାମ ତାପନୀୟ
୧୦୩. ଶାଣ୍ଡିଲ୍ୟ
୧୦୪. ଶରଭ
୧୦୫. ସୀତା
୧୦୬. ସୂର୍ଯ୍ୟ
୧୦୭. ତ୍ରିପାଦ ବିଭୂତି ମହାନାରାୟଣ
୧୦୮. ତ୍ରିପୁରା ତାପିନୀ

ପରିଶିଷ୍ଟ-୯

## ଭାଗୀରଥୀ ଜ୍ଞାନ ଗଙ୍ଗା ଓ ଭାଗବତ ପ୍ରେମ ଗଙ୍ଗା

| | |
|---|---|
| ଭାଗିରଥୀ ଗଙ୍ଗା | ଗୋମୁଖରୁ ଗଙ୍ଗା ସାଗର ସଙ୍ଗମ ପର୍ଯ୍ୟନ୍ତ ବିସ୍ତାର |
| ଭାଗବତ ଗଙ୍ଗା | ଗୁରୁଦେବଙ୍କ ମୁଖରୁ ଶ୍ରୋତାମାନଙ୍କର ହୃଦୟ ସମୁଦ୍ର ପର୍ଯ୍ୟନ୍ତ ବିସ୍ତାର । |
| ଭାଗିରଥୀ ଗଙ୍ଗାରେ | ତନ୍ (ଦେହ) ଓ ବୁଦ୍ଧି ଶୁଦ୍ଧ ହୁଏ । |
| ଭାଗବତ ଗଙ୍ଗାରେ | ମନ୍ ଓ ହୃଦୟ ଶୁଦ୍ଧ ହୁଏ । |
| ଭାଗିରଥୀ ଗଙ୍ଗାରେ | ବୁଡ଼ିଲେ ମରିଯାଏ ଜୀବ । |
| ଭାଗବତ ଗଙ୍ଗାରେ | ବୁଡ଼ିଲେ ତରିଯାଏ ଜୀବ । |

**ବି.ଦ୍ର.:ଗଙ୍ଗାରେ ସ୍ନାନ ଓ ବୈଷ୍ଣବରେ ଦାନ ବୁଡ଼ିଲେ ମୁକ୍ତି ଉଠିଲେ ପୁଣ୍ୟ ।**

- ୦ -

ପରିଶିଷ୍ଟ-୧୦

## ମନୁଷ୍ୟ ଜୀବନର ଲାଭକ୍ଷତିର ହିସାବ ନିକାଶ

୧. ମନୁଷ୍ୟ ଜୀବନର ସାମାନ୍ୟ କ୍ଷତି - ଧନ ହରେଇବା ।
୨. ମନୁଷ୍ୟ ଜୀବନର ବିଶେଷ କ୍ଷତି - ତନ୍ (ସ୍ୱାସ୍ଥ୍ୟ) ହରେଇବା ।
୩. ମନୁଷ୍ୟ ଜୀବନର ବହୁତ କ୍ଷତି - ମନରେ ବିଷୟ ସୁଖ ଖୋଜିବା ।
୪. ମନୁଷ୍ୟ ଜୀବନର ସର୍ବୋଚ୍ଚ କ୍ଷତି - ଆତ୍ମଜ୍ଞାନ ପ୍ରାପ୍ତ ପୂର୍ବରୁ ମରିଯିବା ।
୧. ମନୁଷ୍ୟ ଜୀବନର ସାମାନ୍ୟ ଲାଭ - କର୍ମ, ଜ୍ଞାନ, ଭକ୍ତି କୌଣସି ଗୋଟିକରେ ରୁଚି ହେବା ।
୨. ମନୁଷ୍ୟ ଜୀବନର ବିଶେଷ ଲାଭ -ସଦ୍‌ଗୁରୁଙ୍କ ଆଶ୍ରୟରେ ରହି କାହାକୁ ହେଲେ ଭକ୍ତି କରିବା ।
୩. ମନୁଷ୍ୟ ଜୀବନର ବହୁତ ଲାଭ - ଶ୍ରୀ ନାରାୟଣଙ୍କୁ ଭକ୍ତି କରିବା (ମୁକ୍ତିପ୍ରାପ୍ତି) ।
୪. ମନୁଷ୍ୟ ଜୀବନର ସର୍ବୋଚ୍ଚ ଲାଭ- ଶ୍ରୀକୃଷ୍ଣଙ୍କୁ ଭକ୍ତି କରିବା । (ସେବା ସୁଯୋଗ ବା କୃଷ୍ଣ ପ୍ରେମ ପ୍ରାପ୍ତି)

- ୦ -

ପରିଶିଷ୍ଟ-୧୧

# ଚରମ ଜ୍ଞାନ ଓ ପରମ ଭକ୍ତିଙ୍କର ତୁଳନା

| କ୍ର.ସଂ. | ଜ୍ଞାନ | ଭକ୍ତି |
|---|---|---|
| ୧. | ଦୀପ ଆଲୋକ | ମଣି ଆଲୋକ |
| ୨. | ଦରକାର ଦୀପ, ତେଲ ଓ ସଳିତା | କିଛି ଦରକାର ପଡ଼େନା |
| ୩. | କାମ, କ୍ରୋଧ ଆଦି ଷଡ଼ରିପୁ ଡ଼ରାନ୍ତି ପବନ ଓ ବର୍ଷା ଦୀପଶିଖାକୁ ଡ଼ରାଇବା ଭଳି | ସେ ସ୍ୱୟଂ ଏ ସବୁ ରିପୁ ଆକ୍ରମଣରୁ ମୁକ୍ତ |
| ୪. | ଭକ୍ତି ଓ ବୈରାଗ୍ୟ ଦ୍ୱାରା ପୁଷ୍ଟ ହୁଅନ୍ତି | ଜ୍ଞାନ ଓ ବୈରାଗ୍ୟ ଦ୍ୱାରା ପୁଷ୍ଟ ହୁଅନ୍ତି । |
| ୫. | ଭକ୍ତିଯୁକ୍ତ ହେଲେ କେବଳ ଶୋଭାୟମାନ ହୁଅନ୍ତି । | ଜ୍ଞାନ ଓ ବୈରାଗ୍ୟ ବିନା ସ୍ୱୟଂ ଦୁଃଖିତା ଓ ଅସଂପୂର୍ଣ୍ଣ । |
| ୬. | ପୁରୁଷ (ଆତ୍ମଜ୍ଞାନ) ପରମାତ୍ମାଙ୍କ ଆଶ୍ରିତ ଶକ୍ତି | ନାରୀ (ଭକ୍ତି) ପରମାତ୍ମାଙ୍କର ପ୍ରେରକ ଶକ୍ତି |
| ୭. | ଅଭିମାନ ଆସିଲେ ସୋଽହ ବୋଲାନ୍ତି | ଅଭିମାନ ଆସିଲେ ଦାସୋଽହଂ ବୋଲାନ୍ତି |
| ୮. | ଦେହ ନାଶ ପରେ ମୁକ୍ତି ପ୍ରଦାନ କରନ୍ତି | ଦେହ ଥାଉ ଥାଉ ଜୀବନ୍ମୁକ୍ତି ଦିଅନ୍ତି । |
| ୯. | ସଂସାର କର୍ମ କରିବାରେ ବନ୍ଧନର ଡ଼ର ରହେ । | ସକଳ କର୍ମ କରାଇ ବେପରୁଆ ବୁଲାନ୍ତି । |
| ୧୦. | ପାଞ୍ଚ ପ୍ରକାରର ବାଞ୍ଛିତ ମୁକ୍ତି କରତଳଗତ | ମହାବୈକୁଣ୍ଠ ମୁକ୍ତି ମଧ୍ୟ ଅଦରକାରୀ । |
| ୧୧. | କାହାକୁ ହେଲେ ସେବା କରିବାରେ ଧୈର୍ଯ୍ୟହରା (ପରାଙ୍ମୁଖ) । | ସକଳ(ମାନବ-ମାଧବ) ସେବାରେ ଆନନ୍ଦିତ |
| ୧୨. | ମନୁଷ୍ୟେତର ଜନ୍ମରେ ଭୟ | ସଂପୂର୍ଣ୍ଣ ନିର୍ଭୟ (ସ୍ୱର୍ଗ-ନରକ- ମୃତ୍ୟୁ ଲୋକରେ ସମରସ) । |
| ୧୩. | ସର୍ବଦା ଉଦାସୀନ ଅବସ୍ଥା | ସଦାସର୍ବଦା ଉତ୍ସାହୀ ଅବସ୍ଥା |
| ୧୪. | ଗମ୍ଭୀର ଭାବଯୁକ୍ତ | କୋମଳ, ରସାଳ ଭାବଯୁକ୍ତ |
| ୧୫. | ପୁରୁଷାର୍ଥ ପରାୟଣ | ଶରଣାଗତ ପରାୟଣ |
| ୧୬. | ସର୍ବଦା ସମାଧିସ୍ଥ ରହିବାକୁ ବାଧ୍ୟ ନଚେତ ପତନ । | ପତନ ନ କରାଇବାକୁ ସ୍ୱୟଂ ଭକ୍ତିଙ୍କର ସଂକଳ୍ପ |

| କ୍ର.ସଂ. | ଜ୍ଞାନ | ଭକ୍ତି |
| --- | --- | --- |
| ୧୭. | ଭକ୍ତି ଓ ବୈରାଗ୍ୟ ଅର୍ଜନ ଲାଗି ସାଧନ ଦରକାର । | ଜ୍ଞାନ ବୈରାଗ୍ୟ ଭକ୍ତ ପଛେ ପଛେ ଦୌଡ଼ନ୍ତି |
| ୧୮. | ଜ୍ଞାନମାର୍ଗର ଅଧିକାରୀ ଅତ୍ୟନ୍ତ ଦୁର୍ଲ୍ଲଭ (କଠୋର ବୈରାଗ୍ୟ ଲୋଡ଼ା ପଡ଼େ ବୋଲି) | ପ୍ରାୟତଃ ଅଧିକାଂଶ ସାଧକଙ୍କ ପାଇଁ ରାଜମାର୍ଗ (ଅଳ୍ପ ଜ୍ଞାନ ବୈରାଗ୍ୟରେ କାମ ଚଳିଯାଏ ବୋଲି) |
| ୧୯. | ମୁକ୍ତିରୂପକ ଫଳ କେବଳ ମୃତ୍ୟୁ ପରେ ମିଳେ । | ଜୀବନ୍ମୁକ୍ତି ହେତୁ ବଂଚିଥିବା ଅବସ୍ଥାରେ ମଧ୍ୟ ମୁକ୍ତିର ଫଳ ଚାଖି ହୁଏ । |
| ୨୦. | ଅଧିକ ପୁରୁଷାର୍ଥବାଦୀ | ଅଧିକ ଭାଗ୍ୟବାଦୀ |
| ୨୧. | ସ୍ୱସାଧନା ହିଁ ସମ୍ବଳ | ଭଗବାନଙ୍କ କୃପା ହିଁ ସମ୍ବଳ |

-୦-

ପରିଶିଷ୍ଟ-୧୨

## ପୁରୁଷାର୍ଥ ଓ ପ୍ରପନ୍ନତା (ଶରଣାଗତି) ର ତୁଳନା

**ଧର୍ମ କିସ ?** ହରିଙ୍କ ଶରଣଯିବା, ହରିଗୁଣ ଗାନ କରିବା, ହରି ହରିଜନ ସେବା କରିବା ।

**ଅଧର୍ମ କିସ ?** ହରି କଥା ଶ୍ରବଣ ପରାଙ୍ମୁଖ ହେବା । ହରି ଭୁଲିଯିବା ।

**ଅର୍ଥ କିସ ?** କଷ୍ଟ ଅର୍ଜିତ ଅର୍ଥକୁ ହରି, ହରିଜନ ସେବାରେ ସଦୁପଯୋଗ ।

**ଅନର୍ଥ କିସ ?** ଯେନ ତେନ ଉପାୟରେ ଅର୍ଥ ଉପାର୍ଜନ କରି ସଂସାର ସୁଖ ଖୋଜିବା ।

**କାମ କିସ ?** ହରି ପ୍ରେମ ଖୋଜିବା । ନ ପାଇଲେ ବ୍ୟାକୁଳରେ କାନ୍ଦି କାନ୍ଦି ଗଡ଼ିଯିବା ?

**ଅକାମ କିସ ?** ହରି ପ୍ରେମ ଭୁଲିଯିବା । ସଂସାର ଭୋଗ ବିଳାସରେ ମାତିବା ।

**ମୋକ୍ଷ କିସ ?** କର୍ମୀ ପାଇଁ ଦୁଃଖରୁ ମୁକ୍ତି, ଜ୍ଞାନୀ ପାଇଁ ସୁଖରୁ ମୁକ୍ତି, ଭକ୍ତ ପାଇଁ ଜୀବନ୍ମୁକ୍ତି ।

**ଅମୋକ୍ଷ କିସ ?** କର୍ମ କରି ସ୍ୱର୍ଗ, ଜ୍ଞାନ ପାଇ ମୁକ୍ତି, ଧ୍ୟାନ କରି ସିଦ୍ଧି ଖୋଜିବା ।

-୦-

ପରିଶିଷ୍ଟ-୧୩

## ସଂସାରର ବାସ୍ତବ ସ୍ୱରୂପ

ଏ ସଂସାର / ଜୀବନ - ପାପ-ପୁଣ୍ୟର କିତାବ ।

ଏ ସଂସାର/ ଜୀବନ - ଭଲା-ବୁରାର ହିସାବ ।

ଏ ସଂସାର/ ଜୀବନ - ସୁଖ-ଦୁଃଖର ଦୁଇପାଖିଆ ମୁଦ୍ରା ବା ଦୁଇ କୁଳ ଖିଆ ନଦୀ ।

ଏ ସଂସାର/ ଜୀବନ- ହସ-କାନ୍ଦର ରଙ୍ଗମଞ୍ଚ

ଏ ସଂସାର/ ଜୀବନ - ସୋନେ ବାଲୋଁ କେ ଲିଏ ସୁନେଲୀ ସ୍ୱପ୍ନ ପସରା ।

ଏ ସଂସାର/ ଜୀବନ - ଜାଗନେବାଲୋଁ କେ ଲିଏ କାଣ୍ଟୋସେ ଭରା ଗୁଲାବ କା ଫୁଲ ।

ଏ ସଂସାର / ଜୀବନ - ସମୁଦ୍ର ମନ୍ଥନ କରି ବିଷ ଓ ଅମୃତ ପ୍ରାପ୍ତିର ସାଧନା ।

**ବି.ଦ୍ର.: ସମଗ୍ର ସଂସାରର ହିସାବ କିତାବ ପ୍ରତ୍ୟେକ ଜୀବର ଅନ୍ତଃକରଣରେ ବିଦ୍ୟମାନ । ଭୌତିକ ସଂସାର ଜୀବ ଦେଇ କମ୍ପ୍ୟୁଟରର ହାର୍ଡ୍‌ଓୟାର ଏବଂ ଜୀବ ଅନ୍ତଃକରଣଟି କମ୍ପ୍ୟୁଟର ସଫ୍ଟଓୟାର ।**

- ୦ -

ପରିଶିଷ୍ଟ-୧୪

## ସେହି ଏକ ସଂସାରର ଭିନ୍ନ ଭିନ୍ନ ସ୍ୱରୂପ (ସୁଖ, ଶାନ୍ତି ଓ ଆନନ୍ଦ)

### ୧. ସିଦ୍ଧ ଦୃଷ୍ଟିରେ ସଂସାର

(କ) କର୍ଦ୍ଦମ ଋଷିଙ୍କର କର୍ମ ଦୃଷ୍ଟିରେ- ସଂସାର ଅଛି, ମୋତେ ପାର ହେବା ଉପାୟ ଜଣାଅଛି । ମୁଁ ଈଶ୍ୱର ଶରଣାଗତ । ମୋ ପ୍ରତି ତାଙ୍କ କୃପା ରହିଛି । ମୁଁ ଭୟ କରେନା ସଂସାରକୁ । ମୁଁ **ସୁଖରେ** ଅଛି ।

(ଖ) ଶଙ୍କର ଆଚାର୍ଯ୍ୟଙ୍କର ଜ୍ଞାନ ଦୃଷ୍ଟିରେ-ସଂସାର କାହିଁ ? ଦୁଃଖମୟ ସଂସାର ମୋ ପାଇଁ ନାହିଁ । ମୁଁ ଧ୍ୟାନସ୍ଥ ରହିବାକୁ ବାଧ୍ୟ । ହେ ପରମାତ୍ମା, ମୁଁ ଭୟ କରେ ଆପଣଙ୍କ ସଂସାରକୁ । ମୁଁ ସମାଧିରେ ଥାଇ **ଶାନ୍ତିରେ** ଅଛି ।

(ଗ) ମୀରା ବାଈଙ୍କର ପ୍ରେମ ଦୃଷ୍ଟିରେ -ସଂସାର ଥିଲା । ଏବେ ମୋ ପାଇଁ ନାହିଁ । ଗୁରୁ ରଇଦାସଙ୍କ 'କୃପାରୁ ମୋ ପାଇଁ ସଂସାର ସମୁଦ୍ର ଶୁଖିଯାଇଛି । ଆପଣଙ୍କ ଭବସାଗର ମୋ ପାଇଁ ଭାବସାଗର ହୋଇଯାଇଛି । ମୁଁ **ଆନନ୍ଦରେ** ଅଛି ।

## ୨. ଓଲଟ ଦୃଷ୍ଟିରେ ସଂସାର: (ବିଷୟୀ ସେବା ପାଇଁ)

(କ) ପୁରୁଷମାନଙ୍କୁ ଏବେ ହସିବା ସୁନ୍ଦର କାରଣ ଏହା ପୁରୁଷାର୍ଥର ସଂକେତ ।

(ଖ) ପୁରୁଷମାନଙ୍କୁ ଏବେ କାନ୍ଦିବା ମନା କାରଣ ଏହା କୁଆଡ଼େ ପୁରୁଷାର୍ଥ ବିରୋଧୀ ।

(ଗ) ନାରୀମାନଙ୍କୁ ଏବେ ହସିବା ସୁନ୍ଦର କାରଣ ଏହା (ପୁରୁଷ ମନକୁ ବାନ୍ଧିବା) ପାରିବାର ପଣିଆର ସଂକେତ ।

(ଘ) ନାରୀମାନଙ୍କୁ ଏବେ କାନ୍ଦିବା ମନା କାରଣ ଏହା କୁଆଡ଼େ (ପୁରୁଷ ମନକୁ ବାନ୍ଧି ପାରିବା) ଅଯୋଗ୍ୟତାର ପ୍ରମାଣ ।

## ୩. ସାଧନା ଦୃଷ୍ଟିରେ ସଂସାର:

(କ) ସ୍ୱର୍ଣ୍ଣମୟୀ ଲଙ୍କା- ବିଷୟୀମାନଙ୍କ ଚରାଭୂଇଁ- ତାପସ ରାମ (କୁଶ ଆସନରେ ବସିଥିବା ରାମ)।

(ଖ) ସାଧନା ପୀଠ ଅଯୋଧ୍ୟା- ମୁମୁକ୍ଷୁ, ଜିଜ୍ଞାସୁଙ୍କ ପାଇଁ- ରାଜା ରାମ (ସିଂହାସନରେ ବସିଥିବା ଭଗବାନ) ।

(ଗ) ସିଦ୍ଧ ପୀଠ ମିଥିଳା- ମୁକ୍ତପୁରୁଷଙ୍କ ପାଇଁ- ଦୁହ୍ଲାରାମ- (ବର ଆସନରେ ବସିଥିବା ପରମାତ୍ମା) ।

- ୦ -

ପରିଶିଷ୍ଟ-୧୫

# କର୍ମୀ, ଜ୍ଞାନୀ ଓ ଭକ୍ତମାନଙ୍କର ମୁକ୍ତିର ସ୍ୱରୂପ

| ସାଧକ | ଉପାସ୍ୟ | ପ୍ରାପ୍ତବ୍ୟ ଲୋକ | ମୁକ୍ତିର ସ୍ୱରୂପ |
|---|---|---|---|
| ସକାମ କର୍ମକାଣ୍ଡୀ | ଦେବୀ,ଦେବତା | ସ୍ୱର୍ଗ | ଧୁମ୍ରଯାନ ମାର୍ଗ (ଦୁଃଖରୁ ମୁକ୍ତି) |
| ନିଷ୍କାମ କର୍ମଯୋଗୀ | ବ୍ରହ୍ମା, ବିଷ୍ଣୁ,ଶଙ୍କର | ମହ, ଜନ ଓ ତପ | ଦେବଯାନ ମାର୍ଗ (ଦୁଃଖ, ସୁଖରୁ ମୁକ୍ତି ବା ଜନ୍ମ ମରଣରୁ ମୁକ୍ତି) |
| ସକାମ ଜ୍ଞାନକାଣ୍ଡୀ | ବିଷ୍ଣୁ | ସତ୍ୟ | ସମାଧିସ୍ଥ ଆନନ୍ଦ ପ୍ରାପ୍ତି |
| ନିଷ୍କାମ ଜ୍ଞାନଯୋଗୀ | ମହାବିଷ୍ଣୁ | ମହାବୈକୁଣ୍ଠ | ବ୍ରହ୍ମାନନ୍ଦ ପ୍ରାପ୍ତି |
| ସକାମ ଉପାସନାକାଣ୍ଡୀ | ମହାବିଷ୍ଣୁ | ମହାବୈକୁଣ୍ଠ | ପ୍ରେମାନନ୍ଦ ପ୍ରାପ୍ତି |
| ନିଷ୍କାମ ଭକ୍ତିଯୋଗୀ | ଶ୍ରୀକୃଷ୍ଣ | ଗୋଲୋକ | ସେବା ଆନନ୍ଦ ପ୍ରାପ୍ତି |

-୦-

# କୃଷ୍ଣପ୍ରେମ ରସିକମାନଙ୍କୁ ଭାଗବତଙ୍କର ଅଲୌକିକ ଆମନ୍ତ୍ରଣ

ହେ ଭାବୁକ, ରସିକ ଗଣ, ଭାଗବତ ରସକୁ ଦିନରେ ପିଅ । ରାତିରେ ମଧ୍ୟ ପିଅ । ସର୍ବତ୍ର ପିଅ । ସର୍ବଦା ପିଅ । ସର୍ବ ଅବସ୍ଥାରେ ପିଅ । ପିଇ ପିଇ ବେହୋସ୍ ହୁଅ । ହୋସ୍ ଆସିଲେ ପୁଣି ପିଅ । ମଲାଗଲାଯାଏଁ ପିଅ । ପିଇ ପିଇ ମରିଯାଅ । ପୁଣି ଜନ୍ମହେଲା ପରେ ମଧ୍ୟ ପିଅ । ପ୍ରଳୟ ଯାଏଁ ପିଅ । ମହାପ୍ରଳୟ ଯାଏଁ ପିଅ । ଫଟା ଫଟ୍ ତୁରନ୍ତ ରସ ଚାହଁ ତ ଭାଗବତ ରସକୁ ପିଅ । ପରଲୋକରେ ପିଇବା ଚାହଁ ତ ତେବେ ବି ଏ ଜନ୍ମରେ ପିଅ । ଦେଖେଇ ଦେଖେଇ ପିଅ । ଲୁଚେଇ ଲୁଚେଇ ପିଅ । ନିର୍ଭୟରେ ପିଅ । ଭୟରେ ମଧ୍ୟ ପିଅ । ନିଜେ ପିଅ । ପିଲାଛୁଆଙ୍କୁ, ପିତାମାତାଙ୍କୁ, ସାଙ୍ଗ ସମ୍ବନ୍ଧୀଙ୍କୁ ପିଆଅ । ପଡ଼ିଶା ପରିଜନଙ୍କୁ, ଗ୍ରାମବାସୀ, ଦେଶବାସୀଙ୍କୁ, ପଶୁପକ୍ଷୀଙ୍କୁ, ବୃକ୍ଷଲତାଙ୍କୁ, ପାହାଡ଼ ପର୍ବତଙ୍କୁ ଭାଗବତ ରସ ପିଆଅ ।

-୦-

**॥ ରାସ ରସମୟୀ ରାଧାରାଣୀ କି ଜୟ ॥**

ପରିଶିଷ୍ଟ-୧୬

# ଭାଗବତଙ୍କର ସ୍ୱରୂପ କଅଣ ?

୧. ଶ୍ରୀକୃଷ୍ଣଙ୍କର କଥା ଅବତାର ।

୨. ଭଗବାନ ନାରାୟଣଙ୍କର ମୁଖନିଃସୃତ ଗ୍ରନ୍ଥ ।

୩. ପରମହଂସମାନଙ୍କର ମଧ୍ୟ ଆସ୍ୱାଦନୀୟ ସଂହିତା ।

୪. ୪ ବେଦ ଓ ୧୦୮ ଉପନିଷଦଙ୍କର ସାରସର୍ବସ୍ୱ ।

୫. ବେଦାନ୍ତ ସୂତ୍ର ବା ବେଦାନ୍ତ ଦର୍ଶନର ମୂଳଭାଷ୍ୟ ବା ବ୍ୟାଖ୍ୟା ।

୬. ଗାୟତ୍ରୀ ମନ୍ତ୍ରଙ୍କର ବିସ୍ତାର ।

୭. ଶ୍ରୀମଦ୍‌ଭଗବତ ଗୀତାଙ୍କର ଦ୍ୱାଦଶ ଅଧ୍ୟାୟର ଅତ୍ୟନ୍ତ ଗୋପନୀୟ ଭକ୍ତି ମହାରାଣୀଙ୍କର ପ୍ରାକଟ୍ୟ ।

୮. ୨୪ ଅବତାର, ୨୪ତତ୍ତ୍ୱ, ୨୪ଗୁରୁ, ବୃନ୍ଦାବନର ୨୪ ବନ ଉପବନ ସହିତ ଶ୍ରୀ ଯମୁନାନଦୀଙ୍କର ୨୪ ଘାଟରେ ପ୍ରକଟିତ ଲୀଳା ବିସ୍ତାର ।

୯. ସ୍ୱର୍ଗର ଇନ୍ଦ୍ରପଦ, ବୈକୁଣ୍ଠର ପଞ୍ଚମୁକ୍ତି ଓ ଧ୍ୟାନ ଲବ୍ଧ ୨୮ ଅଣିମାଦି ସିଦ୍ଧିଙ୍କୁ, ତୁଚ୍ଛ କରାଇ ଜୀବନ୍ମୁକ୍ତି ସହିତ ଜନ୍ମ ଜନ୍ମାନ୍ତର, ଲୋକ ଲୋକାନ୍ତରରେ କୃଷ୍ଣପ୍ରେମ ପ୍ରାପ୍ତିର ଗ୍ୟାରେଣ୍ଟି କାର୍ଡ୍ ।

୧୦. ଧର୍ମଶାସ୍ତ୍ର, ଅର୍ଥଶାସ୍ତ୍ର, କାମଶାସ୍ତ୍ର ଓ ମୋକ୍ଷ ଶାସ୍ତ୍ରର ଉପରିସ୍ଥ ପ୍ରେମ ଶାସ୍ତ୍ର । ପଞ୍ଚମ ପୁରୁଷାର୍ଥ ଗ୍ରନ୍ଥ ।

୧୧. ଜ୍ଞାନ, ଭକ୍ତି ଓ ବୈରାଗ୍ୟ ତିନିକଥାର ସମନ୍ୱୟ କରିବା ପରମଶାସ୍ତ୍ର ।

୧୨. ୪ ବେଦ, ୪ ଉପବେଦ, ୬ ବେଦାଙ୍ଗ ଓ ଅଷ୍ଟାଦଶ ପୁରାଣଙ୍କର ଛଣା ଅମୃତ ।

୧୩. ରାମାୟଣ ଜନ୍ମକୁ, ଭଗବତ୍‌ଗୀତା ଜନ୍ମ ଓ ଜୀବନକୁ ସୁଧାରିବା ବେଳେ ଶ୍ରୀମଦ୍‌ଭାଗବତ ଜନ୍ମ, ଜୀବନ ଓ ମରଣ ତିନି କଥାକୁ ସୁଧାରିଥାନ୍ତି ବା ଉଜାଗର କରନ୍ତି । ମୃତ୍ୟୁକୁ ମହା ଉତ୍ସବ ବନେଇପାରୁଥିବା ପରମ ଶାସ୍ତ୍ର ।

୧୪. ବେଦ, ରାମାୟଣ, ମହାଭାରତ ଓ ପୁରାଣ ଆଦି ସତ୍ୟଙ୍କର ପ୍ରକାଶ କରି ଧନ୍ୟ ହୋଇଛନ୍ତି । ଶ୍ରୀମଦ୍‌ଭାଗବତ କିନ୍ତୁ ପରମ ସତ୍ୟଙ୍କର ସରଳ ନିରୂପଣ କରିଥିବା ଭଗବାନଙ୍କର ଜ୍ଞାନାବତାର ଶ୍ରୀଳ ବ୍ୟାସଦେବଙ୍କର ଅନ୍ତିମ ପରିପକ୍ୱ ରଚନା ।

୧୫. ସର୍ବଶାସ୍ତ୍ର ଶିରୋମଣି । ଲୀଳା ପୁରୁଷୋତ୍ତମଙ୍କର କଥା ଅବତାର ।

୧୬. ଶ୍ରୀକୃଷ୍ଣଙ୍କର ଅକ୍ଷର ବିଗ୍ରହ ।

୧୭. ଶ୍ରୀକୃଷ୍ଣ ଭକ୍ତମାନଙ୍କର ଗଳାର ହାର ।

୧୮. ଭାରତୀୟ ଭାଷା ଭାରତୀଙ୍କର ଅଳଂକାର ମଧ୍ୟରେ ମୁକୁଟମଣି ।

୧୯. ଭକ୍ତ ବାଞ୍ଛା କଳ୍ପତରୁ ।

୨୦. ଓଁ କାର ଶବ୍ଦରୁ ଜନ୍ମିଥିବା ବେଦବୃକ୍ଷର ଶୁକ ଚଞ୍ଚୁ ପରୀକ୍ଷିତ ଏବଂ ସ୍ୱୟଂ ପତିତ ପକ୍ୱଫଳର ଚୋପା, ଟାକୁଆ, କୋଇଲି ପାଗୁ ଆଦି ବର୍ଜନୀୟ ବସ୍ତୁଠାରୁ ଭିନ୍ନ କୃଷ୍ଣପ୍ରେମ ରସ ପିପାସୁ ରସିକ ଜନ ଆସ୍ୱାଦ୍ୟ ଦିବ୍ୟ ଅମୃତ ରସ ।

- ୦ -

ପରିଶିଷ୍ଟ-୧୭

## ଭକ୍ତି ତ୍ରିବିଧ

୧. ସ୍ୱରୂପ ସିଦ୍ଧା- ଗୋପୀଭକ୍ତି । ହୃଦୟରେ କୃଷ୍ଣ ସଂସ୍ଥାପନ ।

୨. ଆରୋପ ସିଦ୍ଧା- ନବଧା ଭକ୍ତି । କର୍ମଫଳ କୃଷ୍ଣାର୍ପଣ ମୂଳକ ।

୩. ସଙ୍ଗସିଦ୍ଧା- କର୍ମଯୁକ୍ତ ଭକ୍ତି, ଜ୍ଞାନଯୁକ୍ତ ଭକ୍ତି, ଧ୍ୟାନ ଯୁକ୍ତ ଭକ୍ତି । ମନରେ କୃଷ୍ଣ ଚିନ୍ତନ ଏବଂ ଇନ୍ଦ୍ରିୟରେ ବୈଦିକ ବର୍ଣ୍ଣ ଆଶ୍ରମ ଧର୍ମ ପାଳନ ।

- ୦ -

ପରିଶିଷ୍ଟ-୧୮

## ଭକ୍ତି ସାଧନର ବାଧକ କିସ ?

**(କ) କପୁୟା ଆଚରଣ** ବା କପଟ ଆଚରଣ

୧. ଜିହ୍ମଭାବ- ମୁଁ ଯାହା ପାପ କରୁଚି କେହି ଜାଣୁନାହାନ୍ତି ।

୨. ଅନୃତ ଭାବ- ନିଜ ଦୋଷକୁ ଲୁଚେଇବା, ନିଜର ପାରିବାର ପଣିଆ ଦେଖାଇ ହେବା ।

୩. ମାୟା ଭାବ- ଲୋକରଞ୍ଜନ, ନିଜ ପ୍ରଚାର କରାଇବା, ପ୍ରଶଂସା ପଛରେ ଧାଇଁବା ।

**(ଖ) ଆଧ୍ୟାତ୍ମିକ ତୁଷ୍ଟି:**

୧. ଭଗବତ ତୁଷ୍ଟି- ଭଗବାନ ସବୁ କରୁଛନ୍ତି । ତାଙ୍କ କୃପାହେଲେ ଭକ୍ତି କରିବି ।

୨. କାଳ ତୁଷ୍ଟି- ସମୟ ଆସିଲେ ବଳେ ଭକ୍ତି କରିବିନି କି ?

୩. ଭାଗ୍ୟ ତୁଷ୍ଟି- ଭାଗ୍ୟରେ ଥିଲେ ହେବ ।

୪. ଶରଣବରଣ ତୁଷ୍ଟି- ମୁହଁରେ କୁହାଯାଏ ସବୁ ଭଗବାନଙ୍କର, ଗୁରୁଙ୍କର । ଦେବା କଥା ଉଠିଲେ ପଛ ଘୁଞ୍ଚା ଦେବା । ଅର୍ଜୁନଙ୍କ ଭଳି ଶାବ୍ଦିକ ଶରଣାଗତି (ଅନ୍ତଃକରଣ ଅଶୁଦ୍ଧ ହେତୁ ଏପରି ହୁଏ) ।

- ୦ -

ପରିଶିଷ୍ଟ-୧୯

## କିଏ ଭୁଲ କରେ ପୁଣି କିଏ କରେନା

୧. ଯେ କେବେ ବି ଭୁଲ କରେନା- ସେ ସ୍ୱୟଂ **ଭଗବାନ** ।

୨. ଯେ ଭୁଲ କରେ କିନ୍ତୁ ଭୁଲ କରୁଛି ବୋଲି ଜାଣିପାରେନା କିମ୍ବା ଜାଣିଲେ ମଧ୍ୟ ସ୍ୱୀକାର କରେନା, କିମ୍ବା ସ୍ୱୀକାର କଲେ ମଧ୍ୟ ସେଥିରୁ ଉଦ୍ଧାର ପାଇବାକୁ ଚେଷ୍ଟା ମଧ୍ୟ କରେନା- **ସେ ସଇତାନ୍** ।

୩. ଯେ ଭୁଲ ତ କରେ କିନ୍ତୁ ପାପରୁ ଉଦ୍ଧାର ପାଇବାକୁ ବ୍ୟାକୁଳ ହୁଏ । ସାଧୁ, ସନ୍ଥ, ଗୁରୁ କିମ୍ବା ବୈଷ୍ଣବଙ୍କର ଶରଣାଗତ ହୋଇ ନିଜକୁ ସୁଧାରିବାକୁ ଚେଷ୍ଟା କରେ -**ସେ ଇନ୍‌ସାନ୍** ।

-୦-

ପରିଶିଷ୍ଟ-୨୦

## ମନୁଷ୍ୟର ଚାରି ଜନ୍ମଜାତ ଦୋଷ

୧. **ଭ୍ରମ**- ମନର ଚଞ୍ଚଳତା । ବାସ୍ତବ ସ୍ଥିତି ବୁଝି ନ ପାରିବା । ତତ୍ତ୍ୱଜ୍ଞାନର ଅଭାବ । ଯଥା ଦେହକୁ ମୁଁ ଓ ସଂସାରକୁ ମୋର ଭାବି ସେଥିରୁ ସୁଖ ଖୋଜିବା ।

୨. **ପ୍ରମାଦ**- ବୁଦ୍ଧିର ଅପରିପକ୍ୱତା ବା ଅସାବଧାନତା । ବିବେକ ଜାଗ୍ରତ ନ ରଖିବା । କୁସଙ୍ଗରେ ପଡ଼ିବା । ସତ୍‌ସଙ୍ଗ ନ ଖୋଜିବା ।

୩. **ବିପ୍ରଲିପ୍‌ସା**- ମନ-ବୁଦ୍ଧି ଜନିତ ଚିତ୍ତମଳର ବିଦ୍ୟମାନତା । କାମ, କ୍ରୋଧ, ଲୋଭ ଆଦି ଷଡ଼ରିପୁଙ୍କୁ ଘୋଡ଼େଇବାର ଚେଷ୍ଟା ଯଥା ସଂସାର ସହ କପଟ ଆଚରଣ କରିବା ।

୪. **କରଣାପାଟବ**- ଅନୁଭବର ସ୍ୱଳ୍ପତା ବା ଅହଂକାରର ଉତ୍ପାତ । ପୁସ୍ତକଗତ ଜ୍ଞାନ ଆଧାରରେ ଅନ୍ୟକୁ ଉପଦେଶ ଦେବାର ଆଗ୍ରହ । ପ୍ରତିକାରର ଉପାୟ ହେଲା ଅହଂକାରର ଦିଗ ପରିବର୍ତ୍ତନ ବା ସୋଽହଂକୁ ଦାସୋଽହଂରେ ପରିବର୍ତ୍ତନ କରିବା ।

-୦-

ପରିଶିଷ୍ଟ-୨୧

## ୧୦ ବିଧ ମାୟିକ ଆନନ୍ଦମାନଙ୍କର ତୁଳନା

୧. ସମଗ୍ର ବିଶ୍ୱର ସମ୍ରାଟଙ୍କର ବିଷୟଭୋଗ ଆନନ୍ଦର ଶହେ ଗୁଣ ଜଣେ ଆଜାନଜ କର୍ମଦେବର ଆନନ୍ଦ ।

୨. ଜଣେ ଆଜାନଜ କର୍ମଦେବର ଆନନ୍ଦର ଶହେ ଗୁଣ ଜଣେ କର୍ମଦେବର ଆନନ୍ଦ ।

୩. ଜଣେ କର୍ମଦେବର ଆନନ୍ଦର ଶହେଗୁଣ ଜଣେ ପିତୃଲୋକବାସୀର ଆନନ୍ଦ ।

୪. ଜଣେ ପିତୃଲୋକବାସୀର ଆନନ୍ଦର ଶହେ ଗୁଣ ଜଣେ ମନୁଷ୍ୟ ଗନ୍ଧର୍ବର ଆନନ୍ଦ ।

୫. ଜଣେ ମନୁଷ୍ୟ ଗନ୍ଧର୍ବର ଆନନ୍ଦର ଶହେ ଗୁଣ ଜଣେ ଦେବ ଗନ୍ଧର୍ବର ଆନନ୍ଦ ।

୬. ଜଣେ ଦେବ ଗନ୍ଧର୍ବର ଆନନ୍ଦର ଶହେ ଗୁଣ ଜଣେ ଦେବଲୋକବାସୀର ଆନନ୍ଦ ।

୭. ଜଣେ ଦେବତାର ଆନନ୍ଦର ଶହେ ଗୁଣ ଜଣେ ଇନ୍ଦ୍ରଙ୍କର ଆନନ୍ଦ ।

୮. ଜଣେ ଇନ୍ଦ୍ରଙ୍କର ଆନନ୍ଦର ଶହେ ଗୁଣ ଜଣେ ବୃହସ୍ପତିଙ୍କର ଆନନ୍ଦ ।

୯. ଜଣେ ବୃହସ୍ପତିଙ୍କର ଆନନ୍ଦର ଶହେଗୁଣ ଜଣେ ପ୍ରଜାପତି ଲୋକବାସୀଙ୍କର ଆନନ୍ଦ ।

୧୦. ଜଣେ ପ୍ରଜାପତି ଲୋକବାସୀଙ୍କର ଆନନ୍ଦର ଶହେ ଗୁଣ ଜଣେ ବ୍ରହ୍ମଲୋକବାସୀଙ୍କର ଆନନ୍ଦ ।

ସମଗ୍ର ବିଶ୍ୱର ସମ୍ରାଟଙ୍କର ବିଷୟଭୋଗ ଜନିତ ଆନନ୍ଦକୁ ୧ ମନେକରି ସେଥିରେ ୨୦ ଟି ଶୂନ୍ୟ ଦେଲେ ଯେଉଁ ବିପୁଳ ସଂଖ୍ୟା ହେବ ସେତିକି ବଡ଼ ଆନନ୍ଦ ଜ୍ଞାନସିଦ୍ଧ ମହାତ୍ମାଙ୍କର ନିର୍ବିକଳ୍ପ ସମାଧି ଜନିତ ବ୍ରହ୍ମାନନ୍ଦ ।

-୦-

ପରିଶିଷ୍ଟ-୨୨

## ୧୦ବିଧ ଦିବ୍ୟ ବା ଅପ୍ରାକୃତ ଆନନ୍ଦର ତୁଳନା

୧. ଜଡ଼ ସମାଧି ଜନିତ ବ୍ରହ୍ମାନନ୍ଦର ଶହେଗୁଣ କ୍ଷୀରୋଦଶାୟୀ ବିଷ୍ଣୁଲୋକବାସୀର ଆନନ୍ଦ ।

୨. ବିଷ୍ଣୁଲୋକ ଆନନ୍ଦର ଶହେଗୁଣ ଗର୍ଭୋଦଶାୟୀ ବିଷ୍ଣୁଲୋକ ଆନନ୍ଦ ।

୩. ଗର୍ଭୋଦଶାୟୀ ବିଷ୍ଣୁଲୋକ ଆନନ୍ଦର ଶହେଗୁଣ କାରଣାର୍ଣ୍ଣବ ଶାୟୀ ମହାବିଷ୍ଣୁଲୋକ ଆନନ୍ଦ ।

୪. କାରର୍ଣ୍ଣାଣବ ଶାୟୀ ମହାବିଷ୍ଣୁଲୋକ ଆନନ୍ଦର ଶହେଗୁଣ ଦ୍ୱାରକାଲୀଳା ଆନନ୍ଦ ।

୫. ଦ୍ୱାରକାଲୀଳା ଆନନ୍ଦର ୧୦୦ ଗୁଣ ମଥୁରାଲୀଳା ଆନନ୍ଦ ।

୬. ମଥୁରାଲୀଳା ଆନନ୍ଦର ୧୦୦ଗୁଣ ଗୋକୁଳ ଲୀଳା ଆନନ୍ଦ ।

୭. ଗୋକୁଳ ଲୀଳା ଆନନ୍ଦର ୧୦୦ଗୁଣ କୁଞ୍ଜଲୀଳା ଆନନ୍ଦ ।

୮. କୁଞ୍ଜଲୀଳା ଆନନ୍ଦର ୧୦୦ଗୁଣ ନିକୁଞ୍ଜ ଲୀଳା ଆନନ୍ଦ ।

୯. ନିକୁଞ୍ଜ ଲୀଳା ଆନନ୍ଦର ୧୦୦ଗୁଣ ନିଭୃତ ନିକୁଞ୍ଜ ଲୀଳା ଆନନ୍ଦ ।

୧୦. ନିଭୃତନିକୁଞ୍ଜ ଲୀଳା ଆନନ୍ଦର ୧୦୦ଗୁଣ ନିତ୍ୟ ଗୋଲୋକଧାମ ଆନନ୍ଦ । ବ୍ରହ୍ମାନନ୍ଦକୁ ୧ ମନେ କରି ସେଥିରେ କୋଡ଼ିଏଟି ଶୂନ୍ୟ ଦେଲେ ଯେଉଁ ବିଶାଳ ସଂଖ୍ୟାଟି ହେବ ସେତିକି ବଡ଼ ଆନନ୍ଦ ନିତ୍ୟ ଗୋଲୋକ ଧାମର ଆନନ୍ଦ ।

-୦-

**ପରିଶିଷ୍ଟ-୨୩**

# ବସ୍ତୁବାଦ ଓ ଆଧ୍ୟାତ୍ମବାଦ ତୁଳନା

| | ମନୁଷ୍ୟ ପାଇଁ | ବସ୍ତୁବାଦୀ ମତ | ଆଧ୍ୟାତ୍ମବାଦୀ ମତ |
|---|---|---|---|
| ୧. | ଜନ୍ମ | ଏକଦୁର୍ଘଟଣା ମାତ୍ର | ଏକ ସୁଚିନ୍ତିତ ବ୍ୟବସ୍ଥିତ ଘଟଣା |
| ୨. | ଜୀବନ | ଏକ ଶୋଭାଯାତ୍ରା (ଅହଂକାର ସାଉଁଟିବା) | ଏକ ସାଧନା ପ୍ରବାହ (ଅହଂକାର ନଷ୍ଟ କରିବା ସୁଯୋଗ) |
| ୩. | ମରଣ | ଅନ୍ୟ ଏକ ଭୟଙ୍କର ଦୁର୍ଘଟଣା । | ପରବର୍ତ୍ତୀ ଜନ୍ମ ଓ ଜୀବନକୁ ସୁଧାରିବା ନିମିତ୍ତ ଏକ ଦ୍ୱାର । |
| ୪. | ଜୀବନର ଲକ୍ଷ୍ୟ | ଲକ୍ଷ୍ୟ ବୋଲି କିଛି ନାହିଁ (ଅର୍ଥଶୂନ୍ୟ ପୋଖରୀ ପହଁରା) | ଅତ୍ୟନ୍ତ ଅର୍ଥପୂର୍ଣ୍ଣ । ମୁକ୍ତି ବା ପ୍ରେମପ୍ରାପ୍ତି ନିହାତି ଜରୁରି । |
| ୫. | ଘଟଣା | ଅନ୍ଧାରରୁ ଆସି ଅନ୍ଧାରକୁ ଯାଉଥିବା ତୀରଟିଏ ମାତ୍ର | ଆନନ୍ଦରେ ଜନ୍ମ, ଜୀବନ ଓ ଆନନ୍ଦରେ ମରଣ ସୁଯୋଗ । |
| ୬. | କରିବା କିସ ? | ଖାଓ, ପିଓ, ମଉଜ ଉଡ଼ାଓ | ମାନବ ସେବା ଓ ମାଧବ ସେବା ବ୍ରତ ପାଳନ । |
| ୭. | ଜାଣିବା କିସ ? | ସଂସାରକୁ ଜାଣି ସତର୍କ ହେବା । | ଜଗତକୁ ଜଗନ୍ନାଥଙ୍କ ଅବତାର ମାନି ପ୍ରେମ କରିବା । |
| ୮. | ପାଇବା କିସ ? | ଅସରନ୍ତି ସୁଖ ଓ ପରମ ଶାନ୍ତି । | ଈଶ୍ୱରୀୟ ପ୍ରେମ । |
| ୯. | ହରାଇବା ଚିଜ | ଦୁଃଖ ଓ ଅଶାନ୍ତି | ଅହନ୍ତା-ମମତା ଏବଂ ରାଗ-ଦ୍ୱେଷ । |
| ୧୦. | ବଡ଼ ଲାଭ | ଭୋଗବିଳାସ ସୁଯୋଗ | ଈଶ୍ୱରୀୟ ସେବାରେ ଆନନ୍ଦ । |
| ୧୧. | ବଡ଼ କ୍ଷତି | ମୃତ୍ୟୁ । | ଈଶ୍ୱରଙ୍କୁ ନ ଖୋଜିବା । |

-୦-

ପରିଶିଷ୍ଟ-୨୪

## ତିନି ଅଧ୍ୟାତ୍ମ ସାଧନାର କେତେ କେତେ ସୋପାନ ?

| ଯୋଗ ସାଧନାର ୮ ପାହାଚ | ଜ୍ଞାନ ସାଧନାର ୮ ପାହାଚ | ଭକ୍ତି ସାଧନାର ୮ ପାହାଚ |
|---|---|---|
| ୧. ଯମ | ୧. ବିବେକ (ନିତ୍ୟ-ଅନିତ୍ୟ) | ୧. ସ୍ନେହ |
| ୨. ନିୟମ | ୨. ବୈରାଗ୍ୟ (ନ ମୋହବତ୍ ନ ନଫରତ) | ୨. ମାନ |
| ୩. ଆସନ | ୩. ଷଟ୍ ସଂପତ୍ତି (ଶମ, ଦମ,ତିତିକ୍ଷା, ଉପରତି, ଶ୍ରଦ୍ଧା ଓ ସମାଧାନ) | ୩. ପ୍ରଣୟ |
| ୪. ପ୍ରାଣାୟାମ | ୪. ମୁମୁକ୍ଷା | ୪. ରାଗ |
| ୫. ପ୍ରତ୍ୟାହାର | ୫. ଶ୍ରବଣ | ୫. ଅନୁରାଗ |
| ୬. ଧାରଣା | ୬. ମନନ | ୬. ପ୍ରେମ |
| ୭. ଧ୍ୟାନ | ୭. ନିଦିଧ୍ୟାସନ | ୭. ଭାବ |
| ୮. ସମାଧି | ୮. ସମାଧି | ୮. ମହାଭାବ |

-୦-

**ପରିଶିଷ୍ଟ-୨୫**

# ଦୃଷ୍ଟି ବଦଳିଲେ ସୃଷ୍ଟି ବଦଳେ

| | ସୃଷ୍ଟି ସ୍ୱରୂପ | ଭୌତିକ ଦୃଷ୍ଟି | ଅଧ୍ୟାତ୍ମ ଦୃଷ୍ଟି |
|---|---|---|---|
| ୧. | ସଂସାର | ଏକ ବଜାର, ଫେସନ୍ ବ୍ୟସନର ଚରାଭୂଇଁ । | ସାଧନସ୍ଥଳୀ ଅତଏବ ତପସ୍ୟାର ଦିବ୍ୟଭୂମି । |
| ୨. | ଜନ୍ମପୂର୍ବରୁ | କିଛିନଥିଲା (ଆମେ ବି) | କର୍ମଫଳ ଭୋଗ ବାକୀ ଥିଲା |
| ୩. | ମରଣ ପରେ | ଜୀବନର ପରିସମାପ୍ତି । | ପାପ-ପୁଣ୍ୟର ଫଳଭୋଗ ପାଇଁ ନୂତନ ଜୀବନର ସୂର୍ଯ୍ୟୋଦୟ । |
| ୪. | ମୁଁ ର ଅନୁଭୂତି | ଜଡ଼ଦେହରେ ହେଉଛି । | ଚେତନ ଆତ୍ମା ଯୋଗୁ ହେଉଛି |
| ୫. | ପିତାମାତାଙ୍କର ସେବା କରି | ଆମେ ତାଙ୍କ ଉପକାର କରୁଛୁ । | ଆମେ ତାଙ୍କର ପୂର୍ବଜନ୍ମ ମାନଙ୍କର ଋଣ ଶୁଝୁଛୁ । |
| ୬. | ପୁନର୍ଜନ୍ମ ପରଲୋକ | ସବୁ ବକ୍‌ବାସ୍ । | ସଂପୂର୍ଣ୍ଣ ଧ୍ରୁବ ସତ୍ୟ । |
| ୭. | ଈଶ୍ୱର ବିଶ୍ୱାସ ଧାରଣା | ମଣିଷ ଈଶ୍ୱରଙ୍କୁ ଗଢ଼ିଛି କାଠ ପଥରରେ । | ଈଶ୍ୱର ମଣିଷଙ୍କୁ ଗଢ଼ିଛନ୍ତି । ନିଜ ଦେହ ଓ ପ୍ରାଣ ଦେଇ । |
| ୮. | ସୃଷ୍ଟି | ଆପେ ଆପେ ହୋଇଛି | ବିନା କର୍ତ୍ତାରେ କର୍ମ ଅସମ୍ଭବ । |
| ୯. | ସ୍ରଷ୍ଟା | କେହି ଥିବାର ପ୍ରମାଣ ନାହିଁ । | ସୃଷ୍ଟି ଯାହାଙ୍କର ସେ ହିଁ ସ୍ରଷ୍ଟା । ପୁଣି ସେ ନିଜେ ସୃଷ୍ଟି । |
| ୧୦. | ସୃଷ୍ଟି-ସ୍ରଷ୍ଟା ସଂପର୍କ | ସୃଷ୍ଟି ତ ଜଡ଼ । | ଚେତନ ସ୍ରଷ୍ଟା ସ୍ୱୟଂ ସୃଷ୍ଟିରେ ପରିଣତ ହୋଇଛନ୍ତି । |

-୦-

ପରିଶିଷ୍ଟ-୨୬

# ଶ୍ରୀମଭାଗବତରେ ଅନୁବନ୍ଧ ଚତୁଷ୍ଟୟ

**୧. ବିଷୟବସ୍ତୁର ଅଲୌକିକତା:**

ପୂର୍ବରୁ ବେଦ, ବେଦାନ୍ତ, ଉପନିଷଦ, ଗୀତା, ରାମାୟଣ, ଷଟ୍ ଦର୍ଶନ ଆଦିରେ ଧର୍ମ ବିଷୟ ଆଲୋଚିତ ହୋଇଛନ୍ତି । ଭାଗବତ କିନ୍ତୁ ଆଉ ପାଦେ ଆଗକୁ ଯାଇ ଧର୍ମର ଧର୍ମ ପରମଧର୍ମ ବିଷୟ ଆଲୋଚନା କରିଛନ୍ତି । ସେହି ପରମଧର୍ମକୁ ନିଷ୍କାମ ଭକ୍ତି, ବିମୁକ୍ତି ବା ଜୀବନ୍ମୁକ୍ତି ଇତ୍ୟାଦି ନାମରେ କୁହାଯାଇଛି ।

**୨. ସାଧନ ପ୍ରଣାଳୀ:**

ହରିଲୀଳା ଶ୍ରବଣ, କୀର୍ତ୍ତନ, ରୂପଧ୍ୟାନ ସହିତ ସ୍ମରଣରେ ପ୍ରେମପ୍ରାପ୍ତି ଶ୍ରୀମଭଭାଗବତ ଗ୍ରନ୍ଥଙ୍କର ଏକ ବିରଳ ଆବିଷ୍କାର । ତୀର୍ଥ, ବ୍ରତ, ଜପ, ତପ ଏପରିକି କର୍ମ କିମ୍ବା ଜ୍ଞାନ ଇତ୍ୟାଦି ଅନ୍ୟାନ୍ୟ ସାଧନ ହେଉ କିମ୍ବା ନହେଉ ଭକ୍ତିମାର୍ଗୀ ସାଧକ ସେଥିରେ ବେପରୁଆ ରହେ ।

**୩. ଅଧିକାରୀ:**

ଜିଜ୍ଞାସୁ, ମୁମୁକ୍ଷୁ, ସଂସାର ବିରକ୍ତ ଓ ଭବଭୟ ଭୀତା ଏହି ଚାରି ଲକ୍ଷଣ ଥିବା ସାଧକ ଶ୍ରୀମଭାଗବତ ରସ ଆସ୍ୱାଦନର ନିଶ୍ଚିତ ଅଧିକାରୀ ।

**୪. ପ୍ରୟୋଜନ ବା ଲକ୍ଷ୍ୟ:**

ଆଧ୍ୟାତ୍ମିକ, ଆଧିଭୌତିକ ଓ ଆଧିଦୈବିକ ଏହି ତ୍ରିତାପରୁ ସାଧକର ଅନ୍ତଃକରଣକୁ ସଂପୂର୍ଣ୍ଣ ମୁକ୍ତ କରିବା ଏହି ମହାଗ୍ରନ୍ଥଙ୍କର ଲକ୍ଷ୍ୟ ।

**ପ୍ରଶ୍ନ: ସଦ୍‌ଗୁରୁ କିଏ ?**

**ଉତ୍ତର:** କିବା ବିପ୍ର କିବା ନ୍ୟାସୀ ଶୂଦ୍ର କେନ ନୟ ।
ଯେଇ କୃଷ୍ଣ ତତ୍ତ୍ୱ ବେତ୍ତା ସେଇ ଗୁରୁ ହୟ ॥

**ପ୍ରଶ୍ନ: ସନ୍ନ୍ୟାସୀ କିଏ ?**

**ଉତ୍ତର:** ଅନ୍ତଃ ଶାକ୍ତ ବହିଃ ଶୈବ ସଭାୟାଂ ବୈଷ୍ଣବୋ ମତ ।

- ୦ -

ପରିଶିଷ୍ଟ-୨୭

# ଭାଗବତ ଶାସ୍ତ୍ରଙ୍କ ତାତ୍ପର୍ଯ୍ୟ ନିର୍ଣ୍ଣୟ

## (ଭାଗବତକୁ ଶାସ୍ତ୍ର କହିବା କାହିଁକି ?)

ଉପକ୍ରମ- ଉପସଂହାର ଅଭ୍ୟାସୋଽପୂର୍ବତା ଫଳମ୍ ।
ଅର୍ଥବାଦ-ଉପପତ୍ତୀ ଚ ଲିଙ୍ଗଂ ତାତ୍ପର୍ଯ୍ୟ ନିର୍ଣ୍ଣୟେ ॥

**୧. ଉପକ୍ରମ ଓ ଉପସଂହାରର ଏକତା**

ଗ୍ରନ୍ଥ ଆରମ୍ଭ ସତ୍ୟଂ ପରଂ ଧୀମହି ଓ ଗ୍ରନ୍ଥ ଶେଷ ହୋଇଛନ୍ତି ମଧ ସେହି ସତ୍ୟଂ ପରଂ ଧୀମହି ପ୍ରତିପାଦନ କରିବା ନିମିତ୍ତ ।

**୨. ଅଭ୍ୟାସ:**

ପ୍ରାୟ ପ୍ରତ୍ୟେକ ସ୍କନ୍ଧରେ ପରମସତ୍ତାଙ୍କୁ ବା ପରମାତ୍ମାଙ୍କୁ ନାରାୟଣଙ୍କ ଅବତାର ବୋଲି ପ୍ରତିପାଦନ କରିବାକୁ ନାନା ଉଦାହରଣ ସହିତ ବୁଝାଯାଇଛି ।

**୩. ଅପୂର୍ବତା:**

ବେଦ, ବେଦାନ୍ତ, ଉପନିଷଦ, ଗୀତା ଆଦି ଗ୍ରନ୍ଥରେ ଅବଶ୍ୟ ପରମାତ୍ମା ତତ୍ତ୍ୱ ବିଷୟ ବିଚାର କରାଯାଇଛି । ସେସବୁ କିନ୍ତୁ ଅତ୍ୟନ୍ତ ଉଚ୍ଚ ଅଧିକାରୀ, ଜ୍ଞାନୀମାନଙ୍କର ବିଚାରଣୀୟ । ଭାଗବତ ଗ୍ରନ୍ଥ କିନ୍ତୁ ଭକ୍ତି ପରକ । ଏହା ପୁଣି ଉଭୟ ଗୃହସ୍ଥ ଏବଂ ପରମହଂସ ସନ୍ନ୍ୟାସୀମାନଙ୍କର ଆସ୍ୱାଦ୍ୟ । ଭକ୍ତି ପନ୍ଥାଟି ଅନ୍ୟାନ୍ୟ ପନ୍ଥାମାନଙ୍କ ଅପେକ୍ଷା ଅଧିକ ସାର୍ବଜନୀନ ଅତଏବ ଅପୂର୍ବ ଅଟେ ।

**୪. ଫଳ:**

ସଗୁଣ ସାକାର ଭଗବାନଙ୍କ ଲୀଳା ଚିନ୍ତନରେ କର୍ତ୍ତାପଣର ଅଭିମାନ (ଅହନ୍ତା), ବିଷୟ ବାସନାରେ ମମତା ଓ ବିଷୟ ସୁଖ ପ୍ରତି ରାଗ-ଦ୍ୱେଷ ଏହି ତିନିକଥାର ଗଜାମରୁଡ଼ି ହୋଇଯାଏ । ଜନ୍ମ-ଜୀବନ-ମରଣ ତିନିଟି ଯାକ ଅଲଗା ଅଲଗା ବୁଝାଯାଏ ନାହିଁ ବରଂ ଏକ ରସ ହୋଇଯାଏ । ସାତଦିନ ଭାଗବତ ଶ୍ରବଣ କରି କରି ଅନ୍ତିମ ଶ୍ୱାସ ଗଣିବାବେଳକୁ ରାଜା ପରୀକ୍ଷିତ ମଧ ଜୀବନ-ମରଣର ପାର୍ଥକ୍ୟ ମନରେ ଆଣିପାରିନାହାନ୍ତି । ମୃତ୍ୟୁ ତାଙ୍କ ପାଇଁ ଅମୃତ ବୋଲି ଅନୁଭବ ହୋଇଛି । କାରଣ କୃଷ୍ଣକଥା ଶ୍ରବଣ ହେତୁ ସେ ପରମ ସତ୍ୟ ସହିତ ଏକାକାର ହୋଇସାରିଛନ୍ତି । ଏହାହିଁ ଭାଗବତଙ୍କ ଅଲୌକିକ ବିରଳ ଅମୃତଫଳ ।

**୫. ଅର୍ଥବାଦ:**

ଭାଗବତ ଗ୍ରନ୍ଥ ସାରା କାହାରି ଭିନ୍ନ ମତର ଖଣ୍ଡନ-ମଣ୍ଡନ ବା କାହାରି ପ୍ରଶଂସା କିମ୍ବା ନିନ୍ଦା କୌଣସି ଗୋଟିଏ ବି କରିନାହାନ୍ତି । ନିଜ ପ୍ରତିପାଦ୍ୟ ବିଷୟ

କେବଳ ଉପସ୍ଥାପନ କରିଛନ୍ତି । ଭାଗବତ କେବଳ ନିଷ୍କାମ ଭକ୍ତିର ବିଜୟ ବୈଜୟନ୍ତୀ ଉଡ଼ାଇଛନ୍ତି । ବେଦ, ବେଦାନ୍ତ, ଉପନିଷଦଙ୍କ ଜ୍ଞାନ ଉପରେ ପ୍ରେମର ପୁଟ ରଙ୍ଗ ଚଢ଼ିଯାଇଛି ।

**୬. ଉପପତ୍ତିଃ**

ଭାଗବତଙ୍କ ସମସ୍ତ ତର୍କ ପ୍ରମାଣ ବେଦ, ବେଦାନ୍ତ, ଗୀତା ଓ ଦର୍ଶନ ଆଦି ସକଳ ଶାସ୍ତ୍ର ସମ୍ମତ । କୌଣସି ଗୋଟିଏ ତତ୍ତ୍ୱ ବା ତଥ୍ୟ ଶାସ୍ତ୍ର ବିରୋଧୀ ନୁହନ୍ତି ।

-୦-

ପରିଶିଷ୍ଟ-୨୮

## ଭକ୍ତି ବିଷୟରେ ଷଟ୍ ପ୍ରଶ୍ନ

**୧. ଭକ୍ତି କଅଣଃ** ନିଷ୍କାମ, ନିରନ୍ତର, ଅନନ୍ୟ ଓ ଅହେତୁକୀ ଭାବରେ ମାନବ ଓ ମାଧବ ସେବା ।

**୨. ଭକ୍ତି କାହାର କରିବାଃ** ଶ୍ରୀକୃଷ୍ଣଙ୍କର । ଗୁରୁ ବୈଷ୍ଣବ ଓ ଅନ୍ୟ ଦେବତାଙ୍କୁ ତାଙ୍କ ଅଙ୍ଗ ଭାବି ସେମାନଙ୍କର ସେବା କରିବା ।

**୩. ଭକ୍ତି କାହିଁକି କରିବାଃ** ଭଗବାନ ବୃକ୍ଷ ହେଲେ ଜୀବଗଣ ସେ ବୃକ୍ଷର ଚେର, ମୂଳ, ଶାଖା, ପ୍ରଶାଖା, ପତ୍ର, ଫୁଲ ଓ ଫଳ ରୂପେ ବୃକ୍ଷର ଅଭିନ୍ନ ଅଂଶ ସ୍ୱରୂପ । ବୃକ୍ଷର ସେବାରେ ନିଜକୁ ନ ଲଗାଇଲେ ଚେର, ମୂଳ, ଶାଖା ଆଦି ବଞ୍ଚିବା ବଢ଼ିବା ମଧ୍ୟ ଅସମ୍ଭବ ହେବ ।

**୪. କେବଳ ଭକ୍ତି କାହିଁକି କରିବାଃ** ବୈଦିକ କର୍ମ ଇହଲୋକରେ ସୁଖ କିମ୍ବା ପରଲୋକରେ ସ୍ୱର୍ଗ ଭୋଗ ଦେବେ । ବୈଦିକ ଜ୍ଞାନ ମଧ୍ୟ ପାଞ୍ଚମୁକ୍ତି ମଧ୍ୟରୁ ଗୋଟିଏ ଦେଇପାରିବେ । ବୈଦିକ ଧ୍ୟାନ ସିଦ୍ଧି ବା ଚମତ୍କାରିତା ଦେଇପାରିବେ । ଫଳ ଦେଇସାରି ଶେଷରେ କର୍ମ, ଜ୍ଞାନ, ଧ୍ୟାନ ଛାଡ଼ି ପଳାଇବେ । ଭକ୍ତି କିନ୍ତୁ ଭଗବାନଙ୍କୁ ଦେଇସାରି ସାଙ୍ଗରେ ରହିବେ ।

**୫. ଭକ୍ତି କିଏ କରିପାରିବଃ** ଜ୍ଞାନୀ-ଅଜ୍ଞାନୀ, ଧନୀ-ନିର୍ଦ୍ଧନ, ସୁଖୀ-ଦୁଃଖୀ, ସଦାଚାରୀ-ଦୂରାଚାରୀ, ପାପୀ-ନିଷ୍ପାପ, ନାରୀ-ପୁରୁଷ-ନପୁଂସକ, ଚର-ଅଚର, ଦେବତା-ରାକ୍ଷସ, ବିଷୟୀ-ମୁମୁକ୍ଷୁ, ଆତ୍ମାରାମ-ଆପ୍ତକାମ, ମୁନି-ନିଗ୍ରନ୍ଥ, ଭକ୍ତ-ଅଭକ୍ତ ଓ ସକାମ-ନିଷ୍କାମ-ସର୍ବକାମ ସମସ୍ତଙ୍କ ଲାଗି ଭକ୍ତିଙ୍କର ଦରବାର ଖୋଲା ।

**୬. ଭକ୍ତି କିପରି କରିବାଃ** ରସିକ ଗୁରୁଙ୍କ ଶରଣାଗତ ହୋଇ କାୟ, ମନୋ, ବାକ୍ୟରେ ନିଜର ତନ୍, ମନ୍ ଓ ଧନ୍‌କୁ ଗୁରୁ-ଗୋବିନ୍ଦ-ବୈଷ୍ଣବଙ୍କ ସେବାରେ ଲଗାଇ ।

-୦-

